ପ୍ରଥମ ସଂସ୍କରଣ :

୧୯୭୩

ପ୍ରକାଶିକା :

**ମା କନକ ଦୁର୍ଗା**

ପ୍ରୋ: ମା: ଶ୍ରୀ ମୋହନ ଚରଣ ଦାସ

ମନମୋହନ ପୁସ୍ତକାଳୟ,

ଚାନ୍ଦନୀଚୌକ, କଟକ-୨ ଓ

୧୨୩।୧ ଏ, ବହୁବଜାର ଷ୍ଟ୍ରୀଟ୍, କଲିକତା-୧୨

ମୁଦ୍ରାକର :

ଶ୍ରୀ ମୋହନ ଚରଣ ଦାସ

ମନମୋହନ ପ୍ରେସ,

କଟକ-୨

ମୂଲ୍ୟ ପାଞ୍ଚଟଙ୍କା ମାତ୍ର

ରମା ମୁହଁ ଶୁଖାଇ ଟେବୁଲ ପାଖରେ ଠିଆ ହୋଇଛି ।

ବିବାହିତ ଜୀବନର ସାତୋଟି ବର୍ଷ କଟି ଗଲଣି । ଦୁଇ ବର୍ଷ ପରେ କୋଳକୁ ଆସିଲ ଲୁନୁ । ଆହୁରି ତିନି ବର୍ଷ ପରେ ଆସିଲ ଇରା । ପୁଅ ଓ ଝିଅର ମା ହୋଇ ମଧ୍ୟ ତାଆର ଦୁର୍ଦ୍ଦଶା ଫେରିଲ ନାହିଁ । ଦୁର୍ଭାଗ୍ୟର କଥା ସେ କାହାକୁ କହିବ ?

ନିଜ ଠାଣ ନିଜର । ଦୁନିଆଁର ଲୋକେ ପଛେ ନିଜେ ଅନୁମାନ କରନ୍ତୁ, ସେ ମୁହଁ ଖୋଲି କାହାକୁ କହି ପାରିବ ନାହିଁ ଯେ ସ୍ୱାମୀ ତାକୁ ସ୍ନେହ କରନ୍ତି ନାହିଁ । ସେମାନେ ହସିବେ । ଖୋଳ ତାଡ଼ି କେତେ କଥା ପଚାରିବେ । ଲୁନୁ ଓ ଇରାଙ୍କ ଆଡ଼କୁ ଆଙ୍ଗୁଠି ଦେଖାଇ ପଚାରିବେ, ଏ ଦିଓଟି କାହାର ମ ?

ରମା ଘରର ଚାରି ଆଡ଼କୁ ଚାହିଁଲ । ଟେବୁଲ ଉପରେ ଭାତଥାଳି ଅଧାଖିଆ ହୋଇ ରଖା ହୋଇଛି । ମେଞ୍ଚା ମେଞ୍ଚା ତରକାରି ତଳେ ପଡ଼ିଛି । ଡାଲି ଡାଟିଆ କାନ୍ଥ ପାଖରେ ଗଡ଼ୁଛି । ଚଟାଣ ଉପରେ ଡାଲି ଚାଲିଛି । ଖଣ୍ଡେ ଦୂରରେ ପ୍ଲେଟ୍ ପଡ଼ିଛି ଚାରିଖଣ୍ଡ ହୋଇ । ଚିଙ୍ଗୁଡ଼ି ମାଛର ଭଜାତଜ ଚାରିପାଖେ ଛିଟିକି ପଡ଼ିଛି । ଝଡ଼ ତୋଫାନ ଅସିଛି ସତ, ଭାଙ୍ଗି ରୁଜ ପଡ଼ିଥିବା ଡାଳ ପତ୍ର ଚାରିଆଡ଼େ ବିଞ୍ଚି ହୋଇଛି । ହତଶ୍ରୀ ଦିଶୁଛି ।

ଖରାଦିନ । ସକାଳ ଦଶଟା । ଚାକର ପିଲା ରଙ୍ଗିଆ ଲୁନୁକୁ ଖେଳାଇବାକୁ ନେଇଛି । ବାବୁ ଗସ୍ତରେ ଯିବେ ବୋଲି ପୁଅକୁ ଖେଳାଇବାକୁ ରମା ନଠବର

ବାବୁଙ୍କ ଘରକୁ ପଠାଇ ଦେଇଥିଲ । ନୋହିଲେ ବାପାଙ୍କ ସଙ୍ଗେ ଯିବ ବୋଲି କୁନୁ ଜିଦ୍ ଧରି ଥାଆନ୍ତା । ସିଦ୍ଧା ଧରି କାନ୍ଦିଲେ ତାକୁ ବୁଝାଇବା କଷ୍ଟ । ଆଉ ଘରେ ଟିକିଝିଅ ଇରି ଖଟ ଉପରେ ଶୋଇ ପଡ଼ିଛି । ସେ ଉଠିଲେ ଡ଼ାକ୍ତର ଲଗାଇ ଦେବ । ଗୃହକର୍ତ୍ତୀ ଯାବତ୍ ବାସନ ଧୋଇବାକୁ ଆସୁଥିବ । ଦାଣ୍ଡଘର କବାଟ ଖୋଲି ଅଛି । ସ୍ୱାମୀଙ୍କର ଗର୍ଜନ ତର୍ଜନ ଶୁଣିବାକୁ ହଳଧର ବାବୁଙ୍କ ସ୍ତ୍ରୀ ଜୟଶ୍ରୀ ତାଙ୍କ ଝରକା ବାଟେ ଚାହିଁଥିଲେ । ରାସ୍ତା ସେପାଖ ଆଗଦୁଆରି ଘର । ବାଆଁରେଇ ହୋଇ ସେ ଘଟଣା ବୁଝିବାକୁ ଚାଲି ଆସିବେ । ଏ ଦୁଃଖରୁ ସେ ଲଜ୍ଜା ବଳି ପଡ଼ିବ ।

ଆଖିରେ ଲୁହ ଛଳ ଛଳ ହେଲା । ଓଠ ଚାପି ରମା ଭିତର ବାରଣ୍ଡାକୁ ଆସିଲା । ଅଗଣାରେ କେହି ନାହିଁ । ଚଉବାଚ୍ଚା ପାଖ ନଳାମୁହଁ ନିକଟରେ ବାସନ କେଇଖଣ୍ଡି ଅଇଁଠା ହୋଇ ପଡ଼ିଛି । ବାଡ଼ି କବାଟ ମେଲା ହୋଇଛି । କିଏ ଯଦି ଝାଙ୍କା ଭିତରେ ପଶି ସେତକ ଉଠାଇ ନେବ ତ ଅଭିମାନ କରି ଦୁଃଖ କରି ଆହୁରି ଅଶାନ୍ତି ବଢ଼ିବ । ବୁଲା କୁକୁର ଦୁଇଟା ମୁହଁ ଗଳାଇ ଅନାଇଛନ୍ତି । ରୋଷଘରେ ପଶିଲେ ହାଣ୍ଡି କୁଣ୍ଡେଇ ମାରି ଦେବ ।

ରମା ବାଡ଼ି କବାଟ ବନ୍ଦ କଲା । ଦାଣ୍ଡ ଘରକୁ ଆସି ଉଚ୍ଚ ଜିଉ ପଦାକୁ ଚାହିଁଲା । କାଲେ ଜୟଶ୍ରୀ ପଦାରେ ଥିବେ । ମୁରୁକେଇ ହସିବେ । ପଚାରିବେ, କଅଣ କରୁଛ ଗୋ, ଖିଆପିଆ ସରିଲାଣି ? ବାବୁ କାହିଁକି ରାଗୁଥିଲେ ? ଜିପ୍‌ଚଢ଼ି କୁଆଡ଼େ ଗଲେ କି ? କେବେ ପୁଣି ଫେରିବେ ? ସେ ବଡ଼ ବଦରାଗୀ, ନାଇଁ ଗୋ ରମା ?

ଜୟଶ୍ରୀ ଘର ଭିତରେ ଅଛନ୍ତି । ଏକୁଟିଆ ଲୋକ । ମାମୁଁ ମାଇଁ ଦୁଇପ୍ରାଣୀ । ସାତ ବରଷ ବାହା । ପିଲାଛୁଆ ହୋଇ ନାହାନ୍ତି । ଗଣ୍ଡି ବଢୁଛି । ସକାଳୁ ସଞ୍ଜ ଯାଏ ପାଞ୍ଚ ଥର ବେଶ ହୁଅନ୍ତି । ନିଜକୁ ଦେଖି ନିଜେ ଖୁସି ହୁଅନ୍ତି । ହଳଧର-ବାବୁ କେତେ ବେଳୁ କଚେରିକୁ ଚାଲି ଗଲେଣି । ସେ ତ ମୁନ୍‌ସିଫ୍ ଲୋକ । ମକଦ୍ଦମା ବିଚାର କରନ୍ତି । ରାସ୍ତାରେ ଯିବାକୁ ପଡ଼େ ନାହିଁ । ତାଙ୍କର ଭଲ ଚାକିରି । ଜୟଶ୍ରୀ ଏବେ ତାଙ୍କ ବଡ଼ ଆଇନା ଆଗରେ ଠିଆ ହୋଇ ମୁଣ୍ଡ ବାନ୍ଧୁ ଥିବେ ।

ରମା ଦାଣ୍ଡ ବାରଣ୍ଡାକୁ ଗଲ । ମୁଣ୍ଡ ଉପରକୁ ଲୁଗା ଟାଣି ରାସ୍ତାର ଦୁଇ ଆଡ଼େ ଚାହିଁଲ । ଗଳି ମୁଣ୍ଡରେ ନଟବର ବାବୁଙ୍କ ଘର । ଚାକର ଟୋକା ରଙ୍ଗିଆର ଦେଖା ଦର୍ଶନ ନାହିଁ । ପିଲଟାକୁ ନେଇ ଆଉ କେଉଁଆଡ଼େ ଗଲ କି ? ରାସ୍ତା ଉପରେ ଗାଡ଼ି ମଟର ଯାତାୟାତ କରୁଛି । ଜୟପୁର ଦାଣ୍ଡରେ ଲୋକ ଭିଡ଼ । କେତେ ଆଡ଼ୁ କେତେ ପ୍ରକାର ଲୋକ ଆସୁଛନ୍ତି ଯାଉଛନ୍ତି । ଖବର କାଗଜରେ ବାହାରି ଥିଲ, କଟକ ସହରରେ ପଞ୍ଚାଏ ଲୋକ ପିଲ ଚୋରି ବେପାର କରିଛନ୍ତି । ସେମାନେ କାଲେ ଜୟପୁର ଆସିଥିବେ ।

ଛାତି ଦାଉଁ ଦାଉଁ ପଡ଼ିଲ । ଚାକରାଣୀଟା ହେଲେ ଆସନ୍ତା । ତାକୁ ନଟବର ବାବୁଙ୍କ ଘରକୁ ପଠାନ୍ତା । ନାଇଁ, କୁନୁ ସେଇଠି ଖେଳୁଥିବ । ନଟବର ବାବୁଙ୍କ ସ୍ତ୍ରୀ ଗୋମତୀ ଯେ କୁଆରକୁଣୀ । ଡାକ୍ତରବାବୁଙ୍କ ଘରଣୀ । ତିନୋଟି ଝିଅଙ୍କ ଜନନୀ । ବଡ଼ଝିଅ କୁନୁ ସାଙ୍ଗର । ଆଉ କଅଣ ପିଲପିଲି ହେବ । ଦେହରେ ଟିକିଏ ବୋଲି ଅଳସ ନାହିଁ । ରାଜ୍ୟ ଯାକର ପିଲ ତାଙ୍କ ଘରେ ରୁଣ୍ଡ ହୁଅନ୍ତି । ସମସ୍ତଙ୍କୁ ସେ ସଫା ସୁତୁରା କରନ୍ତି । ମୁଣ୍ଡରେ ବାସନା ତେଲ ଲଗାଇ କୁଣ୍ଡାଇ ଦିଅନ୍ତି । ଆଖିରେ ପିନ୍ଧାନ୍ତି କଜଳ । ଜାତି ଜାତିକା ବିସ୍କୁଟ, ଫଳ, ଲେମନ୍‌ଡ୍ରପ୍ ସାଇତି ରଖି ଥାଆନ୍ତି । ନିଜେ ପିଠା ପଣା କରନ୍ତି । ପରପିଲଙ୍କ ମଇଳା ସେ ନିଜେ ଧୋଉଛନ୍ତି । ତାଙ୍କୁ ପାଇଲେ ପିଲଏ ମା ବାପଙ୍କୁ ଭୁଲନ୍ତି । ସତେ, ଠାକୁରେ ତାଙ୍କୁ ଡାକ୍ତରଙ୍କ ଘରଣୀ ହେବାକୁ ଜନ୍ମ ଦେଇଥିଲେ । ପ୍ରକୃତି ଦେଇଥିଲେ । ହସ ଖୁସି ସତେକି ହାତଧରି ଧରି ହୋଇ ତାଙ୍କର ଆଗେ ଆଗେ ଚାଲି ଥାଆନ୍ତି । କୁନୁକୁ ସେ ଖେଳାଉ ଥିବେ ।

ରମା ଘର ଭିତରକୁ ଆସି କବାଟ କିଳିଲ । ନିଜ ହାତରେ ସବୁ ପାଇଟି କରିବ । ଘର ଦ୍ୱାର ସଫା ସୁତୁରା କରିବ । ଅଧଘଣ୍ଟାକ ତଳେ ଯାହା ଘଟିଗଲ ତାଆର ଚିହ୍ନ ବର୍ଣ୍ଣି ଯେପରି ନରହେ । ଘରର ଗୁମର ପଦାରେ ନ ପଡ଼ୁ ।

ସେ ଇଞ୍ଜିନିୟରଙ୍କ ସ୍ତ୍ରୀ । ବାପ ମା ତ ଜାଣି, ବନ୍ଧୁ ବାନ୍ଧବ ଓ ଦାଣ୍ଡ ଲୋକେ ସମସ୍ତେ କହନ୍ତି, କେହି କେହି ପତ୍ର ବି ଲେଖନ୍ତି, ରମା ଭାଗ୍ୟବତୀ । ସୁକାନ୍ତ ପରି ଯୋଗ୍ୟ ପାତ୍ର ସେ ପାଇଛି ! ରୂପ ଯେପରି ସୁନ୍ଦର, ଗୁଣବି ସେପରି । ରମାର

କେଡ଼େ ସଣ୍ଢଣା । ଦେହରୁ ମୁଣ୍ଡରୁ ଲୁଗା ଖସିବ ନାହିଁ । ଥରି ଥରି ଚାଲି । ଥରି ଥରି କଥା । ଆଉ ଝିଅଙ୍କ ପରି ହେରେସୀ ସେ ନୁହେଁ । ଯାହା ଦିଅ ଖାଇବ । ଭଲ ମନ୍ଦ ବାରିବ ନାହିଁ । ସଉକ୍ କରିବାକୁ ହମ୍ ହମ୍ ନୁହେଁ ।

ସେମାନେ କହନ୍ତି, କେତେ ସ୍ଥାନରେ ସମ୍ବନ୍ଧ ପଡ଼ିଲା, ଜମିଦାର ପୁଅ, ପାଠୁଆ କିରାଣି, ଅଧାପାଠୁଆ ବେପାରୀ, ଘରୁଆ ଚାଷୀ । ପିଲାଝିଅ ବୋଲି ଅପେକ୍ଷା କରୁଥିଲେ । ଦଇବର ଘଟସୂତ୍ର । ସୁକାନ୍ତ ଯେ ବନ୍ଧୁରେ ବନ୍ଧୁ । ଦୂର ଗାଁ । ଗରିବ ଘର । ବରଷକେ ଛମାସ ଯନ୍ତ୍ରେ କନ୍ତ୍ରେ ବଞ୍ଚୁ କୁଟୁମ୍ବର ପୈତୃକ ସମ୍ପତ୍ତିରୁ ତୋକ ଚଳେ । ବାକି ଛମାସ ଦାଣ୍ଡରୁ କିଣିଲେ ହାଣ୍ଡିରେ ପଡ଼ିବ । ସେଇ କୁଟୁମ୍ବରୁ ବାହାରି ପଡ଼ିଲା ମେଧାବୀ ଛାତ୍ର । ସୁନା ପିଲା ଖଣ୍ଡେ । ନିଜ ହିମ୍ମତରେ ମାଟି ଖୋଳି ମଣିଷ ହୋଇଛି । ଦବା ନବା ଚାହେଁ ନାହିଁ ।

ବାହାଘର ହେଲା ।

ରମା ଭାଗ୍ୟବତୀ ।

ଆଖିରୁ କେତେ କେତେ ଲୁହ ଝରି ପଡ଼ୁଛି । ରମା ଘର କାମରେ ହାତ ଦେଇଛି । ଚାକର ବାକରଙ୍କ ଉପରେ କେବେ ସେ ନିର୍ଭର କରେ ନାହିଁ । ପିଲାଦିନରୁ କାମ କରି ଶିଖିଛି । ଘରଦ୍ୱାର ଓଳାଇବା, ବାସନ ମାଜି ଚକ୍ ଚକ୍ କରିବା, ହାଣ୍ଡି କୁଣ୍ଡେଇ ଧୋଇ ଦର୍ପଣ ପରି ଉଜ୍ଜ୍ୱଳ କରିବା, ଲୁଗା ପଟାରେ ସାବୁନ ଦେଇ ପରିଷ୍କାର କରିବା, ଏଇତ କାମ । ଦେହରେ ଅଳସ ନ ଥିଲେ ହାତ ହଲଇଲେ ଯାଇଟି ସରିଲା ।

ଭାତ, ଡାଲି, ତିଅଣ, ଭଜା, ଅମ୍ବିଲ, ଖଇ, ଶାଗ, କ୍ଷୀରି, ପିଠାପଣା ସବୁ ସେ ଶିଖିଥିଲା । ପର ଘରକୁ ଆସି ସବୁ ସେ କରିଛି, କରୁଛି । ସମସ୍ତଙ୍କ ପାଟିକୁ ସୁଆଦ ଲାଗେ । କେବଳ ସୁକାନ୍ତଙ୍କର ମନକୁ ପାଏ ନାହିଁ । ଯେତେ

ପରିଷ୍କାର୍ ପରିଚ୍ଛନ୍ନ ହେଲେ ବି ସେ ନାକ ଟେକନ୍ତି । ସେ ଠାଣିକଥା କହି ଭର୍ତ୍ସନା କଲେ ରମା ଉତ୍ତର ନ ଦେଇ କାଠ ପଥର ପରି ଶୁଣେ ।

ଭାତ ପେଜୁଆ ହୋଇଛି । ଡାଲିରେ ଅଳପ ହଳଦୀ ତେଣୁ ଫିକ୍କା ଦିଶୁଛି । ତରକାରିର କୁଙ୍କ ପୋଡ଼ି ଯାଇଛି । ଭଜା ଯେ ଅଲୁଣା । ଆମ୍ବିଳରୁ ପରିବା ଦର ସିଝା । ରାଇରେ ଲଙ୍କା ଅଧିକ । ଶାଗ ବାଲି ବଜ ବଜ । କ୍ଷୀରି ପାଣିଚିଆ । ଛି, ଛି । ପିଠା ପଣାର ବି ସେମିତି ଗୁଣ ବାହୁନା । ଯେତେ ଯତ୍ନ, ଯେତେ ସାବଧାନ ହୋଇ କଲେ ରକ୍ଷା ନାହିଁ । ଥାଳରେ ରେକଠା ଲାଗିଛି । ଡାଣ୍ଟିଆ ଫନ୍ଦରେ ବାଲି । ପାଣି ଗିଲସ ବାଁ ପାଖରେ ରହେ ନା ଡାହାଣ ପାଖରେ ?

ଉତ୍ତର ନ ଦେଲେ କହନ୍ତି, ମନ କେଉଁଠି ଥିଲା କି ? ଉତ୍ତର ଦେଲେ କଥା କଟା କଟି ଚାଲେ । ସୁକାନ୍ତଙ୍କର ରାଗ ବଢ଼େ । ପିତୃପୁରୁଷଙ୍କର ଗୁଣ ବାହୁନନ୍ତି । ତରକାରି ଅଲୁଣା ହୋଇଛି କି ରମା ମଇଳା ଲୁଗା ପିନ୍ଧି ଭାତ ବାଢ଼ୁଛି । ସେଇଥିରୁ କଥା ଆରମ୍ଭ ହୋଇ କେତେଆଡ଼େ କେବେ ମାଡ଼ିଯାଏ । ପାଖରୁ ଦୂରେଇ ଗଲେ ସେ ଡକାଛଡ଼ନ୍ତି ଶୁଣ, ମୋ କଥାଗୁଡ଼ା କଅଣ ମନକୁ ଆସୁ ନାହିଁ ? ତଥାପି ଜବାବ୍ ନ ଦେଲେ, ଅଧାଖିଆ ହୋଇ ଉଠନ୍ତି । ନିଜେ ଦୁଇ ତିନି ଓଳି ଉପାସ ରହନ୍ତି । ରମା ବି ଉପାସ ରହେ ।

ବାହା ଗଣ୍ଠିରୁ ତ ଏପରି ଚାଲିଛି । ସାତବର୍ଷ କଟିଲା ।

ସବୁ ଅଶାନ୍ତି ଓ ରାଗରୋଷ ଅଭିମାନର ସମାଧାନ ଆପେ ଆପେ ହୋଇଯାଏ । କଅଣ ଗୋଠାଏ ଘଠଣା ଘଟି କାଲି ଝଡ଼ତୋଫାନ ବହିଥିଲା, ମନେ ହେଉଥିଲା ଏଇଥର ଭୀଷଣ କାଣ୍ଡ ଘଟିବ । ସବୁ ଫସର ଫାଟି ଯାଏ । କାହାରି ମନେ ରହେ ନାହିଁ ।

ସୁକାନ୍ତ ପିଲଙ୍କ ପରି ପୁଣି ଅଳି କରେ । ସବୁ ଦୋଷ ମାଗିନିଏ । ରମା ପୁଣି କେବେ ଅତି ପିଲା ହୋଇଯାଏ । ଦୁଇଟି ସନ୍ତାନର ସେ ଜନନୀ ଏକଥା ଭୁଲିଯାଏ । ସୁକାନ୍ତ ନିଜ ହାତରେ ମୁଣ୍ଡ କୁଣ୍ଡାଇ ଦିଏ । ଆଖିରେ କଜଳ ଲଗାଏ । ନାହିଁ ନାହିଁ କଲେ ବି ଗୋଡ଼ରେ ଅଳତା ପିନ୍ଧାଏ ।

ରମା ଜାଣେ, ସୁକାନ୍ତ ଆଉ ଆଖିରେ ଅନ୍ୟ ନାରୀକୁ ଅନାନ୍ତି ନାହିଁ । କେହି ପ୍ରକାରାନ୍ତରରେ କିଛି କହିଲେ ସେ କଥାଟାକୁ ହସି ଉଡ଼ାଇ ଦିଏ । ମନ କହେ, ମୋ ସୁନା କେବେ ବେଣ୍ଟି ହେବ ନାହିଁ ।

ସୁକାନ୍ତ ଭଲକରି ଜାଣନ୍ତି ଯେ ତାଆର ଘରଣୀ ତାଛଡ଼ା ଆଉ କେଉଁ ପୁରୁଷର ମୁହଁ ଚାହିଁ ନାହାନ୍ତି । ଶଙ୍କର ବାବୁର ତ ନଜର ପିଲ ପରି । ଦୁହିଙ୍କ ମନରେ ଦୁହିଙ୍କ ପ୍ରତି ଦୃଢ଼ ବିଶ୍ୱାସ, ଯେତେ ଯାହା ମନ ଓ ରୁଚି ଅମେଳ ଘଟଣା ଘଟେ ତାକୁ ବେଶୀ ବେଳ ରଖାଇ ଦିଏ ନାହିଁ । ଦୁଇଟା ମନ, ଦୁଇଟା ଦେହ ପୁଣି ଏକାଠି ହୁଏ ।

ଯାହା ଯେବେ ହେଉ, ଆଜିକାର ଘଟଣାକୁ ରମା କଦାପି ଉପେକ୍ଷା କରି ପାରିବ ନାହିଁ । କବାଟ ଝରକା ବନ୍ଦ କରି ସୁକାନ୍ତ ମନଇଚ୍ଛା ଗାଳି ଦେଇଥାନ୍ତେ, ରମା ଅବଶ୍ୟ ସହି ଥାଆନ୍ତା । କିନ୍ତୁ ଆଜି ସମସ୍ତେ ଶୁଣିଲେ, ଶଙ୍କର ବାବୁର ଦାଣ୍ଡ ଲୋକେ, ଜମ୍ବୁଣୀ ଦେଖି । ଦାଣ୍ଡ ହାଟରେ କଥା ପଡ଼ିବ । ଲୋକେ କୁହାକୁହି ହେବେ; ଇଞ୍ଜିନିୟର ତ ଭଲଲୋକ, କାହିଁକି ତାଙ୍କର ଘରଣୀଙ୍କ ଉପରେ ସବୁ ବେଳେ କଟକଟ ହୁଅନ୍ତି ? କିଛି ଗୁଣ ଥିବ ନା ! ରମା ଓଲେଣ୍ଡ କି ସ୍ୱୈରିଣୀ କି ଗଜ ମୂର୍ଖ ନୁହନ୍ତି, ଇଞ୍ଜିନିୟର ତାଙ୍କ ଦରମା କଉଡ଼ି ସ୍ତ୍ରୀଙ୍କ ହାତରେ ସମର୍ପି ଦିଅନ୍ତି, ଆବଶ୍ୟକ ହେଲେ ନେହୁରା ହୋଇ ମାଗନ୍ତି । ତେବେ, କି ଗୁଣ ଦେଖି ସବୁବେଳେ କଟକଟ ? ଘରେ ସବୁବେଳେ ଅଶାନ୍ତି ?

କେତେ ଲୋକ କେତେ କଥା ଅନୁମାନ କରିବେ । ଅନ୍ୟ ଘରର ଘରଣୀ ମାନେ ମୁହଁଙ୍କୁ ଅନାଇଁ ଠାରାଠାରି ହେବେ । ଫୁସ୍ ଫୁସ୍ କଥା କାନରୁ କାନକୁ ଡେଇଁବ । ଲାଜରେ ମୁହଁ ଜଳିଯିବ । ଏପରି ହୀନମାନିଆଁ ଜୀବନ ଧରି ବଂଚି ରହିଲେ କି ଲାଭ ? ଜୀବନ ହାରି ଦେବା ଭଲ ।

ସେ ଅନ୍ୟ ସଂସାର କରନ୍ତୁ । ସୁଖରେ ରହିବେ । ଆନନ୍ଦରେ ତାଙ୍କର ବେଳ କଟିବ । ବଡ଼ ହାକିମ ସେ ହୋଇଛନ୍ତି । ବଡ଼ଘରୁ, ସହରିଆ ଘରୁ ପାଠୋଈ ଫେସନୀ ଝିଅ ସେ ଆଣିବେ । ଏଘରେ ଶାନ୍ତି ବିରାଜିବ । ହଁ, ସେ ଜୀବନ ହାରିବ ।

ରମା କଇଁ କଇଁ ହୋଇ କାନ୍ଦି ଉଠିଲା । ଅଂଚଳରେ ଲୁହ ପୋଛିଲା । ଓଠ ଚୃପି ରଖିଲା । ସବୁ କାମ ଶେଷ ହୋଇଛି । ହାଣ୍ଡିରେ ଭାତ ଡାଲି ଡଅଣ ଶୀତଳ ହେଲଣି । ହେଉ, ସେତ ଉପାସରେ ଗଲେ । ପାଟିରେ ଦେଇ ଥୁ ଥୁ କରି କାଢ଼ିଲେ । ଖାଅ ବୋଲି କହିବାରୁ ଶୁଣି ବାହୁନ ଠାଣ କଥା କହିଲେ, ପଦେ ଉତ୍ତର ଦେବାରୁ କାଚ ଗ୍ଲାସ ଓ ତରକାରୀ ପ୍ଲେଟ ତଳକୁ ଫୋପାଡ଼ି ଗର୍ଜ୍ଜନ କରି ଉଠିଗଲେ ।

ଦେହରେ ହାତ ଦେଇ ମାଡ଼ ମାରି ନାହାନ୍ତି ସିନା ମାଡ଼ର ବଡ଼ବାପ ହୋଇଛି । ମାଡ଼ଖାଇ ଗାଳଶୁଣି ରମାର ପେଟ ପୂରିଛି । ଆଉ କଅଣ ସେ ଖାଇବ ? ଭାତ ଡାଲି ସେମିତ ଥୁଆ ହୋଇଥାଉ । ତାଙ୍କର ଚାକର ଚାକରାଣୀ ଖାଇବେ । ସେମାନେ ପେଟ ପାଇଁ ଚାକିରି କରିଛନ୍ତି । ଖାଇବେ, ଦରମା ନେବେ, ଆଗରେ ଭଲ ଭଲ ବୋଲି କହିବେ, ପଛରେ ମୁହଁ ମୋଡ଼ିବେ ଓ ଦୁର୍ନାମ ରଟାଇବେ ।

ଭୋକରେ ପେଟ ଗର୍ଜିଲା । ସକାଳେ ବଛଣାରୁ ଉଠି ଏତେବେଳ ଯାଏ କାମରେ ଲଗିଛି । ସୁକାନ୍ତ ଥରେ ପଚାରିଲେ କି, କଅଣ ଖାଇଲଣି ?

ରମା ବି ଚାକରାଣୀ । ମୁଠିଏ ଖାଇବାକୁ ଓ ଖଣ୍ଡେ ପିନ୍ଧିବାକୁ ଦେଉଛନ୍ତି । ଗହଣା ଗଣ୍ଠି ହଖଣ୍ଡ କରି ଦେଇଛନ୍ତି । ସେତକ ରମା ସଙ୍ଗରେ ନେଇଯିବ ନାହିଁ । ଆଖି ବୁଜିଲେ ଦେହକୁ ଆଗ ଉତାରି ପଛେ କୋକେଇରେ ଲଦ ମଶାଣିକୁ ନେବେ । ହଁ, ଟ୍ରଙ୍କରେ ଟଙ୍କା କେଇଶହ ଅଛି, ପୋଷ୍ଟ ଅଫିସରେ ତା ନାମରେ ସୁକାନ୍ତ କେଇଶହ ରଖିଛନ୍ତି । ମାସକୁ ମାସ କଛି କଛି ରଖନ୍ତି ।

ତାକୁ ଧୋଇ ଧାଇ ରମା ପାହୁକ ପାଣି ପିଇବ ନାହିଁ । ଯିଏ ରଖିଛନ୍ତି ତାଙ୍କର ରହିବ । ନୋହିଲେ କନଆଁ ଘରଣୀ ଆସିଲେ ଭୋଗ କରିବ ।

ରହ, ନୂଆ ଘରଣୀ ଆସି ନାକରେ ଦଉଡ଼ା ଦେଇ ଯଦ ନ ଟାଣିବ ତ ମୋ ନାମରେ କୁକୁର ପାଳବ । ସେତେବେଳେ ବଳେ ବୁଝିବ ସେ ।

ରମା ସ୍ଥିର କଲା ଯେ ସେ ଜୀବନ ହାରିବ । ଘରପଛେ ପୋଡ଼ୁ ମୂଷା ହାଉଁଛଣା କେଉଁଆଡେ ପାଉ ।

ମା ମା ବୋଲି କବାଟ ବାଡ଼େଇ ରଙ୍ଗିଆ ଡକା ଛାଡ଼ିଲାଣି । ହଆଁଲଗା ଟୋକା ଏତକ ବେଳକୁ ଆସିଲା । ଡାକ ଛାଡ଼ୁଛି ତ କବାଟ ବାଡ଼ଉଛି କାହିଁକି ? ଯେତେ ଶିଖାଇଲେ ଶିଖୁ ନାହିଁ । ଇସ୍ ଉଠିଲେ ଉଲ୍ଟର ଲଗାଇ ଦେବ । ରଙ୍ଗିଆର କାନ ମୋଡ଼ି ଦୁଇ ଥାପଡ଼ ନ ଦେଲେ ତା ମନରେ ପଶିବ ନାହିଁ ।

ରମା ଦାଣ୍ଡ କବାଟ ଖୋଲିଲା । ରଙ୍ଗିଆ ଦୂରେଇ ଠିଆ ହୋଇଛି । କୁନ ହାତରେ ଖଣ୍ଡେ ବାଡ଼ି ଧରି ଦରଖୋଲା କବାଟକୁ ବାଡ଼ଉଛି ।

ଆରେ, ଏଇ ଅବେଇଜ ତ ଠକ୍ ଠକ୍ କରୁଛି, ରଙ୍ଗିଆର ଦୋଷ ନାହିଁ । କଖାରୁ-ଗଛରେ ଲାଉ ଫଳିବ ନାହିଁ । ମୁହଁଟା ତା ବାପ ଝରକା । ଲମ୍ବ ନାକଅ, ସବୁବେଳେ ସତେ କି ରାଗ ଡମ ଡମ । ଅବୁଝ୍, ଅଝଟ ।

ରହ, ପାଇବୁ ଯେ, କେତେ ଗେଲବସର ହୋଇଛୁ, ପୁଣି କଅଣ ହେବୁ ବଳେ ଜାଣିବୁ । ରଇଥା, ସାବତ ମା ଆସିବ । ତୋ ପିଠିରୁ ଚୋପା ଛଡ଼ାଇବ । ବାପ ଘୁଆଗୀ ହୋଇଛୁ, ସେଇ ବାପ ତତେ ଆଉ ଆଖିରେ ଚାହିଁବ ନାହିଁ ।

କୁନ୍ନ ଘର ଭିତରକୁ ପଶି ଆସିଲା । ଚକ୍‌କଣି କରି କିଏ ତାର ମୁଣ୍ଡ କୁଣ୍ଡାଇଛି । ମୁହଁରେ ଓ ହାତ ଗୋଡ଼ରେ ବାସନା ପାଉଡର ବୋଳିଛି । ଆଖିରେ କଜଳ ନାଇ ଦେଇଛି । କିଏ ଆଉ ହୋଇଥିବ ? ନଟବର ବାବୁଙ୍କ ସ୍ତ୍ରୀ ଗୋମତୀ । କେତେଥର କହିଲେଣି, କୁନୁକୁ ମୁଁ ଜୋଇଁ କରିବି ।

କରନ୍ତୁ, ପାଇବେ ଯେ । ଫୁଲ୍‌କା ଗାଲି ଝିଅ ତାଙ୍କର ହାତ ପିଠିରେ ଲବ୍ଧ ଯୋଛୁବ ! କେଉଁ ଏବେ ମୁଁ ଥିବ ଯେ ଦେଖିବ ।

କୁନୁ ରମାକୁ ଭୁଣ୍ଡାଇ ଧରିଲାଣି । ତାକୁ ତଳୁ ଉଠାଇ ଛାତିକି ନେଲା । ଆଖି ଛଳ ଛଳ ହେଲା । ଗେଲ କରି ପଚାରିଲା, କଏ ତତେ କଣ ନାଇ ଦେଇଛି ମ, ତତେ ଭୋକ କରୁ ନାହିଁକି କୁନୁ ?

ରଙ୍ଗିଆ ଘର ଭିତରକୁ ଆସି କହିଲା, ଡାକ୍ତର ଘର ମା କୁନୁବାବୁଙ୍କୁ ଡବଲ ରୋଟି ଆଉ କ୍ଷୀର ଖୋଇଛନ୍ତି । କହିଲେ ମାଆକୁ କହିବୁ ମୋ ଜୋଇଁକି ଭାତ ଦେବ ନାହିଁ । ସେ ସାହାବ ହେବ, ରୁଟି ଖାଇବ ।

ରମା ଉତ୍ତର ଦେଲା ନାହିଁ । ଦାଣ୍ଡ କବାଟ ବନ୍ଦ କରି ଭିତର ବାରଣ୍ଡାକୁ ଆସିଲା । କୁନୁକୁ ତଳେ ଓହ୍ଲାଇ କହିଲା, ଭଲପିଲା ହୋଇ ଯା ଖଟ ଉପରେ ଶୋଇ ପଡ଼ିବୁ । ବାଡ଼ ଖଣ୍ଡି ହାତରୁ ଟାଣି ନେଇ ଦୁଆରକୁ ପକାଇ ଦେଲା । ପୁଣି କହିଲା, କୁନୁ ମୋର ସୁନା ପୁଅଟା, ଦୁଷ୍ଟ ହେବନାଇଁ, କାନ୍ଦିବ ନାହିଁ, କଥା ମାନିବ । ଚୁପ୍‌ଚାପ୍ କରି ଶୋଇ ପଡ଼ିବ । ଇସ୍ରି ସଙ୍ଗେ ଲଢ଼ିବ ନାହିଁ । ମାଉସୀ ତ ରୁଟି ଦୁଧ ଖୋଇଛି । ନିଦରୁ ଉଠିଲେ କେତେ ଭଲ ଚିଜ ଖାଇବାକୁ ଦେବି ।

କଅଣ ଦବୁ ମା ?

ରମା କୁନୁର ହାତ ଧରି ଖଟ ପାଖକୁ ନେଲା । ଉପରକୁ ଟେକି ଶୁଆଇ ଦେଲା । ଗୋଟେ ତକିଆଟି ମୁଣ୍ଡ ତଳେ ଦେଇ କହିଲା, ଆଖି ବୁଜ୍, ଶୋଇପଡ଼ । ମୁଁ ରଙ୍ଗିଆକୁ ଭାତ ଦେଇ ଆସେ ।

ମୁଁ ଭାତ ଖାଇବି ।

କୁନୁର ପିଠି ଆପଡ଼ାଇ ରମା କହିଲା, ନା, ଭାତ ଶୁଖି ଗଲାଣି । କୁନୁ ମୋର ସୁନା ପିଲାଟା । ଆଖି ବୁଜି ଚୁପ୍‌ଚାପ୍ କରି ଶୋଇ ପଡ଼ିବ । ନିଦରୁ ଉଠିଲେ ମୁଁ ତତେ ପରୋଟା, ପାଚିଲା କଦଳୀ, ଛେନା ଚକଟା ଖାଇବାକୁ ଦେବି ।

କୁନୁ ଆଖି ବୁଜିଲା ।

ଇସ୍ରି ଛଅଟ ପଚ ହେଲାଣି । କେତେବେଳୁଁ ସେ ଶୋଇଛି । ବାପଙ୍କର ଗର୍ଜନ ତର୍ଜନ ଓ ଗିଲାସ ପ୍ଲେଟ ଭଙ୍ଗା ଶବ୍ଦ ତାଆର ନିଦ ଭାଙ୍ଗି ପାରି ନାହିଁ ।

ସୁକାନ୍ତର ସେ ଅତି ଗେହ୍ଲା ଝିଅ, ଖେଳ କର୍ଣ୍ଣେର । ଏତେ ରାଗ ରୋଷ ହୋଇ ରାସ୍ତାରେ ଗଲବେଳେ ବି ଶୋଇଲା ପିଲାଟାକୁ ଚୋକ ଦେଇ ଗଲେ । ହଉ, ରହ, ସବୁ ଗେହ୍ଲା ପଣିଆଁ ଶେଷ ହେବ ଯେ । ସାବତ ମା ଆସୁ । ସେଇ ବାପ ପୁଣି ଆଉ ଆଖିଟେ୍ର ଅନାଇଁବ ନାହିଁ । ଜଣା ଶୁଣା କଥା ।

ପିଲା ଦୁଇଟିଙ୍କୁ ପାଳିବ ବୋଲି ଦରବୁଢ଼ା ଗୋବିନ୍ଦ ବାବୁ ଆଉଥରେ ସଂସାର କଲେ । ପାଞ୍ଚ ବରଷ ଦ୍ୱିତୀୟ ବାହାକୁ ଡିନିଟା ଛୁଆ ହେଲେଣି । ସବୁ ଗୁଡ଼ିକ ପୁଅ । ଆଗ ଭାରିଜାର ଝିଅ ଦୁଇଟିଙ୍କର ଅବସ୍ଥା ବାରଣ୍ଡା ଦାକଡ଼ା ହେଲଣି । ଜଣକୁ ଦଶବରଷ, ଆରଟିକୁ ଆଠବରଷ । ନୂଆ ମାଆର ଗୋଟାଏ ଲେଖାଁ ଛୁଆକୁ ବୋଝ ବୋହି ଘରର ସବୁ କାମ କରିବେ । ତଥାପି ପେଟ ପୂରାଇ ମୁଠିଏ ଖାଇ-ବାକୁ ପାଇବେ ନାହିଁ ।

କଣ୍ଠା ହୋଇଲାଣି । କେଉଁ ଅଭେକା । ଯାଉଁ ପଦେ, ଆସୁଁ ପଦେ । ବାଧା, ଗୋଇଠା । କାନ୍ଦିବାକୁ ଆଖିରେ ଲୁହ ନାହିଁ । ମା ମଲା ଦିନୁଁ ହସ ଓଠରୁ ଖସି ପଡ଼ିଛି । ବାପ କାଠ ବେପାର କରୁଛନ୍ତି । ଭଲ ରୋଜଗାର ହୁଏ । କନିଆଁ ମାଇପ ଗୋଟି ଗୋଟି କରି ସୁନା ଗହଣା ଗଢ଼ାଇ ପିନ୍ଧୁଛି । ଝିଅ ଦିଟାଙ୍କ ହାତରେ ପାଣିକାଚ ।

ଗୋବିନ୍ଦ ବାବୁଙ୍କର ଆଖି ଫୁଟି ଯାଇନାହିଁ । ନିଜେ ତ ପଦେ କହିବେ ନାହିଁ । ଦାଣ୍ଡ ଲୋକେ ପଦେ ପଚାରିଲେ ଆଖି ରଙ୍ଗ କରି କହିବେ, ମୋଘର କଥାରେ ତମେ କିଏ ?

ସେମିତି ହେବ ? ମୋ ଲୁନୁ, ମୋ ଇରା ଏତେ ଗଞ୍ଜଣା, ଏତେ ଦୁଃଖ ସହିବେ ? ଏତେ ହୀନମାନ ହେବେ ?

ଛାତି ଥରାଇ କୋହ ଉଠିଲା । ଓଠ ଚାପି ଧରିଲା । ଦୁଃଖ ଅଭିମାନର ତୋଫାନ ସାରା ଶରୀର ଦୋହଲାଇ ଦେଲା । ପୁଣି ଆଖିରୁ ବରକୋଳି ପରି ଲୁହ ଟୋପା ଟୋପା ହୋଇ ଝରି ପଡ଼ିଲା । ନାକପୁଡ଼ା ଥର ଥର ହୋଇ କମ୍ପିଲା । ଅଲରା କେଶକୁ ରମା ମୁଠା ମୁଠା କରି ଓଟାରିଲା ।

ନା, ଏପରି ହେବ ନାହିଁ । ଏକା ସଙ୍ଗେ ମା, ପୁଅ, ଝିଅ, ଟିକିଏ ଟିକିଏ ବିଷ ଖାଇ ଶୋଇ ପଡ଼ିବେ । ସମସ୍ତେ ନିଶ୍ଚିନ୍ତ ହେବେ ।

ଲୋକେ ପଛରେ ବାରକଥା କହି ନିନ୍ଦା କରିବେ । ମନଇଚ୍ଛା ନିନ୍ଦା କରନ୍ତୁ । ରମା ଶୁଣିବାକୁ ନଥିବ । ପରର ଦୟା, ସହାନୁଭୂତି ଆଦି ଉକ୍ତି ପାଇ-ବାକୁ ପିଲା ବଞ୍ଚିଥିବେ ନାହିଁ । ଖବର ପାଇ ଗସ୍ତରୁ ସେ ଧାଇଁ ଆସିବେ । ମୁଣ୍ଡ ପିଟି କାନ୍ଦିବେ । ଗିଲସ ଫୋଟ ଫୋପାଡ଼ିବାର ଫଳ, ନିଜ ପିଲାଙ୍କ ମା ଉପରେ ଗର୍ଜନ କରିବାର ପରିଭବ ସେ ପାଇବେ ।

ପାଉନ୍ତୁ, କାହାର କଅଣ ଥାଏ ? ବେଶୀ ପାଠ ପଢ଼ିଛନ୍ତି । ବଡ଼ ହାକିମ ହୋଇଛନ୍ତି । ଭଲ ମଣିଷ ବୋଲି ସାଙ୍ଗମାନେ ଓ ଅଧୀନସ୍ଥ କର୍ମଚାରୀମାନେ ଆଗରେ ଓ ପଛରେ ଗୁଣ ଗାଉଛନ୍ତି । ଉପରସ୍ଥ ହାକିମମାନେ କାମିକା ଅଫିସର ବୋଲି ପ୍ରଶଂସା କରୁଛନ୍ତି । ଏସବୁ ଗର୍ବ ନେଇ ସେ ବଳେ ନୂଆ ସଂସାର କରିବେ । କରନ୍ତୁ କି ନ କରନ୍ତୁ ସେଥିରୁ ମତେ କି ମିଳିବ ?

କିନ୍ତୁ—

ଆରେ, କେଉଁଠେ ଅସନା କେଉଁଠେ ଭୟଙ୍କର ଭାବନା ମନକୁ ଆସୁଛି ? ଛି, ଛି । ପିଲା ଦୁଇଟିଙ୍କୁ ଚାହିଁଲା । ଇରା କଡ଼ ଓଲଟାଉଛି । ବୁନୁ ଜଳ ଜଳ କରି ଚାହିଁଥିଲା ଦୃଷ୍ଟି ପଡ଼ିବାରୁ ପୁଣି ଆଖି ବୁଜିଲା ।

ଅଶୁଭ ଭାବନା ସ୍ଥଗିତ ରହିଲା । ଠାକୁରେ ପିଲା ଦୁଇଟାଙ୍କୁ କୋଟି ପରମାୟୁ ଦେଉନ୍ତୁ । ମୂର୍ଖଅ ମୂର୍ଖ ହୋଇ ସଂସାରରେ ରହନ୍ତୁ । ଲୋକେ କହିବେ ସୁକାନ୍ତ ଇଞ୍ଜିନୀୟରଙ୍କର ପିଲା, ସାବତ ମାଆର ଅତ୍ୟାଚାର ପାଇଁ ଏମିତି ହେଲେ । ନିନ୍ଦାଅପମାନ ସେ ସହିବେ, ମୋଓର କି ଥାଏ ? ଥିବ ନା ଶୁଣିବ ?

ରମା ବାରଣ୍ଡାକୁ ଆସିଲା । ରଙ୍ଗିଅକୁ ଡାକ କଲାଣି । ପରପୁଅ, ଗାକର କରିଛି, ମୁଠିଏ ଖାଇବତ !

ଡାଲି ଅଲଣା । ତରକାରି ଲୁଣିଆଁ । ଭାତରୁ ଯେଜ ଛାଡ଼ି ନାହିଁ । ଏସବୁ କାହିଁକି ହେଲା ? ପିଲା ଦୁଇଟା ଉଲ୍ଲୁରି ଲଗାଇଲେ । ବାଟକୁ ଜଳଖିଆ ଦେବ ବୋଲି ଉଠା-ଚୁଲିରେ ସେ ପରଟା ଓ ଆଳୁ ଭାଜିଲା । ଡାଲିରେ ଲୁଣ ନ ପକାଇ ରମା ଆଉ ଥରେ ତିଅଣରେ ଲୁଣ ପକାଇଲା ଅଜାଣତରେ । ସେଇଥି ପାଇଁ ସୁକାନ୍ତ ଅଶାନ୍ତ ହେଲେ । କଚଡ଼ା ଫୋପଡ଼ା କଲେ । ଉପାସ ଭୋକରେ ରାଗ ତମତମ ହୋଇ ଚାଲିଗଲେ ।

ଅର୍ଦ୍ଦଳୀ ଅଗାଧୁ୍ଟା କେଉଁଠି ଓଲୁ ମ, ଟିଫିନ୍ କେରିଅର ନେଲାନାହିଁ ! ଦାଣ୍ଡଘର ଟୁଲ ଉପରେ ରଖା ହୋଇଛି । କେବଳ ଫ୍ଲାସ୍କଟା ନେଇଛି । ବାଟରେ ସେ ଖାଇବେ କଅଣ ? କ୍ଷୀର ଟିକିଏ ପିଇଲେ ତ ଭୋକ ମରିବ ନାହିଁ । ଖାଲି ପେଟ ଆଉଣ୍ଡି ହେବ । ଅଗାଧୁ ଉପରେ ନିର୍ଭର କରିବା ଠିକ୍ ହୋଇନାହିଁ । ଯିଏ ଗସ୍ତରେ ଯିବେ, ସେ ନିଜେ ଆଗ ଦରକାରୀ ପଦାର୍ଥ ଗାଡ଼ିରେ ଥୋଇବେ, ଅନ୍ୟ ଉପରେ ନିର୍ଭର କଲେ ନିଜକୁ ଦୁଃଖ ସହିବାକୁ ହେବ । କଷ୍ଟ ଭୋଗିବାକୁ ପଡ଼ିବ ।

ରମା ଅଧୀର ଅସ୍ଥିର ହେଲା । ଛଟପଟ ହେଲା । ଏଘର ସେଘର ହୋଇ ଭାବିବାକୁ ଲାଗିଲା, ଜୀବନ ମୂର୍ଚ୍ଛା ପରିଶ୍ରମ ସେ କରୁଛନ୍ତି । ଗସ୍ତରୁ କ୍ଲାନ୍ତ ହୋଇ ଫେରିଲେ ଅଫିସରେ କାମ ଗଦା ହୋଇଥାଏ । ଅଫିସରୁ ରାତି ଆଠଟାରେ ଫେରନ୍ତି । କ୍ଲାନ୍ତ ହୋଇ ବିଛଣାରେ ପଡ଼ି ଛଟପଟ ହୁଅନ୍ତି । ଜଳଖିଆ ତ ଛାଡ଼ି-ଲେଣି । ବେଳ ମିଳୁ ନାହିଁ ଖାଇବାକୁ ।

ରାତି ଆଠଟାରେ ବି କେବେ ବଡ଼ ହାକିମଙ୍କ ପାଖରୁ ଡାକରା ଆସେ । ଯେତେ ରଗ୍ ରଗ୍ ହେଲେ ବି ଘରେ ଥାଇ ହାକିମଙ୍କର ସପ୍ତପୁରୁଷ ଉଦ୍ଧାରିଲେ ବି ଯିବାକୁ ପଡ଼େ । ଚାକିରି କରୁଛନ୍ତି, ଦରମା ନେଉଛନ୍ତି । ଆଦେଶ ମାନିବାକୁ ହେବ ।

ଅଫସକାମ ନ ସରୁଣୁ ପୁଣି ଦଉଡ଼ ମୋଫସଲକୁ—କେଉଁଠି ବନ୍ୟା ପ୍ରତିକାର ପାଇଁ ନଈକୂଳରେ ନୂଆ ବନ୍ଧ ପଡ଼ୁଛି, କେଉଁଠି ନଈନାଳ ବନ୍ଧା ହୋଇ ବିଲମାଳରେ ପାଣି ମଡ଼ାଇବାର ବ୍ୟବସ୍ଥା କରା ହେଉଛି, ଘୋର ଅରଣ୍ୟ ଓ ପାହାଡ଼ କନ୍ଦରେ ରାସ୍ତା ପିଟୁଛି, କୋଠାବାଡ଼ି ତୋଳା ତ ମାମୁଲି କାମ, ନିତି ଲାଗି ରହୁଛି ।

ନିଶ୍ୱାସ ମାରିବାକୁ ବେଳ ନାହିଁ । କାନ୍ତିବାବୁ ଓ ମୂଳଅମାନଙ୍କ ସଙ୍ଗେ ଥିକ୍ ଠିକ୍ । ସେ ଦୁର୍ବଳ ହେଲେଣି । କହୁଥିଲେ, ତର ତର ହୋଇ ଉଠାଣି ସ୍ଥାନରେ ଖଣ୍ଡେ ଦୂର ଗ୍ଲଗଲେ ଛାତି ଥରୁଛି, ମୁଣ୍ଡ ଝାଇଁ ଝାଇଁ ହେଉଛି । ବେଳେ ବେଳେ ତଳପେଟ ଦରଜ ହେଉଛି । ଛୁଟି ନେବାକୁ କହିଲେ ଉତ୍ତର ଦେଉଛନ୍ତି, ଅମୁକ କାମଟା ସରିବାକୁ ବସିଲାଣି, ଏତେ ପରିଶ୍ରମ କଲି, ଅମୁକ ମନ୍ତ୍ରୀ ଉଦ୍‌ଘାଟନ କରିବେ, ସୁନାମ ମିଳିବ । ଏତେ ପରିଶ୍ରମ କଲି, ଶେଷକୁ ଆଉ କିଏ ବିନା ପରି-ଶ୍ରମରେ ସମ୍ମାନ ନେବ ?

ଗୋଟିକ ପରେ ଗୋଟିଏ କାମ ଲାଗି ରହୁଛି । କାମ କଅଣ ଛାଡ଼ିଣ୍ଡେ ? ଔଷଧ ଖାଅ କହିଲେ ସେ କହନ୍ତି, ଆପେ ଭଲ ହୋଇଯିବ । ଡାକ୍ତରବାବୁ ତାଙ୍କ ପାଇଁ ଭିଟାମିନ୍ ବଟିକା ଦେଇଥିଲେ । ଭାତ ଖାଇସାରି ଗୋଟିଏ କରି ଦିନକୁ ତିନୋଟି ଗିଳିବାକୁ ହେବ । ଗ୍ଲରି ପାଞ୍ଚ ଦିନ ଖାଇଛନ୍ତି । ସମସ୍ତ ଉଣ୍ଡି ନ ଦେଲେ ନିଜେ ସେ ଖାଇବେ ନାହିଁ । ମନେ ପଡ଼େ ନାହିଁ ।

ଟେବୁଲ ଉପରେ ଔଷଧ ବୋତଲଟା ରଖା ହୋଇଛି । ସୁଟ୍‌କେଶ୍‌ରେ ରଖିବାକୁ ରମା ଭୁଲି ଯାଇଛି । ସେ ନିଜେ ନେଇ ରଖିଲେ ନାହିଁ । ଭୁଲାମନ । ଠାକୁରେ ତାଙ୍କୁ ଶୁଭରେ ଫେରାଇ ଆଣନ୍ତୁ । ସେ ବିରକ୍ତ ହେଉନ୍ତୁ କି ଯେତେ ଫୋପଡ଼ା କଚଡ଼ା କରନ୍ତୁ ରମା ମନକୁ ନେବ ନାହିଁ । ବଟିକାତକ ସବୁ ଗିଳାଇବ; ଦୁର୍ବଳତା ଆସିଛି ବୋଲି ଚଢ଼ା ଖୋଇ ଧରିଛନ୍ତି । ଦେହ ଭଲ ହୋଇଗଲେ ତାଙ୍କ ରାଗ ରାଗ ପଣ ବଳେ ଭଲ ହୋଇଯିବ ।

ବଣ ଜଙ୍ଗଲ ମଝିରେ କାମ । ଆପଦ ବିପଦ ଗ୍ଲରିଆଡ଼େ ଛକି ରହିଛନ୍ତି । କେତେ କେତେ ଘଟଣା ସେ କହନ୍ତି । ଶୁଣିଲା ବେଳେ ଦେହ ଶୀତେଇ ଉଠେ ।

ଡ୍ରାଇଭରକୁ ଯେତେ ବୁଝାଇ କହିଲେ, ସେ ମାନେ ନାହିଁ । ବେଳଉଣ୍ଡି ମଦ ପିଇ ଦିଏ । ପବନ ବେଗରେ ଗାଡ଼ି ଚଳାଏ । ଖବର କାଗଜରେ ଜିପ୍ ଦୁର୍ଘଟଣା କଥା କେତେ ଥର ବାହାରିଲାଣି । କେଉଁଠି ପୋଲ ଉପରୁ ଲେଉଟି ପଡ଼ୁଛି । କେଉଁଠି ଗଛ ଦେହରେ ପିଟି ହେଉଛି । ଶଗଡ଼ ଗାଡ଼ି ସଙ୍ଗେ କି ସାମନାରୁ ଧାଇଁ ଆସୁଥିବା ଜିପ୍ କି ଟ୍ରକରେ ମୁହାଁମୁହିଁ ଧକ୍କା ଲାଗୁଛି । ଜିପ୍ ଚୂନା ହେଉଛି ଓ ତା ସାଥିରେ ଆରୋହୀ । ଦିନେ ସୁକାନ୍ତ ବାହାଦୂରୀ କରି କହୁଥିଲେ ନିଜେ ସେ ଜିପ୍‌ଗାଡ଼ି ଭଲ ଚଳାଇ ଜାଣିଲେଣି । ଥରେ ବ୍ରେକ୍ ଦେଲେ ବି ଗୋଟିଏ ପୁଡ଼ ଦେହରେ ଘଷି ହୋଇଗଲା । ଆଉ ଥରେ, ଘାଟି ଉପର ଗଡ଼ାଣିରେ ତଳକୁ ଖସି ପଡ଼ିଥାନ୍ତା । ଠାକୁରେ ବଂଚାଇଲେ ।

ଠାକୁରେ ନିଶ୍ଚୟ ସାହାହେବେ । କାହାର ସେ କେବେ ମନ୍ଦ ମନାସି ନାହାନ୍ତି, କ୍ଷତି କରି ନାହାନ୍ତି । କେହି ତାଙ୍କୁ ଅକଲ୍ୟାଣ କରିବେ ନାହିଁ । ହାତଧରି ବାହା-ହେଲା ସ୍ତ୍ରୀ ଉପରେ ଭଲ ମନ୍ଦରେ ବିରକ୍ତ ହେଲେ, ଦୁନିଆଁ ଲୋକଙ୍କର କି ଥାଏ ? ଠାକୁରମାନଙ୍କର କି ଥାଏ ? ସେମାନେ ସେବା ପୂଜା ଗ୍ରହାନ୍ତି । ସେମାନେ ଭକ୍ତି ଶୁହାନ୍ତି । ଭୋଗର ବାସନା ଶୁଙ୍ଘି ତୃପ୍ତି ହୋଇ ମନକାମନା ପୂର୍ଣ୍ଣ କରନ୍ତି ।

କାନ୍ଥରେ ଝୁଲୁଥିବା ଦଶଭୁଜା ଦୁର୍ଗାଙ୍କର ଛବି ତଳେ ମୁଣ୍ଡ ଲଗାଇ ରମା ପ୍ରାର୍ଥନା କଲା, ମାଗୋ, ସର୍ବ ବିପଦ ହାରିଣୀ, ସେ ସର୍ବ ଶୁଭରେ କର୍ମକ୍ଷେତ୍ରରେ ଯିବାଆନ୍ତୁ । ତମରି ଦୟାରେ ହସଖୁସିରେ ଫେରି ଆସନ୍ତୁ । ଦାଣ୍ଡରେ ଠିଆ ହୋଇ ଡାକୁଥାନ୍ତୁ, ସବୁଦିନପରି, କଅଁଳ ଗେହ୍ଲାଳିଆ ସ୍ୱରରେ, ରମା, ରମା,— ।

ପ୍ରାଣପୁଲକା, ମନ ଦୋହଲା, ଜୀବନ କଣ୍ଠା ସେ ଡାକ ! ଦୁଇଟି ପିଲାଙ୍କର ବାପ ହୋଇ ମଧ୍ୟ ହେ, କି ହଇଓ, କି ଶୁଣିଲଣି, ବୋଲି ଡାକନ୍ତି ନାହିଁ । ପ୍ରଥମ ଦେଖା ଦିନ ତୁଣ୍ଡରୁ ଯେଉଁ ପାଟି ଖନିବଜା ଡାକ ବାହାରିଥିଲା, ସେହି ନାମରେ ହିଁ ସେ ଡାକନ୍ତି ।

ରମା ତାଙ୍କ ତୁଣ୍ଡର ଭାଷା ଅପେକ୍ଷା ମନର ଭାଷା ଓ ଆଖିର ଭାଷାକୁ ଭଲ କରି ଜାଣେ । ସେ ଭାଷା ପ୍ରେମର ପାରାବାର । ସ୍ୱଚ୍ଛ, ନିର୍ମଳ, ସୀମାହୀନ । ଅତି ଗଭୀର । ଶ୍ରେଷ୍ଠ ବଡ଼ ଢେଉ ଉଠେ ପଡ଼େ । ତୋଫାନ ଆସିଲେ କେଡ଼େ ଭୟଙ୍କର

ହସେ । ବେଣୀବେଲ ରହେ ନାହିଁ । ପୁଣି ହୁଏ ଧୀର, ଶାନ୍ତ ମନୋରମ । ଧରିତ୍ରୀର ବେଳା ଭୂମିରେ ମଥା ନୁଆଁଏ ।

ଉଦାତ୍ତ ଧରିତ୍ରୀ ପରି, ପ୍ରେମମୟୀ ନାରୀ, ଜନନୀ; ସୃଷ୍ଟିକାରିଣୀ । ସ୍ଥିର, ଅଚଞ୍ଚଳ ଆବେଗ ହୀନା । ଅଶ୍ରୁମୁଖୀ, ହାସ୍ୟମୟୀ, ପ୍ରେମିକା !

ହାଣ୍ଡ କବାଟରେ କାହା ହାତର ମୃଦୁ ଆଘାତ ।

ନିଶ୍ଚୟ ଜୟଶ୍ରୀ ଦେବୀ ଆସିଛନ୍ତି । ରଙ୍ଗିଆ ଖାଇ ସାରିଲାଣି । ନବୁଧିଆ ଟୋକା । କାଲେ କବାଟ ଖୋଲି ଦେବ, ଜୟଶ୍ରୀ ହସି ହସିକା ଘର ଭିତରକୁ ପଶି ଆସିବେ । ମୋଟାଳିଆ ମଣିଷ, ହାତୀପରି ଦୋହଲି ଦୋହଲି ଚାଲନ୍ତି । ମୁଣ୍ଡରେ ଫୁଲମାଳ ଗୁଞ୍ଜାନ୍ତି ବୋଲି ଓଢ଼ଣା ଦିଅନ୍ତି ନାହିଁ । ଫୁଲର ବାସନା ତାଙ୍କ ପାଇଁ ଯଥେଷ୍ଟ ନୁହେଁ, କେତେ ଜାତିର ସୁଗନ୍ଧ ପାଉଡର ସେ ରଖିଛନ୍ତି । କେତେବେଳେ କେଉଁଠା ମୁହଁରେ ଦେହରେ ବୋଳନ୍ତି । ମହ ମହ ବାସ ଚହଟେ । ମଥାରେ ପାହୁଲି ପରି ସିନ୍ଦୂର ଟୋପା, ଆଖିର କଜଳ ଗାର ତଳ ପତାକୁ ମଡ଼ାଇ ପିନ୍ଧନ୍ତି । ମୁକ୍ତାପରି ଦାନ୍ତ ହଧାଡ଼ି । ପାନ ଖାଆନ୍ତି ନାହିଁ । ଓଠରେ ପାତଳ କରି ଗୋଲାପୀ ରଙ୍ଗ ବୋଳନ୍ତି । ଜାତି ଜାତିକା ଦାମିକା ଶାଢ଼ୀ ଓ ବ୍ଲାଉଜ । କେଡ଼େ ବାଗରେ ସେ ପିନ୍ଧନ୍ତି । ଶୋଭିକାର ଦିଶନ୍ତି । ଆଖିର ଚାହାଣୀ ମୁହଁର ହସ ମନ କିଣି ନିଏ । ଗେହ୍ଲେଇ କହନ୍ତି । ଅନ୍ୟ ମନର ସବୁ ଭାବନା ସେ ଚୋରିକରି ନିଅନ୍ତି ।

ହଁ, ସେଇ ଡାକୁଛନ୍ତି ପରି ! ରଙ୍ଗିଆ କବାଟ ଖୋଲିବାକୁ ଗଲାଣି ! ଅଲକ୍ଷଣୀଟା, ମତେ ପଦେ ପଚାରୁ ନାହିଁ । ଜୟଶ୍ରୀ ହସି ହସିକା ପଶି ଆସିବେ । ତାଙ୍କର ଆଖି ଡୋଳା ଚାରିଆଡ଼େ ଭ୍ରମିଯିବ । ପଚାରିବେ, କଅଣ କରୁଛ ଗୋ ଭଉଣି, ତମ ମୁହଁଟି ଆଜି କାହିଁକି ଶୁଖିଲା ଦିଶୁଛି ? ମୁଣ୍ଡ କାହିଁକି ବେଢାପରି କରିଛ ? ଆଖି ଦୁଇଟା ଫିକ୍‌କା ଦିଶୁଛି ? ଦରମଇଳା ଲୁଗା ପିନ୍ଧିଛ ? କି ତର-

କାର ଅଜ୍ଞ କରିଥିଲ ? ବାବୁ ବିରକ୍ତ ହେଲେ କାହିଁକି ? ଆସ, ତମ ମୁଣ୍ଡ ବାନ୍ଧି ଦେବି । ପିଲା ଦିଓଟି ତ ଶୋଇ ପଡ଼ିଛନ୍ତି । ଚାଲ, କାହା ଘରକୁ ବୁଲି ଯିବା ।

ରମା ଟେବୁଲ୍ ପାଖକୁ ଯାଇ ଆଇନାରେ ମୁହଁ ଦେଖିଲା । ଅଞ୍ଚଳରେ ଆଖି ପୋଛିଲା । ଚରୁଣି ଧରି କେଶ ସଜାଡ଼ିଲା । ରଙ୍ଗିଆ ଦାଣ୍ଡକବାଟ ଖୋଲିଲାଣି । କାହା ସଙ୍ଗେ କଥାଭାଷା ହେଉଛି ।

ଜୟଶ୍ରୀ ନୁହନ୍ତି । ଆଉ କିଏ ଆସିଛି । ଆଇନା ଓ ଚରୁଣି ଟେବୁଲ୍ ଉପରେ ରଖି ସେ ବାରଣ୍ଡାକୁ ଆସିଲା । ରଙ୍ଗିଆ ଛୋଟ କାଗଜ ଖଣ୍ଡେ ଧରି ପଦାରୁ ଆସିଲା । ରମା ହାତକୁ ବଢ଼ାଇ ଦେଲା ।

ଲେଖା ହୋଇଛି, ରମା, ମୋତେ ମନିବ୍ୟାଗ୍‌ଟି ଦେବାକୁ ଭୁଲି ଯାଇଛି । ଆମ ଅଫିସ ପିଅନ୍ ହରିକୁ ପଠାଇଲି । ତା ହାତରେ ପଠାଇବ । ପଚାଶ ଟଙ୍କା ହେଲେ ଚଳିବ । ଅଫିସରେ ଅଛି । କେତେ ଖଣ୍ଡ ନକ୍‌ସା ଖୋଜୁଛି । ମିଳିଲେ ସଙ୍ଗେ ସଙ୍ଗେ ଚାଲିଯିବି । ଡେରି କରିବ ନାହିଁ । ଦୂରବାଟ, ଜଙ୍ଗଲ, ଘାଟି, ଅସାଧ୍ୟ ରାତି ହେବଟି, ଜିପ୍‌ର ବ୍ୟାଟେରି ଡୁବିଲା ।—ସୁକାନ୍ତ ।

ରମାର ଓଠରେ ହସ ! ସେ ରଗ ରଗ ହୋଇ ଯାଇଛନ୍ତି । ଗ୍ଲାସ୍ ପ୍ଲେଟ୍, ଭାଙ୍ଗିଛନ୍ତି । ପାଖକୁ ନ ଆସି ଦୂରରେ ଥାଇ ଗୋଳେଇ ହେବେ । ମୋ ଅକ୍ଷର ନ ଦେଖିଲେ ସେ କେବେ ରାସ୍ତାରେ ଯିବେ ନାହିଁ । ନାଲଠା । ମନିବ୍ୟାଗ୍ ତାଙ୍କ ପ୍ୟାଣ୍ଟ ପକେଟ୍‌ରେ ଥିବ । ଆରେ, ନକ୍‌ସା ବଡ଼ା ତ ଟେବୁଲ୍ ଉପରେ ବନ୍ଧା ହୋଇ ରଖା ହୋଇଛି ।

ହରି ପିଅନ ଘର ଭିତରକୁ ଆସିଲା ।

ବାବୁ ଅଣିଆ ଯାଇଛନ୍ତି ହରି, ତାଙ୍କୁ ତେମେ ଡାକି ଦିଅ । ସେ ଖାଇକରି ଯିବେ ।

ଆମ ଏକାଉଣ୍ଟେଣ୍ଟ୍ ବଦଳି ହେଲେ ଯେ ଅଫିସରେ ଏବେଳା ଟିକିଏ ଖିଆ ପିଆ ଥିଲା । ୩ଟା ବସରେ ସେ ଯିବେ । ତେଣୁ, ଏବେ ତାଙ୍କର ବିଦାବନ୍ଦ ଚା ଭୋଜି ହେଲା ! ବାବୁ ସେଇଠି ଜଳଖିଆ ଖାଇଲେଣି ।

କଅଣ ହୋଇଥିଲା କି ?

ହରି ପିଅନର ପାକୁଆ ପାଟିରେ ହସ। କହିଲା, ତରତରିଆ କଥା ମା, ସିଙ୍ଗଡ଼ା, ପକୋଡ଼ା, ଦି ତିନ ପ୍ରକାର ମିଠା ଓ କପେ ଲେଖାଁ ଚା। ଏକାଉଣ୍ଟେଣ୍ଟ ଭଲ ଲୋକ ଥିଲେ। ଗୋଟାଏ ବାଧ୍ୟ ବାଧାନ ରକ୍ଷା କଲେ। କେହି ବଦଳି ହେଲେ। ଚା ଭୋଜଟାଏ କରାନ୍ତୁଏ। ସମସ୍ତେ ଘରେ ଖାଇକରି ଯାଇଥିଲେ। ଅଳ୍ପ ଚାହାରେ କାମ ଚଳିଗଲା।

ବାବୁ ଖାଇଛନ୍ତି ?

ପ୍ଲେଟରେ ପକୋଡ଼ି ଦୁଇଟି ଓ ହରିଯାଗଲା କଦଳୀରୁ ଅଧେ ଛାଡ଼ିଲେ।

ରମା ହସିଲା। ମନକୁ ମନ କହିଲା, ଚା ଭୋଜି ହେବ ବୋଲି ନିଶ୍ଚୟ ସେ ଆଗରୁ ଜାଣିଥିଲେ। ତା ନ ହୋଇଥିଲେ ଅଲଣା ତିଅଣରେ ଲୁଣ ଗୋଳାଇ ଖାଇଥାଆନ୍ତେ। ଲୁଣିଆ ଡାଲିରେ କାଗେଜି ଲେମ୍ବୁ ଚିପୁଡ଼ି ଥାଆନ୍ତେ। ଯେଉଁ ଗ୍ଲାସ ପ୍ଲେଟ ଭଙ୍ଗା ହେଲା, ସେତକ ତ ତାଙ୍କର ଝୋଲାବୁହା ଧନରୁ କିଣା! ବୁଦ୍ଧିଆ ବୋଲି ସେ ନିଜକୁ ମଣନ୍ତି। ବୁଝିଆପଣ ଜଣା ପଡ଼ିଲା ଯେ।

ନିଅ ହରି, ଯେଉଁ ତାଙ୍କ ବାଟପାଇଁ ଜଳଖିଆ। ଯେଉଁ ଔଷଧ, ନକ୍‌ସା ବାଡ଼ା—; ରହ, ମନିବ୍ୟାଗ୍ ଖୋଜେ, କେଉଁଠି ସେ ପକାଇଛନ୍ତି।

ଟେବୁଲ ଡ୍ରର୍ ଭିତରୁ ମିଳିଲା। ପଚାଶ ଟଙ୍କାରୁ ଅଧିକା ଅଛି।

ଉପର ଖୋଲରେ ରମାର ଷ୍ଟେଣ୍ଟ ଫଟୋଟି ବି ଅଛି। ଲୁନୁ ପେଟରେ ଥିଲା ବେଳେ ଫଟୋ ଉଠା ହୋଇଥିଲା। ରମା ସେ ଖଣ୍ଡି କାଢ଼ି ରଖିଲା। ତାଙ୍କର ଦରକାର ନାହିଁ। ଆଖିରେ ପଡ଼ିଲେ ବିରକ୍ତ ଲାଗିବ। ଓହୋ, ଯେଉଁ ଭଲ ପାଆନ୍ତି ତ!

ଫଟୋଟି କାଢ଼ି ଗୀତ ଗୋବିନ୍ଦ ବହି ଭିତରେ ରଖିଲା। ମନିବ୍ୟାଗ୍ ହରି ହାତକୁ ବଢ଼ାଇ ଦେଲା। କହିଲା, ଆଉ ଅଧିକ ଟଙ୍କା ଲୋଡ଼ା ହେଲେ ଘରକୁ ଆସି ସେ ନିଜେ ନେଇଯିବେ। ଡେରିହେ ଯାଅ। ହଁ, ଶୁଣ ହରି, ଡ୍ରାଇଭରଙ୍କୁ କହିଦେବ, ଅଖଞ୍ଜ ଗାଡ଼ି, ବେଶୀ ବେଗରେ ଚଳାଇବ ନାହିଁ। ବାବୁଙ୍କୁ ଚଳାଇବାକୁ ଗାଡ଼ି ଛାଡ଼ି ଦେବ ନାହିଁ।

ବୁଢ଼ା ପିଅନ୍ ଝାଡ଼ଣରେ ପଦାର୍ଥ ଗୁଡ଼ିକ ବାନ୍ଧିଲା । ନମସ୍କାର କରି ବାହୁଡ଼ିଲା । ମନକୁ ମନ କହୁଥିଲା, ବାବୁ ମଟର ଗାଡ଼ି କିଣିବେ ବୋଲି ସରକାରଙ୍କଠୁଁ କରଜ ନେବାକୁ ବସିଛନ୍ତି । ସରକାରୀ ଗାଡ଼ିରେ ଚଳାଇବା ଅଭ୍ୟାସ ନ କଲେ କିଅଣ ନିଜ କଉଡ଼ି ଦିଆ ଗାଡ଼ିରେ ଶିଖିବେ ?

ଚାକରାଣୀ ଆସିଲା ।

ରମା ଭାବିଲା, ସ୍ୱାମୀ ଗସ୍ତରେ ଯାଉଛନ୍ତି, ଯେଉଁଠି ହେଲେ କିଛି ଖାଇଲେଣି ତ । ସ୍ୱାମୀ ବିଦେଶ ଯିବେ, ସେ ଘରଣୀ ହୋଇ ଉପାସ ରହିଲେ ଭଲ ହେବନାହିଁ । ବିଧି ରକ୍ଷା କରିବାକୁ ଗୁଣ୍ଡାଏ ହେଲେ ତାକୁ ଚୋବାଇବାକୁ ପଡ଼ିବ । ଏ ଘରେ ପାଣି ଟୋପେ ମୁହଁରେ ଦେବାକୁ ମନ ହେଉନାହିଁ, ତଥାପି, ସେ ବିଧି ରଖିବାକୁ ବାଧ୍ୟ ।

ବିଧି ରକ୍ଷା କରିବାକୁ ରମା ଶୁଖିଲା ଭାତ, ଅଲଣା ଡାଲି, ଲୁଣିଆ ତରକାରି ଖାଇ ବସିଲା । ଯାହାକୁ ଏତେ ଯତ୍ନ କରି ରାନ୍ଧିଛି, ସେ ସବୁ ତୁଣ୍ଡକୁ ରୁଚୁ ନାହିଁ । ରଙ୍ଗିଆ ସେକଥା ଆଗରୁ କହୁଥିଲା । ଏତେ ପରିଶ୍ରମ କରି ରାନ୍ଧିଛି । ନୂଆ କାମ ନୁହେଁ । ପିଲାଦିନୁ ଏଇକାମ ସେ କରି ଆସିଛି । ନିଜ କାମକୁ ନିଜେ ନିନ୍ଦିବ ନାହିଁ । ଡାଲିରେ ଲୁଣ ଓ ତରକାରିରେ ଆମ୍ବୁଲ ଦେଲେ ସବୁ ଠିକ ହେବ ।

ଆରେ, ରଙ୍ଗିଆ, ଆଣିଲୁ—

ରଙ୍ଗିଆ କଥା ମାନିଲା । ବେଶ୍ ରୁଚିକ ହେଉଛି । ଏତିକି ସେ କରି ପାରିଲେ ନାହିଁ, ରଚିଲେ ? ଚାହାଭୋଜି ଖାଇବାର କଥା, ଭାତ ବାଢ଼ିବାକୁ କହିଲେ କାହିଁକି ? କହନ୍ତି ପରା, ଯିଏ ଯାହାକୁ ଦେଖି ନ ପାରେ, ଅନ୍ଧାର ରାତିରେ ଉକୁଣି ମାରେ । ହାତଗଣ୍ଠି ପଡ଼ିଲା ଦିନରୁ ଏମିତି ଚାଲିଛି । ତାଙ୍କ ସ୍ନେହ ଯେ ଲୋକ ଦେଖାଣ

ଏତେ ଭାତ ଥାଳରେ ଅଜାଡ଼ି ଦେଲୁ ?

ତେମେ ଦେଖୁଛ ତ ମା, ମନା କରୁନା ।

ରଙ୍ଗିଆ ଉତ୍ତର ଦେଇ ଅବଶିଷ୍ଟ ଡାଲି ତରକାରି ବେଲରେ ଅଜାଡ଼ି ଦେଲ । କହିଲ, ହୁଣ୍ଡା ଭାତ ଢୋକିବାକୁ କଷ୍ଟ ହେବ ।

ରମା ଅଡ଼ୁଆରେ ପଡ଼ିଲ । ସ୍ୱାମୀ ଅନୁକୂଳ କରି ଯାଇଛନ୍ତି । ସ୍ତ୍ରୀ ଥାଳରେ ଅଇଁଠା ଭାତ ଛାଡ଼ିବା ଉଚିତ ନୁହେ । ସେ ଯିବେ ଦୂରବାଟକୁ । ଅସାଧ ବାଟ । ଅନ୍ଧାର ରାତି । ଜଙ୍ଗଲ ପାହାଡ଼ । ମଦୁଆ ଡ୍ରାଇଭର । ପେଟ ପଛେ ଫାଟୁ, ନୋହିଲେ ଅଜୀର୍ଣ୍ଣ ହୋଇ ହଇଜାଣ ହୋଇ ସେ ମରୁ, ସ୍ୱାମୀଙ୍କର ଅମଙ୍ଗଳ ନ ହେଉ ।

ତଗଲ କୁନୁଝା ଶୋଇ ନାହିଁ । ଅଖି ବୁଜି ଛଠାଗାଳ ଖଟ ଉପରେ ପଡ଼ିଥିଲ । ଭୁନ ଭୁନ ଅସୁଛ । ଭାତ ମୁଠିଏ ନ ଖାଇଲେ ସେ ଅଝଟ୍ ହେବ ।

ଆ ରେ କୁନୁ, ଭାତ ଖାଇବୁ ।

କୁନୁ ଅସି ପାଖରେ ବସିଲ ।

ଇରି ମା ମା ଡକା ଛାଡ଼ିଲଣି ।

ରଙ୍ଗିଆ, ଝିଅକୁ ଅଣିବୁଝି, ଖାଇଲ ପାଖରୁ ଉଠନ୍ତି ନାହିଁ । ଅଲେ ପାରୁ, ତୁ ସେ ଲୁଗା ଶାଢ଼ୀ ହକାଳ ଶୁଖାଇ ଦେ । ପିଲଙ୍କ ଜାମା ବାଲଟିରେ ରଖା ହୋଇଛ । ସାବୁନ ଟିକେ ମାରି କାଚ ଦେ । ବାବୁ ଅନୁକୂଳ କରି ଯାଇଛନ୍ତି । ଧୋବଣୀ ଆଜ ଅସିବ ବୋଲ କହିଥିଲ, ଏତେ ବେଳ ହେଲଣି ତ ଆସିଲା ନାହିଁ । ଆସିଲେ ବ ଆଉ ଧୋବାଘରେ ଲୁଗା ପଡ଼ିବ ନାହିଁ । ବାବୁ ଗସ୍ତରୁ ଫେରିଲେ ଯାଇଁ ପଡ଼ିବ । ତାକୁ ସେଇଆ କହିଦେବୁ ।

ଇରିକୁ କୋଳରେ ବସାଇଲା ।

ପିଲା ଦହିଙ୍କ ପାଟିରେ ଦ-ଦ ଗୁଣ୍ଡା ଦେଲା । କଷ୍ଟେ ମଷ୍ଟେ ଅଧେ ଢୋକି ଅଧେ କାଢ଼ି ସେମାନେ ଉଠି ଗଲେ ।

ଶୁକ୍ରବାଣୀ ପାରି ଝିଅକୁ କାଖକଲା । ରଙ୍ଗିଆ କୁନିର ହାତ ଧରି ନେଲା । ରମା ବାଧ୍ୟ ହୋଇ ସବୁ ଉଦରସ୍ଥ କଲା । ଅଳସ ଲାଗୁଛି । ଦିନ ଗୋଟାଏ ହେଲାଣି । ସୁକାନ୍ତ ବୋଧହୁଏ ତେଣେ ତେଣେ ଚାଲିଗଲେ ।

ଶ୍ରାନ୍ତି ଦୂର କରିବାକୁ ରମାର ମନ ହେଲା । ଆଖି ମାଡ଼ି ମାଡ଼ି ପଡ଼ୁଛି । କହିଲା, ପିଲାଙ୍କୁ ଘରେ ଖେଳାଉ ଥିବୁରେ ରଙ୍ଗିଆ, ପଦାକୁ ନେବୁ ନାହିଁ । ମୁଁ ଟିକେ ଶୋଉଛି । କିଏ ଯଦି ଆସେ କହିବୁ, ମୋ ଦେହ ଭଲ ନାହିଁ ।

ରମା କଡ଼ଘରେ ପଶି କବାଟ କିଳିଲା । ପଲଙ୍କ ଉପରେ ପଡ଼ି ଆଖି ବୁଜିଲା । ଅବଶ ଆଖିକୁ ନିଦ ଘୋଟି ଆସିଲା ।

ଜୟଶ୍ରୀଙ୍କର କଅଁଳ ଡାକରେ ନିଦ ଭାଙ୍ଗିଲା । ଆଖି ମଳି ମଳି ସେ ପଦାକୁ ଆସିଲା ।

ଖରା ଲେଉଟିଲାଣି । ଜୟଶ୍ରୀଙ୍କ କାଖରେ ଇରା । ତା ଆଖିରୁ ଦୁଇଧାର ଲୁହ ଗଡ଼ି ପଡ଼ୁଛି । କୁନିର ପାଟି ଶୁଭୁଛି ପଦାରୁ । ରଙ୍ଗିଆ ସଙ୍ଗେ ଅଳି କରୁଛି, ସେ ବାପା ପାଖକୁ ଯିବ ।

ଜୟଶ୍ରୀ ମୁରୁକେଇ ହସିଲେ । କହିଲେ, ଦିପହରଠାରେ ଏପରି ଅଜ୍ଞାନ ହୋଇ ଶୋଇଛ ? ପିଲାଟା ରାହା ଧରି ଘଣ୍ଟାଏ ହେଲା କାନ୍ଦୁଛି । ଆମ ଘର କମ୍ପି ଯାଉଛି । ତମର ନିଦ ଭାଙ୍ଗୁ ନାହିଁ ? ତମ ଶୁକ୍ରବାଣୀ ପାବଣ ଯେତେ ବୁଝାଇବାକୁ ଚେଷ୍ଟା କଲେ ବି କୁଆ ବୁଝୁ ନାହିଁ । ମୋ ପାଖରେ ଛାଡ଼ି ଦେଇ ସେ ଗଲା । ନିଅ ତମ ଝିଅକୁ ।

ଲାଜରା ହୋଇ ରମା ମୁହଁ ଧୋଇଲା । ଅଞ୍ଚଳରେ ପୋଛିଲା । ଜୟଶ୍ରୀଙ୍କ କୋଳରୁ ଇରାକୁ ନେଇ ତାର ମୁହଁ ପୋଛିଲା । ଗେଲକରି କହିଲା, ମାଉସୀଙ୍କ ପାଖରେ ଥିଲୁ ତ କାନ୍ଦିଲୁ କାହିଁକି ?

ପିଲାଟା ଅତି ଅଝଟିଆ ହୋଇଛି ମ ଭଉଣି, ଦଣ୍ଡକରେ ଉଲୁର ଲଗାଇ ଦେଉଛି ।

ରମା ଜୟଶ୍ରୀଙ୍କ ହାତ ଧରି ଘରକୁ ନେଲା । କହିଲା, ବସ, ମୁଁ ସରବତ୍ତ କରି ଆଣେ । ସେ ରାସ୍ତାରେ ଯିବେ ବୋଲି ସକାଳୁ ଉଠି କାମରେ ଲାଗିଥିଲି । ଦେହ ଅବଶ ଲାଗିଲା । ଖଟରେ ପଡ଼ି ଆଖି ବୁଜିଲାରୁ ନିଦ ଘୋଟି ଆସିଲା ।

ଜୟଶ୍ରୀ ଚଉକି ଉପରେ ବସିଲେ । କହିଲେ, ମୋର ଏବେ ସରବତ୍ତ ଲୋଡ଼ାନାହିଁ । ବେଳ ହେଲଣି, ମୁନ୍‌ସଫ୍‌ବାବୁ କୋର୍ଟରୁ ଫେରୁଥିବେ । ତାଙ୍କୁ ଟିକେ ଜଳଖିଆ ଦେଲେ ସେ ଭୁଲି ବାହାରିବେ । ସେ ପୁଣି ଆଦେଶ ଦେଇଛନ୍ତି ଯେ ତାଙ୍କର ଫେରିବା ଆଗରୁ ମୁଁ ନିଜେ ସଜବାଜ ହୋଇ ପ୍ରସ୍ତୁତ ରହିଥିବି । ତାଙ୍କ ସଙ୍ଗେ ବୁଲିଯିବି । ସେତକ ନ କଲେ କୁଆଡ଼େ ମୋର ଗଣ୍ଡି ଅନ୍ଧାରି ବଢ଼ିବ, ମୁଁ ଅଚଳ ହୋଇଯିବି ।

ରମା ହସ ହସ ହୋଇ କହିଲା, ସେଇଥି ପାଇଁ ଆଗରୁ ସଜବାଜ ହୋଇ ରହିଛ ।

ଜୟଶ୍ରୀଙ୍କର ନୀଳ ପାତଳ ଶାଢ଼ୀ ତଳେ ଗୋଲାପୀ ବ୍ଲାଉଜ ଓ ଗୋଲାପୀ ସାୟା ଦେଖା ଯାଉଛି । ଶ୍ୟାମଳ ସୁନ୍ଦର ମୁହଁରେ ପାଉଡ଼ରର ପରଖି । ଓଠରେ ଗୋଲାପୀ ରଙ୍ଗ । କାନରେ ଧଳା ପଥର-ବସା ସୁଦର୍ଶନ ଚକ୍ର । ଦୁଇହାତରେ ଶିରିପଟି କରି ଡାଇମଣ୍ଡ କଟା ସୁନାକାଚ । ବେକରେ ଶିରିସରିଆ ଚେନ୍‌ହାର । ଧଳା ପଥରବସା ବଡ଼ ପେଣ୍ଡାଣ୍ଟ ଛାତି ଉପରେ ଝୁଲୁଛି । ଆଜି ତାଙ୍କର ସାଧାରଣ ବେଶ । ଭଲ ଦିଶୁଛନ୍ତି ।

ଜୟଶ୍ରୀ କହିଲେ, ନୋହିଲେ ସେ ମୁହଁ ଶୁଖାଇବେ । କିଛି ସିନା କହନ୍ତି ନାହିଁ ଲୋ ଭଉଣି, ତାଙ୍କର ଅକୁହା ତିରସ୍କାରର ତୋଡ଼ ସହିବା ଅତି କଷ୍ଟ । ତମ ପରିକା ଯଦି ମୁଁ ହୋଇଥାନ୍ତି,ତାଙ୍କର ଶାସନ ସହି ନ ପାରି କେବଠୁଁ ପାଗଳ ହୋଇ ସାରନ୍ତିଣି କି ଜହର ଭୋକନ୍ତିଣି । ସେ ସିନା ତୁଣ୍ଡ ଖୋଲନ୍ତି ନାହିଁ, ପାଟିତୁଣ୍ଡ କରନ୍ତି ନାହିଁ, ଆଖିରେ, ଗୁଲିଚଳନ ଓ ଢଙ୍ଗରେ ଯେଉଁ ତିରସ୍କାର କରନ୍ତି, ସେ ଝଡ଼, ସେ ତୋଫାନ ମନଭିତରର ସବୁ ସରାଗ, ଅଭିମାନ, ଆଶା ତଳେ ନୋଇଁ ଦିଏ । ହଳଧର ବାବୁ ସୁକାନ୍ତ ବାବୁଙ୍କ ପରି ଗର୍ଜିଲା ମେଘ ନୁହନ୍ତି ।

ମନକଥା କହିବ୍ ବି ନାହିଁ ରମା ବିଚାର କଲା । ସୁକାନ୍ତ କ'ଣ କେବଳ ଗର୍ଜିଲା ମେଘ ? ସାନ ସାନ କଥାକୁ ବଡ଼କରି ସେ ସପ୍ତପୁରୁଷ ଉଝାଳନ୍ତି । ଫୋପଡ଼ା କଚଡ଼ା ଭଙ୍ଗାରୁଜା ତ ଲଗି ରହିଛି । ଉତ୍ତର ନ ଦେଲେ ଦୋଷ । ଉତ୍ତର ଦେଲେ ପଦକୁ ପଦ ବାଦାନୁବାଦ ଚାଲେ ! ଘରେ ଓ ବାହାରେ କିଏ ଅଛି କିଏ ନ ଅଛି ସେ ଜ୍ଞାନ ତାଙ୍କର ରହେ ନାହିଁ । ତୁଣ୍ଡକୁ ଯାହା ଆସେ ସେ କହନ୍ତି ।

ସେ ରମାକୁ ଭଲ ପାଆନ୍ତି ନାହିଁ । ଫସାର କରିଛନ୍ତି । ଆଉ ଗୋଟିଏ ବାହା ହୋଇ ପାରିବେ କିନା, ହାତଧରି ଧର୍ମ ପତ୍ନୀ କରି ଯାହାକୁ ଆଣିଛନ୍ତି ତାକୁ ତ ଦୂରେଇ ଦେଇ ପାରିବେ ନାହିଁ ! ସେ ପୁଣି ଦିଓଟି ପିଲାଙ୍କର ଜନନୀ ।

ସେ ଗୃହାନ୍ତି ଜୟଶ୍ରୀଙ୍କ ପରି ପତ୍ନୀ । ସବୁବେଳେ ସଫା ସୁତୁରା ହୋଇଥିବ । ସଜବାଜ ହୋଇ ରୂପକୁ ଫୁଟିଲା ଫୁଲପରି ରଖିଥିବ । ହଁ, ଏପରି କ'ଣ ହୋଇ ପାରିବ ନାହିଁ ? ତେବେ, ଘରକଥା ବୁଝିବ କିଏ, ପିଲାଙ୍କର ଯତ୍ନ ନେବ କିଏ ? ସବୁ କଲେ ବି କାହିଁରେ କେଉଁଠି ଟିକେ ତ୍ରୁଟି ହେଲେ କଥା ସରିଲା । ଭଲ କରିବାକୁ ସେ ପ୍ରାଣ ପଣ ଚେଷ୍ଟା କରେ । ତଥାପି ତ୍ରୁଟି ରହିଯାଏ । ଭଗବାନ୍ ତାଙ୍କୁ ସେହି ପ୍ରକୃତି ଦେଇ ଜନ୍ମ ଦେଇଛନ୍ତି । ନିପଟ ମୋଫସଲରେ ବଢ଼ି, ଏକଠରେ ଚଳ ଜୟଶ୍ରୀଙ୍କ ପରି ରଙ୍ଗମଖା ଆଧୁନିକା ସେ ହୋଇପାରେ ନାହିଁ ।

ଆଖିରେ ଲୁହ ଛଳ ଛଳ ।

ଇଶ୍ୱରଙ୍କୁ ଡାକି ଛାଡ଼ି ସେ କହିଲା, ତାଙ୍କର ହାତ ଧରିଲା ଦିନୁଁ ମୁଁ ଜାଣିଥିଲି, ମୁଁ ତାଙ୍କର ଉପଯୁକ୍ତ ନୁହେ । ଚେଷ୍ଟା କଲେ ବି ହୋଇ ପାରୁନାହିଁ । ମୁଁ ଯାହା ସେଇଆ ହୋଇ ରହିବ । ସେ ବି ବଦଳିବେ ନାହିଁ ।

ଛି, କାନ୍ଦୁଛ ? କିପରି ସେ ନ ବଦଳିବେ ଦେଖିବା ଭଲ । ତାଙ୍କୁ ସିନା ଆଡ଼ିହୁଏ ନାହିଁ, ଆଜି ଯାକେ କଥା କହୁନାହିଁ, ଏଥର ସେ ଗସ୍ତରୁ ଫେରିଲେ, ମୁଁ ତାଙ୍କୁ କଥା କହିବ । ତାଙ୍କୁ ଥରେ ପଚାରିବ—

ରମାର ମୁହଁ ଶୁଖିଗଲା ।

କଅଣ ମୁହଁରୁ ବାହାରି ଗଲା ? ଜୟଶ୍ରୀ କଅଣ ପଚାରିବେ ? କହିଲା, ତେମେ ତାଙ୍କୁ କିଛି ପଚାରିବ ନାହିଁ । ସେ ଅଣ୍ଡୁଆ ଲୋକ । ଭାବିବେ, ତମ ଆଗରେ ମୁଁ ଗୁହାରି କରିଛି । ଏକେତ ଏତେ ଚେଷ୍ଟା କରି ଏତେ ଉଦ୍‌ବଗ୍ନତା ସତ୍ତ୍ୱେ ତାଙ୍କୁ ମୁଁ ସୁଖୀ କରି ପାରିନାହିଁ । ତମରି କେଉଁ କଥାରେ ସେ ବଦଳିବେ ? ଓଲଟି ତାଙ୍କ ମନରେ ଅଧିକ ଦୁଃଖ ହେବ । ସେ ମୋତେ କିଛି କହିବେ ନାହିଁ, ମୁହଁ ଶୁଖାଇବେ । ମୋ ମୁହଁକୁ ଲାଜରେ ଚାହିଁ ପାରିବେ ନାହିଁ । ଭଉଣୀ, ତାଙ୍କର ଶୁଖିଲା ଅନୁତପ୍ତ ମୁହଁ, କରିଛଡ଼ା ଭାବ ଓ ଲାଜରି ଆଖି ଦେଖିଲେ ମୋ ପିଣ୍ଡରୁ ପ୍ରାଣ ଉଡ଼ିଯିବ । ମୁଁ ତାଙ୍କର ଗାଳି ସହିବ ପଛେ ଶୁଖିଲା ମୁହଁ ସହି ପାରିବି ନାହିଁ । ତାଙ୍କର ମନଟି ଅତି କୋମଳ ମ, ଅତି ପରିଷ୍କାର । କାଚ କେନ୍ଦ୍ର ପରି ନିର୍ମଳ । ସେ ଭୁଣ୍ଡରେ ବିରକ୍ତ ହୁଅନ୍ତି—

ରମା ଇରାକୁ ତଳୁ ଠେକ ଖଟରେ ଜାକିଲା । ମୁହଁରେ ଚୋକ ଦେଇ କହିଲା, ଏଇଟା ତାଙ୍କର ଅତି ଗେହ୍ଲା ଝିଅ । ତେମେ ତାକୁ ସଜବାଜ କରିଛ । ମୁଣ୍ଡ କୁଣ୍ଡାଇ ଦେଇଛ, ଆଖିରେ କଜଳ ପିନ୍ଧାଇଛ । ସେ ଥିଲେ କେଡ଼େ ଖୁସି ହୁଅନ୍ତେ । ଇରାକୁ କାନ୍ଧରେ ବସାଇ ଘୋଡ଼ା ପରି ତେଇଁ ତେଇଁକା ନାଚନ୍ତେ । ଇରା ତା ବାପଓଳ ଆଣିଛି । ପିଲାଙ୍କ ସଙ୍ଗେ ପିଲା ହୋଇ ସେ ଖେଳନ୍ତି । ତେମେ ଦେଖିଲେ କହିବ ନିର୍ଲ୍ଲଜ ।

ତେମେ କୁହ ନାହିଁ ?

ଶୋଧା ଖାଇବାକୁ କହିବ ? ସେ ତାଙ୍କର ଯାହା କଲେ ମୋର କି ଥାଏ ?

ବାଘ ସାପ ପରି ତେମେ ତାଙ୍କୁ ଡର କାହିଁକି ? ଟିକିଏ ଠାଣ ହୋଇ ପାରିଲେ ସେ ବଳେ ଦୁଧିର ପିଲାଟି ପରି ବୋଲି ମାନିବେ । ପୁରୁଷଙ୍କ ପ୍ରକୃତି ସେଇଆ ! ନଇଁ ପଡ଼ିଲେ ପିଠିରେ ବିଧାଟିଏ ଥୋଇ ଦେବେ ।

ମୁନ୍‌ସଫ୍ ବାବୁଙ୍କ ସେକେଣ୍ଡ-ହ୍ୟାଣ୍ଡ୍ ଭିକ୍‌ସାଲ୍ ଗାଡ଼ିଟି ଆସି ଘରଆଗରେ ରହିଲା । ଶଯ୍ୟାରେ ଢଣିଥିଲେ । ବାରଦିନେ ତେର-ରୋଗ । ସାତଦିନ ଗୃହିଲେ

ଦିଶଦିନ ଗାରେଜ୍‌ରେ ଶୋଇ ପଡ଼େ । ଏଇଥର ଭଲ ଚାଲିଛି । ପନ୍ଦର ଦିନ ହେଲା ହଇରାଣ କରି ନାହିଁ ।

ଜୟଶ୍ରୀ ଉଠିଲେ । କହିଲେ, ଯାଉଛି ଲୋ ଭଉଣି, ସେ ଆସିଲେଣି । କଚେରୀ ଫେରନ୍ତି, ଭୋକରେ ପେଟ ଗର୍ଜୁଥିବ ।

ଜୟଶ୍ରୀ ଘର ମହିକାଇ ଉଠି ଚାଲି ଗଲେ ।

ରମା ତାଙ୍କର ଚଳନ୍ତି ପ୍ରତିମାକୁ ପଛରୁ ଚାହିଁଲା । ସେ ଚାଲିଗଲା ପରେ ନିଜେ ଥକ୍‌କା ହୋଇ ଶୂନ୍ୟ ଦୃଷ୍ଟିରେ ଅଗଣାକୁ ଅନାଇଁ ରହିଲା । ମନରେ ପ୍ରଶ୍ନ ଉଠିଲା, ଜୟଶ୍ରୀ ଆସିଥିଲେ କାହିଁକି ? କଅଣ ଦେଇଗଲେ ? ନେଇଗଲେ ତ ଗୁମର କଥା ।

ଦୁର୍ବଳ ମୁହୂର୍ତ୍ତରେ ଅସାବଧାନ ହୋଇ ସେ କହି ପକାଇଲା ଦାମ୍ପତ୍ୟ ଜୀବନର ଗୋପନ କଥା । ପର ଆଗରେ ନିଜକୁ ସେ ଅତି ଦୁଃଖିନୀ, ନିର୍ଯ୍ୟାତିତା ନିଃସହାୟା କରି ଠିଆ କରିଛି । ନିଜର ସ୍ୱାମୀ ଦେବତାଙ୍କୁ ନିର୍ଦ୍ଦୟ, ମାୟା-ମମତା ହୀନ ମଣିଷ ବୋଲି ପରିଚୟ ଦେଇଛି ।

ସେ ନିର୍ବୋଧ । ବିଶ୍ୱାସଘାତିନୀ । ତୁଣ୍ଡରୁ ଖସି ଯାଇଥିବା କଥା ଆଉ ଫେରି ଆସିବ ନାହିଁ । ଜୟଶ୍ରୀ ହୁଏତ ଆଉ କେତେ କଥା ଲଗାଇ ମୁନ୍‌ସଫ୍ ବାବୁଙ୍କ ଆଗରେ ବର୍ଣ୍ଣନା କରିବେ । କେତେ ଲୋକଙ୍କୁ କହିବେ । ମୁହଁରୁ ମୁହଁ ଡେଇଁ ତିଳ ହେବ ତାଳ । ଦୁନିଆଁରେ ନିନ୍ଦା ରଟିବ, ଇଞ୍ଜିନୀୟର ବାବୁ ଅବିବେକୀ, ନିଜର ଧର୍ମ୍ମ ପତ୍ନୀକୁ ଭଲ ପାଆନ୍ତି ନାହିଁ, ବିଶ୍ୱାସ କରନ୍ତି ନାହିଁ, ଅତ୍ୟାଚାର କରନ୍ତି ।

କି ବୁଦ୍ଧି କଲି ମୁଁ ? ମୁହଁରୁ ମୁହଁ ଡେଇଁ ଲୋକାପବାଦ ଦିନେ ତାଙ୍କ କାନରେ ପଡ଼ିବ । ଆଗରେ ଠିଆ ହୋଇ, ମୁହଁ ଶୁଖାଇ, ଆଖି ଛଳ ଛଳ କରି ସେ ପଚାରିବେ, କହ ରମା, ତମକୁ ମୁଁ ଭଲ ପାଏ ନାହିଁ ? ସତ କହ, ତମ ମନରେ କଣ ଏଇ ଧାରଣା ଅଛି ?

କି ଉତ୍ତର ଦେବି ?

ରମାର ଆଖିରୁ ଲୁହ ଧାର ଗଡ଼ି ଆସିଲା ।

ପିଲା ଦିଓଟି ଶୋଇ ପଡ଼ିଲେଣି । ରାତି ଅଠଟା । ଦାଣ୍ଡଘରେ ରଙ୍ଗିଆ ଆଲୁଅ ଜାଳି ଗୁଣୁ ଗୁଣୁ ହୋଇ ବୈଷ୍ଣବ ପାଣିଙ୍କର କେଉଁ ସୁଆଙ୍ଗ ପଢ଼ୁଛି । ରଙ୍ଗିଆର ସୁଆଙ୍ଗ ପଢ଼ାରେ ସଉକ । ଦୋଳ ଦଶହରାରେ କିଏ ତାକୁ ଯାତ୍ରା ଖର୍ଚ୍ଚ ଦେଲେ ଆଗ ସେ ପାଣିଙ୍କ ସୁଆଙ୍ଗରୁ ଖଣ୍ଡେ କିଣେ, ତାପରେ ଆଉ ଯାତ୍ରା କରେ । ବାରମ୍ବାର ପଢ଼ି ମୁଖସ୍ଥ କରେ । ବାବୁ ଗସ୍ତରେ ଗଲେ ଅଫିସର ଆଉ ଜଣେ ପିଅନ୍ ଆସି ଦାଣ୍ଡ ଘରେ ଶୁଏ । ରଙ୍ଗିଆ ତାକୁ ସୁଆଙ୍ଗ ପଢ଼ାଇ ଶୁଣାଏଁ ।

ଅଳ୍ପ ଡେରିରେ ସମସ୍ତେ ଖାଇଥିଲେ । କାହାରିକୁ ତ ଭୋକ କରୁନାହିଁ, ରୋଷାଇ କରିବା ଆବଶ୍ୟକ ନାହିଁ । ବାବୁ ଗସ୍ତରେ ଯାଇଛନ୍ତି । ରାତିରେ ଚୁଲି ନ ଜାଳିଲେ ଅଶୁଭ । ନ ଖାଇ ଶୋଇଲେ ଅମଙ୍ଗଳ ! ଦିନ ରନ୍ଧା ବଳିଲା ଭାତ ପଖାଳ ହୋଇଥିଲା । ପିଆଜ ଲଗାଇ ରଙ୍ଗିଆ ସେତକ ଖାଇଲା । ଚୁଲି ଜଳାଇ କ୍ଷୀର ଗରମ କରା ହେଲା । ପିଲା ଦିହେଁ ଦି ଦି ଖଣ୍ଡି ବିସ୍କୁଟ୍ ଓ ଗିଲସେ କରି ଗରମ ଦୁଧ ପିଇ ଶୋଇଲେ । ପ୍ରବାସୀ ଘରେ ରମା ଉପାସ ଶୋଇବ ନାହିଁ ।

ପଲଙ୍କ ଉପରୁ ଉଠି ସେ ପଦାକୁ ଆସିଲା । ଆକାଶକୁ ଚାହିଁଲା । କଳାଧୂମର ମେଘ ଘୋଡ଼ାଇଛି । ତରାଟିଏ ବି ଦିଶୁ ନାହିଁ । ଝିରି ଝିରିଆ ଶୀତଳ ପବନ ବହୁଛି । ଦେହ ଥରି ଉଠୁଛି । ଅଦିନିଆ ମେଘ କେଉଁଠି ବର୍ଷିଲାଣି ପରା । କେତେବେଳେ ସେ ଗଲେ, ପିଅନ୍ ଆସି ଖବର ଦେଲା ନାହିଁ । ଠିକଣା ସ୍ଥାନରେ ଅବଶ୍ୟ ସେ ଶୁଭରେ ପହଞ୍ଚି ସାରିବେଣି । କେଜାଣି, କାଲେ ବାଟରେ ଥିବେ । ଅଗନାଗ୍ନି ଅରଣ୍ୟ ମଝିରେ, ପାହାଡ଼ମାଳ ସନ୍ଧିରେ ଗାଡ଼ିର କଳ ଯଦି ବିଗିଡ଼ି ଥିବ ? କେତେ ଥରତ ବିଗିଡ଼େ ।

ଛାତି ଥରି ଉଠିଲା !

ବାଣ୍ଡଘର କବାଟରେ ହାତମାରି ରମା ଡାକିଲା, ରଙ୍ଗିଆ । କବାଟ ଅଉଜା ହୋଇଥିଲା । ଖୋଲିଗଲା । ରଙ୍ଗିଆ ଧଡ଼ପଡ଼ ହୋଇ ଉଠି ଆଗକୁ ଆସିଲା । ପଚାରିଲା, କଅଣ ମା ?

ଅଫିସରୁ କେହି ଶୋଇବାକୁ ଆସିବ ନାହିଁ କି ?

ହରି ପିଅନ ଆସିବେ ବୋଲି କହିଛନ୍ତି । ରାତି ଅଧିକ ହୋଇ ନାହିଁ । ସେ ଖାଇ ପିଇ ଶୋଇବାକୁ ଆସିବେ । ଟିକିଏ ଡେରି ହେବ ।

ସାବତଙ୍କୁ ଆସିବାକୁ କହିଛୁ ?

ତା ନାତୁଣୀକୁ ଜର । ନ ଆସୁ ସେ । ହରି ପିଅନ ଆସିବେ । ନୋହିଲେ ମୁଁ ରାତିସାକ ଚେଇଁବି । ବଡ଼ ଠେଙ୍ଗାଟା ପାଖରେ ରଖିଛି ମା । ରାତିସାରି ଏ ଆଲୁଅ ଜଳିବ । ଚୋର ସାକତ ଧରା ହୋଇ ହାଜତରେ ଅଛନ୍ତି। ଚୋରି କରିବାକୁ ଆଉ କେହି ନାହାନ୍ତି । ଅନ୍ଧାର ରାତି ହୋଇଛି ବୋଲି ଯଦି କେହି ନୂଆ ଚୋର ଆସେ ତ, ମୋ ଠେଙ୍ଗାର ଗୁଣ ସେ ବଳେ ବୁଝିବ । ତେମେ ଡରନା ମା, ଭିତରୁ କବାଟ କିଳି ଶୋଇପଡ଼ ଯା ।

ରମା ହସିଲା । କହିଲା, ତୋର ସାହସ ଅଛି । ସଞ୍ଜ ପହରଟା, ନିଦ ହେଉ ନାହିଁ । ହରିଙ୍କୁ ପଚାରିଲୁ କି, ବାବୁ କେତେବେଳେ ଗଲେ ? ଦୂରବାଟ, ପହଞ୍ଚି ସାରିବେଣି କି ନାହିଁ । କେଡ଼େ ଅନ୍ଧାର ହୋଇଛି ରାତିଟା । ପାହାଡ଼ିଆ ରାସ୍ତାରେ ବର୍ଷା ହୋଇଥିବ ।

ହଁ ମା, ହେଲେ, ଜିପ୍ ଆଲୁଅ ଅଧ ମାଇଲ୍ ବାଟ ହାଲେଲ କରିଯାଏ । ପରଦା ପକାଇ ଦେଲେ ଦେହରେ ପାଣି ପଡ଼ିବ ନାହିଁ କେତେଥର ତେମେ ତ ଯାଇଛ, ଦେଖିଥିବ । ରାତିରେ ଜଙ୍ଗଲ ରାସ୍ତାରେ ଯିବାକୁ ମଜା ଲାଗେ । କେତେ ପ୍ରକାର ଜନ୍ତୁ ହାବୁଡ଼େ ପଡ଼ନ୍ତି । ରାତିରେ ଯିବାକୁ ବାବୁ ଭଲ ପାଆନ୍ତି ।

ଚୋର ଡକେଇତ ଆସିଲେ ରଙ୍ଗିଆ ଓ ହରି ପିଅନ ତାଙ୍କ ସଙ୍ଗେ ଲଢ଼ନ୍ତୁ କି କଅଣ କରନ୍ତୁ, ସେ ଘର ଭିତରୁ କବାଟ କିଳି ଶୋଇ ପଡ଼ିବ । ବାସନକୁସନ୍

କ ଲୁଗା ପଞ୍ଚା ପଦାରେ ନାହିଁ । ଶିଳ ଚକ, ହାଣ୍ଡି ମାଠିଆ ମୁଣ୍ଡରେ ବୋହି ଚୋରମାନେ ନେବେଇ ନେଉନ୍ତୁ ।

ରମା କ୍ଷୀର ଗିଲସେ ପିଇ ପଲଙ୍କରେ ଶୋଇଲା । ସତେ, ଜିପ୍ ଗାଡ଼ିର ଆଲୁଅ ଅନେକ ଦୂରକୁ ପଡ଼େ । ହାଲେଲ ହଣେ । ରାସ୍ତାରେ ଯାହାଥିଲେ ଦେଖା ଯାଏ । ଆପଦ ବିପଦ ଆସିବ ନାହିଁ । ବାଘ, ଭାଲୁ କ ବାରହା ଆଗରେ ହଣିଲେ ହର୍ଣ୍ଣ ଶୁଣି ଅଡ଼େଇ ଯିବେ । ନିଜ ଜୀବନକୁ ତାଙ୍କର ଡର । ହାତୀ ପଲ ଯଦି ହାବୁଡ଼ ଯିବେ ମହା ବିପଦ । ତେବେ, ଏ ଜଙ୍ଗଲର ଅରଣ୍ୟରେ ହାତୀ ନାହାନ୍ତି ବୋଲି ସେ କହୁଥିଲେ ।

ଶଶକ ପଲ ପଲ । ଆଲୁଅ ଦେଖିଲେ ପଛକୁ ନଚାହିଁ, ଆଗକୁ ଚାହିଁ ଗାଡ଼ି ଆଗେ ଆଗେ ଦଉଡ଼ନ୍ତି । ନିର୍ବୋଧ ନିରୀହ, ନିରାମିଷୀ ଜନ୍ତୁ । ତଥାପି, ଖସି ପଳାନ୍ତି । ଜିପ୍ ମଡ଼ାଇ ଶଶକ ଶିକାର କରିବାକୁ ଗାଡ଼ିକୁ ଏପାଖ ସେପାଖ କରି କେଉଁ ଅଫିସରଙ୍କ ଜିପ୍ ପଥରରେ ଧକ୍କା ଖାଇଲା । ଚୂନା ହେଲା । ଗୋଡ଼ହାତ ଭାଙ୍ଗି ମୁଣ୍ଡ ଫାଟି ବାବୁ ଓ ଡ୍ରାଇଭର ଛମାସ ଡାକ୍ତର ଖାନାରେ ପଡ଼ିଲେ । ସେତିକରେ ସରିଲା ନାହିଁ । କେତେ ଘଣ୍ଟା ଚକଟା, ତଦନ୍ତ ଚାଲିଛି ।

ଶଶକ ମଲା ନାହିଁ । ପଥର ଖୋଲରୁ ଜଳ ଜଳ କରି ଅନାଇ ସେମାନଙ୍କର ଦୁର୍ଦ୍ଦଶା ଦେଖି ଦୁଃଖ କରିଥିବ ।

ସୁକାନ୍ତକୁ ରମା ବାରମ୍ବାର ଅନୁରୋଧ କରିଛି, କାହା ଉପରେ ଜିପ୍ ଚଢ଼ାଇ ମାରିବାକୁ ମନ କରିବ ନାହିଁ । ସେଥିରେ ବୀରତ୍ୱ ନାହିଁ । ଭୀରୁତା ଅଛି । ସେପରି କରିବା ଚୋର ଡକାୟତଙ୍କର କାମ । ସେ କଥା ମାନନ୍ତି । ସତେ, ସେ କେବେ ଅବାଧ ହୁଅନ୍ତି ନାହିଁ । ସେ କଥା ମାନିବେ । ଠିକଣା ସ୍ଥାନରେ ସବୁ ଶୁଭରେ ପହଞ୍ଚି ସାରିବେଣି ।

ରମା ଆଲୁଅ କମାଇ ପଲଙ୍କ ଉପରେ ମଶାରି ଭିତରେ ପଶିଲା । କୁନୁ ଓ ଇରା କେତେବେଳୁ ଶୋଇ ପଡ଼ିଲେଣି । ଆଉଁସି ଦେଲା । ଗେଲ କରିବାକୁ ମନ କଲ ବଲ ହେଲା । ଶୋଇଲା ପିଲାଙ୍କୁ ଗେଲ କରିବାକୁ ବଡ଼ ବଡ଼ିଆ ମନା କରନ୍ତି

କୋଡ଼ରେ ପୁରାଇ ଶୋଇବ । ଇରା ଜନ୍ମ ହେଲା ହନୁ ଲୁନୁକୁ ସେ କୋଡ଼ରେ ପୁରାଇ ଶୋଇ ପାରୁନାହିଁ । ବାପା କୋଳରେ ସେ ଶୋଉଛି । ତାଙ୍କୁ ସେ ବେଶୀ ଆଦରୁଛି । ସେ ଗସ୍ତରେ ଗଲେ ନିଦ ବାଉଳାରେ ଲୁନୁ ହାତ ଅଣ୍ଡାଳ ତାଙ୍କୁ ଖୋଜେ । ଆଜି ବି ଖୋଜିବ ।

ଇରା ପାଟି ପାକୁ ପାକୁ କରୁଛି । ଶୋଇ ଶୋଇ ସେ କ୍ଷୀର ଶୋଷେ । ମନେ ମନେ ସେଇଆ କରୁଛି । କ୍ଷୀରର ସ୍ୱାଦ ନ ପାଇଲେ ମୁହଁ ଫଟାଇବ । କାନ୍ଦି ଉଠିବ । ଲୁନୁ ବି ଉଠିବ । ଦି ପିଲା ନାଟ ଲଗାଇବେ । ବାପାଙ୍କୁ ଖୋଜିବେ । ଗସ୍ତରେ ଯାଇଛନ୍ତି କହିଲେ, ଲୁନୁ ଜିଦ୍ଧା ଧରିବ ।

ରମା କଡ଼େଇ ଶୋଇଲା । ଇରାକୁ କୋଳକୁ ନେଲା । ଶୁଭରେ ଜାକିଲା । ହାତ ବୁଲାଇ ଲୁନୁର ପିଠି ଖୁପଡ଼ିଲା । ଆଖି ବୁଜିଲା । ତାଆର ଶୀତଳ କଅଁଳ ମାଂସଳ ବାହୁଟି ଯେଉଁ ବଳିଷ୍ଠ ଦେହର ଉଷୁମ ଛାଣି ସେପାଖକୁ ଓହଳ ଲୁନୁର ପିଠି ଆଉଁସେ, ସେ ଦେହଟି ପାଖରେ ନାହିଁ । କେଉଁ ନିର୍ଜନ ବଙ୍ଗଳାର ମଶା ପଲ ମଝିରେ ଛଟପଟ ହେଉଥିବ । ମଶାରି ନେବାକୁ ସେ ଭୁଲି ଯାଇଛନ୍ତି ।

ଅବଶ ଦେହ ବିଶ୍ରାମ ନେଉଛି । କ୍ଲାନ୍ତ ଆଖିପତା ମାଡ଼ି ମାଡ଼ି ପଡ଼ୁଛି । ଛଟପଟ ଅଧୀର ଅସ୍ଥିର ମନ ଝୁଲିଁ ଳ ପଡ଼ୁଛି । ଖେଦଭେଦୀ ନିଦ ଘୋଟି ଆସୁଛି କଳା ଘୁମର ଦିଗନ୍ତ ବ୍ୟାପୀ ମେଘମାଳ ପରି । ଘଟିଲା ଘଟଣା ଓ ନ ଘଟିଲା କାମନା ବାସନା କେତେ ରୂପଧରି ତୋଫାନିଆ ସପନ ସାଥିରେ ଆସି ମନପରଦା ଉପରେ ଛାୟାଚିତ୍ର ଦେଖାଉଛି । ଅସମ୍ଭବ ସମ୍ଭବ ଯାଉଛି, ପୂର୍ଣ୍ଣତା ପାଖେଇ ଆସୁଛି । ବାସ୍ତବତା ଚିଡ଼ ଖାଉଛି ଚଡ଼ଚଡ଼ିର ଶବଦ ପରି । ମେଘମାଳିଆ ନିଦ ବୁଲୁକି ଉଠୁଛି । ଫାଟି ଯାଉଛି । ଦୂରେଇ ଯାଉଛି ।

ନିଦ ଭାଙ୍ଗୁଛି ?

ରମା ଆଖି ଖୋଲିଲା । ମଶାରୀ ଭିତରେ କ୍ଷୀଣ ଆଲୁଅରେ ପିଲା ଦି'ଓଟିଙ୍କୁ ପାଖରେ ଦେଖୁଛି । ତାର ସ୍ୱାମୀ ଦେବତା ପାଖରେ ନାହାନ୍ତି । ଦୂର ବଙ୍ଗଳାର ଅନ୍ଧାରିଆ କୋଠରୀ ଭିତରେ ମଶା ପଲ ମଝିରେ ସେ ଛଟପଟ ହେଉଥିବେ । କେଡ଼େ ଭୟଙ୍କର ସ୍ୱପନଟାଏ,— ମଥାନ ଉପରୁ ଚଢ଼ ସାପ ଝଡ଼ି ବିଛଣାରେ ପଡ଼ିଛି । ଭାଗ୍ୟକୁ ସେ ଶୋଇ ପଡ଼ିଛନ୍ତି । ଗୋଡ଼ ହାତ ସ୍ଥିର ଅଛି । ସାପ ଧୀରେ ଧୀରେ ସେଜ ତଳେ ପଶୁଛି । ଏବେ ବି ଲଙ୍ଗୁଡ଼ ପଦାରେ ହଲୁଛି । କାଳସର୍ପ ! ଛୁଇଁଲେ ସର୍ବନାଶ । ରମା ଅଛି ସେଇଠି । ହାତରେ ଲଙ୍ଗୁଡ଼ ଧରି ଓଟାରି ତଳେ ପକାଉଛି । ଟର୍ଚ୍ଚ ଆଲୁଅ ଜଳାଇଛି ତ । ପାଟି କରୁଛି, ଉଠମ, ଉଠମ୍, ସାପ —!

ଦେହ ଥରି ଉଠୁଛି । ଛାତି କମ୍ପି ଉଠୁଛି । ବଙ୍ଗଳା ଘର ଏ ନୁହେଁ ଜୟପୁର ସହରର ବସାଘର । ପାଖରେ ପିଲା ଦି'ଓଟି । ସେ ଯାଇଛନ୍ତି ଗସ୍ତରେ । ମା ଜଗତ୍ର ଜନନୀ ତାଙ୍କ ପାଖେ ପାଖେ ଅଛନ୍ତି । ସର୍ବ-ଶୁଭରେ ସେ ଫେରି ଆସିବେ ।

ଦୁଇ ହାତ ଯୋଡ଼ି ମୁଣ୍ଡରେ ଲଗାଇଲା । ରାତି ପାହିଲେ ସେ ନନ୍ଦା ଠାକୁରାଣୀଙ୍କର ପୂଜା କରିବାକୁ ଯିବ । ଗୁହାରି କରି ଆସିବ ।

ଆଖିପତା ମୁଦି ହୋଇଗଲା । ଘୋଟି ଆସିଲା ନିଦ ।

ମନ୍ଦିର ଭିତରେ ବେଶୀ ଭିଡ଼ ନାହିଁ । ତଥାପି କେତେ ଗାଇଁକରୁ କେତେ ସ୍ତ୍ରୀ ପୁରୁଷ ଜୁଣ୍ଡ ହୋଇଛନ୍ତି । ଜାତି ଜାତିକା ବେଶଭୂଷା । ସେମାନଙ୍କ ତୁଣ୍ଡରୁ ଜାତି ଜାତିକା ଭାଷା ବାହାରେ । ସନ୍ଧ୍ୟା ଆରତି ହେଉଛି । ଶଙ୍ଖ, ଘଣ୍ଟା ଓ ବ୍ରାହ୍ମଣ ମାନଙ୍କର ମନ୍ତ୍ରପାଠ । ଅନ୍ୟମାନେ ନୀରବ । ମନର କାମନା ନୀରବ ଭାଷାରେ ଫୁଟି ଯାଉଛି । ଜଗତ ଜନନୀ ମା'ଠାକୁରାଣୀ ଶିବଙ୍କ ଘରଣୀ ପାର୍ବତୀଙ୍କର ପ୍ରତି-ମୂର୍ତ୍ତିର ଚରଣ ତଳେ ସେ କାମନା ଅଳ କରୁଛି ! ମାଗୁଣି କରୁଛି, ମାନସିକ କରୁଛି । ଆଶାର ଅନ୍ତ ନାହିଁ । ସବୁ ଆଶା, ସବୁ କାମନା ଦେବୀଙ୍କର ଚରଣତଳେ ବିବିଧ କୁସୁମର ସୁରଭି ସାଥିରେ ମିଶି ମନ୍ଦିରରେ ପରିପୂର୍ଣ୍ଣ ହୋଇଛି । ସୁରଭିତ ।

ରମା ଓଢ଼ଣା ତଳୁ କଣେଇଁ ଚାହୁଁଛି । ଦୃଷ୍ଟି ଭ୍ରମିଯାଉଛି । ଗୋଲାପୀ ଶାଢ଼ିର ଓଢ଼ଣୀଟି ଆପେ ଆପେ ମଥା ଉପରକୁ ଟେକି ହୋଇ ଯାଉଛି । ଆପେ ଆପେ ନୁହେଁ, ପଛରେ ଠିଆ ହୋଇଛନ୍ତି ସ୍ନେହମୟୀ ଭାଉଜ ବୋଉ । ଲୁଗାଟିକୁ ଧୀରେ ଧୀରେ ସେଇ ଟାଣି ଦେଉଛନ୍ତି । ରମା ବାଧା ଦେଉ ନାହିଁ ।

କାହିଁକି ସେ ଭୁବନେଶ୍ୱର ଆସିଛି ଓ ପାର୍ବତୀଙ୍କ ମନ୍ଦିର ଭିତରେ ପଶିଛି ତାକୁ ଅଜଣା ନାହିଁ । ତା' ପାଖରେ ମା ଠିଆ ହୋଇ ହାତ ଯୋଡ଼ି ପାର୍ବତୀଙ୍କୁ ତନ୍ମୟ ହୋଇ ଚାହିଁ ରହିଛନ୍ତି । ବାପା, ଭାଇ ମନ୍ଦିର ବାହାରେ କି ଭିତରେ ଅଛନ୍ତି ରମାକୁ ଜଣା ନାହିଁ ।

କିଏ ସେ ଭଦ୍ରଲୋକ, ବଡ଼ ହାକିମ ହୋଇଛନ୍ତି । ଧନୀ ଘରର ପୁଅ । ପୁରୀ ସହରରେ କୋଠାଘର । ବାପ ତାଙ୍କର ଜମିଦାର । କେଉଁଠି ସେ ଠିଆ ହୋଇ ରମାକୁ ଦେଖୁଥିବେ ? ତାଙ୍କର ମା ଭଉଣୀ କି ଭାଉଜ ଆସି ଥିବେ ତ ! ସେମାନେ ମଧ୍ୟ ରମାକୁ ଭଲ କରି ଦେଖୁଥିବେ । ଲଜରେ ତାର ମୁହଁ ରଙ୍ଗହେଲା । ସଙ୍କୋଚ ଓ ଭୟରେ ଦେହ ଥରି ଆପାଦ ମସ୍ତକ ଝାଳେଇ ଗଲା । ଦୃଷ୍ଟି ନୋଇଁଲା !

ଆରତି ଶେଷ ହେଉ ନାହିଁ କାହିଁକି ? ଏତେ ଡେରି ହୁଏ ? ରମା ଦୃଷ୍ଟି ଟେକିଲା । ଆଖି ବୁଲିଲା ।

ସେହି ଲୋକଟି ହୋଇଥିବେ ପରି ହାକିମ ହଳଧର ବାବୁ । ଦୟାକରି ସେ ମୋଫସଲୀ ଝିଅଟିକୁ ବିବାହ କରିବାକୁ ରାଜି ହୋଇଛନ୍ତି । ଜାତକ ଭଲ ମିଳିଛି । ଦେବା ନେବାର ଦରଦାମ ତୁଟିଛି । ଜମି ବାଡ଼ି ନଗଦ ସାତ ହଜାର ଟଙ୍କା ଦେବାକୁ ବାପ ଭାଇ ମାଗିଛନ୍ତି । ଗରାକ ସ୍ଥିର ହୋଇଛି । ପାଠୁଆ ପୁଅ । ନିଜେ ସେ ଥରେ ଝିଅକୁ ଦେଖୁ, ପସନ୍ଦ କରୁ । ହଳବାର ଠିକ୍ କରି ହେବ ।

ଦେଖୁଛନ୍ତି ସେ । ଆଡ଼େଇ ଆଡ଼େଇ କଣେଇଁ କଣେଇଁ ଚାହୁଁଛନ୍ତି । ଚାରି ଚକ୍ଷୁର ମିଳନ ହୋଇଛି ପାଞ୍ଚଥର । ରମାର ଦେହ ମନ ଦୋହଲି ଉଠିଛି । ଏକୋଇଶ ବର୍ଷର ଯୁବତୀ ଝିଅ ସେ । ପରଘରକୁ ବିଦା କରିବାକୁ ସମସ୍ତେ ବ୍ୟାକୁଳ । କେତେ ଯତ୍ନରେ ଭାଉଜ ତାକୁ ସଜାଇଛନ୍ତି । ନିଜ ଦେହରୁ ଉତାରି ଗହଣା ଗଣ୍ଡି ପିନ୍ଧାଇଛନ୍ତି ।

ହଳଧର ବାବୁ ଅବଶ୍ୟ ପସନ୍ଦ କରିବେ ।

ବାହାଘର ସରିଲା । ବଦାବଦ, କନ୍ୟାକର୍ତ୍ତା ସରିଲା । ହଳଧର ବାବୁଙ୍କର ହାତ ସେ ଧରିଛି । ଜୀବନ ସଙ୍ଗିନୀ ହୋଇ ସେ ଯାଉଛି । ଓଢ଼ଣୀ ତଳୁ କଣେଇଁ ଚାହିଁ ନାହିଁ । ପୁରୀ ସହରର ଦୋତାଲା କୋଠାର କେଉଁ କୋଠରୀରେ ତା'ର ବାସର ଘର ସଜା ହୋଇଛି ପରା ! ଝିକି ମେଳିଆ ବିଜୁଳି ଆଲୁଅରେ ଫୁଲ ସେଜ ଝଟକି ଉଠୁଛି । ଦୂରରୁ ଶୁଭୁଛି ସମୁଦ୍ରର ଅବିରାମ ଗର୍ଜନ । ଆଷାଢ଼ର ତୁହାକୁ ତୁହା ଅସରା ବାତାୟନର ଆରପାଖେ ଗୀତବାଦ୍ୟ ଓ ନୃତ୍ୟର ଆବାହନୀ ସୃଷ୍ଟି କରୁଛି । ଅଶନୀ ପୁଣି ପୁଣି ଘୋଷଣୀ ଜାଳୁଛି ।

ନୂଆଭଉଣୀ ଦେହଳୀ ତଳଁାର କବାଟ ଆଉଜାଇ ନେଲେ । ପାଦ ଚଳୁନାହିଁ । ମୁଣ୍ଡର ଓଢ଼ଣୀ ଆଢୁଆର ତଳକୁ ରମା ଟାଣିଲା । କାନ୍ଥ କଡ଼ରେ ରଖା ହୋଇଥିବା ଆଲମାରୀର ଛାଇକୁ ସେ ଢଳିଗଲା । ପାଖକୁ ଆସିଲେ ସେ । ହାତଧରି ଟାଣିଲେ, ଭୁଣ୍ଡରୁ ବଚନ ବାହାରିଲା । କେତେ କଅଁଳ ସ୍ୱର । ତୁନି ତୁନି କଥା, ଆସ, ସେଠିଁାରେ କାହିଁକି ଠିଆ ହେଲ ? ଆସ— ।

ହାତ ଖସାଇ ନେଲା । ନଇଁପଡ଼ି ଦୁଇ ପାଦ ତଳେ ମୁଣ୍ଡ ଲଗାଇବାକୁ ଯାଉଥିଲା, ଆଖିରେ ଲୁହ । ସେ ହସି ହସିକା ଉଠାଇ ନେଲେ, ଛାତିକୁ ଆଉ-ଜାଇଲେ । କବାଟ କିଳିଲେ । ରମା ଆଖି ବୁଜିଲା । ସେ ରମାକୁ ପଲଙ୍କ ଉପରକୁ ନେଇ ପାଖରେ ବସାଇଲେ । ପଚାରିଲେ, ଆଖି ଖୋଲି ଚାହିଁବ ନାହିଁ କି କଥା କହିବ ନାହିଁ ?

ମନ କହିଲା, ସେଦିନ ପାର୍ବତୀଙ୍କ ମନ୍ଦିରରେ ତମକୁ ଦେଖିଛି । କି କଥା କହିବ ପଚାରୁ ନ ?

ଏଁ, ପାର୍ବତୀ ମନ୍ଦିର, ଭୁବନେଶ୍ୱର, ହଳଧର ବାବୁ ?

ବାହାର ବାତାୟନର ସେପାଖେ କିଏ ହସି ଉଠୁଛି । ବିଜୁଳି ଚମକୁଛି ।

ଗରିବ ମରିଗଲା ନାହିଁ । ଜମି ବିକ୍ରି ହୋଇ ପାରିଲା ନାହିଁ । ବାପା ଟଙ୍କା ଦେଇ ପାରିଲେ ନାହିଁ । ବାହାଘର ଭାଙ୍ଗିଲା ।

ହଲଧର ବାବୁ କିଏ ? କାହାର ସେ ହସ ? ଆରେ, ଜୟୃଶ୍ରୀ ! ସେ କାହିଁକି ମୁହଁ ଦେଖାଇ ପୁଣି ଅନ୍ଧାର ଭିତରେ ଲୁଚିଗଲେ ?

ସେ ତ ହଲଧର ବାବୁଙ୍କ ବାହା ହୋଇନାହିଁ , ଏଠାକୁ ସେ ଆସିଲି କିପରି ?

ବ୍ୟସ୍ତ ତ୍ରସ୍ତ ହୋଇ ରମା ପଲଙ୍କରୁ ଉଠିଲା । ଠେଲି ଠେଲି ଦୁଇ ଗୃହ ପାଦ ଆଗକୁ ଆସିଲା । ମୁଣ୍ଡର ଓଢ଼ଣୀ ପଛକୁ ଖସିଛି । ସେ କବାଟ ଖୋଲି ପଦାକୁ ଧାଇଁ ଯିବାକୁ ଉଦ୍ୟତ ହେଉଛି । ସେଇ ହଲଧର ବାବୁ ହେବେତ, ପଲଙ୍କ ଉପରୁ ଉଠି ପାଖକୁ ଆସୁଛନ୍ତି । ଥରି ଥରି ହାତକୁ ଧରି କହିଁଲେଇ ପଚାରୁଛନ୍ତି, ପଦାକୁ ଯିବ କି ?

ରମା ନାଗ ସାପ ପରି ଗର୍ଜି ଉଠୁଛି । ଆଖିରେ ଜଳିଲା ଅନଳ । ଖରତର ନିଶ୍ୱାସ । ହାତ ଖସାଇ ନେଲା । ଫେରି ଗୃହ୍ନ ଣ୍ଡ ଚତ୍କାର କରି ଉଠିଲା । ଅବୋଧ ସେ ଭାଷା ।

ଆଖି ଆଗରେ ଦିଶିଗଲା ଆଉ କାହାର ମୂର୍ତ୍ତି । ସେ ହଲଧର ନୁହନ୍ତି । ହାତ-ଗଣ୍ଠି ପଡ଼ିଲା ବେଳେ ଯେଉଁ ଗମ୍ଭୀର ସୁନ୍ଦର ମୁହଁଟିକୁ ସେ ପାତଳ ରେଶମୀ ଗୋଲାପୀ ଓଢ଼ଣୀ ତଳୁ କଣେଇଁ ଚାହିଁଥିଲା, ସେଇ ତାର ଜୀବନ ସର୍ବସ୍ୱ ।

ସୁକାନ୍ତ ଆଗରେ ଠିଆ ହୋଇଛନ୍ତି । ମୁହଁ ଗମ୍ଭୀର ଦିଶୁଛି । ଆଖିରେ ବିସ୍ମୟ ।

ରମାର ଦୁଇ ଆଖିରେ ଲୁହ ।

ପୁରୀ ସହର ଏ ନୁହେଁ । କଟକ ସହର । କାଠଯୋଡ଼ୀ କୂଳ । ଦୁଇକୂଳ ପୂର୍ଣ୍ଣ କରି ଆବିଳ ଜଳ ଅବିରାମ ଶବଦ କରି ବହି ଯାଉଛି । ସୁକାନ୍ତ ବାବୁଙ୍କର ଭଡ଼ାଘର । ବାହାରେ ଅନ୍ଧାର । ବର୍ଷା ଲୁଚୁଛି । ତୋଫାନ ବହୁଛି । ବିଜୁଳି ରହି ରହି ଝଟକି ଉଠୁଛି । କାନ ଫଟା ଘଡ଼ଘଡ଼ିର ରଡ଼ି ।

ଡରି ମାଉଁଲକି ରମା ?

ଥରିଲି ଓଠରୁ ଖସି ପଡ଼ିଲା ଭତ୍ସୃଭିତ ପଦ, ନାଇଁତ ।

ପୁଣି ସେ ହାତ ଧରିଲେ ।

ଲୁନୁ କାନ୍ଦି ଉଠିଲା । ହାତ ଅଣ୍ଡାଳି ମା'କୁ ଠାବ କଲା । ବାପା ବାପା ବୋଲି ଚିତ୍କାର କରି ରମାକୁ କୁଣ୍ଢାଇ ଧରିଲା । ସପନ ଭାଙ୍ଗିଲା । ନିଦ ଭାଙ୍ଗିଲା । ରମା ଲୁନୁକୁ କୋଳକୁ ଆଉଜାଇ ଗେହ୍ଲେଇ କହିଲା, ସପନ ଦେଖିଲୁ କି ଲୁନୁ, ବାପା ପରା ଗସ୍ତରେ ଯାଇଛନ୍ତି । ଶୋଇପଡ଼ । ପାହି କଲେ କକ ବାଇଆ ଆସିବଣି, ଧରି ନେବ ।

ଲୁନୁ ଜିଦ୍ ଧରିଲା, ମୁଁ ବାପା ପାଖକୁ ଯିବି ।

ରାତି ପାହିଲେ ସେ ଆସିବେ । ଶୋଇପଡ଼ କହୁଛି । କେଡ଼େ ଅନ୍ଧାର ହୋଇଛି ଆଜି ରାତିଟା । ବାହାରେ କକ ବାଘୁଆ ବୋବାଳି ଶୁଭୁଛି । ଲୁଚି ଲୁଚି ସେ ବୁଲୁଛି । ପିଲଙ୍କ ପାଟି ଶୁଣିଲେ ସେ ଆସିବଣି ।

ଲୁନୁ ଶୁଣିଲା ନାହିଁ । କକ ବାଘୁକୁ ସେ ଡରେ ନାହିଁ । ଉଠି ବସିଲା । ଇରା ବି କାନ୍ଦି ଉଠିଲାଣି । ଅବେଇଜ ପିଲ ଦୁଇଟା ଏମିତି ରାତି ଅଧରେ ଉଠି ହଇରାଣ କରନ୍ତି । ସୁକାନ୍ତ ଥିଲେ ଦୁହିଁକୁ ସେ ସମ୍ଭାଳି ନିଅନ୍ତି । ରମାର ନିଦରେ ବ୍ୟାଘାତ ଘଟିଲେ ବି ସେ ହଇରାଣ ହୁଏ ନାହିଁ । ପିଲ ଦୁ'ଟାଙ୍କୁ ଖଣ୍ଡେ ଖଣ୍ଡେ ବିସ୍କୁଟ ଦେଲେ ସେମାନେ ଭୁଲି ହେବେ ପରା । ନୋହିଲେ ନାଟ ଲଗାଇବେ ।

ରମା ଉଠି ବସିଲା । ଘର ଭିତରେ ବିଜୁଳି ଆଲୁଅ ଜଳୁଛି । ବାହାରେ ଅନ୍ଧାର । ନିଶା ଗର୍ଜୁଛି । କଅଣ ସେ ସପନ ଦେଖିଥିଲା ପିଲଙ୍କ କାନ୍ଦଣା ଭିତରେ ସେତକ ଉଭେଇ ଗଲା । କେବଳ ଜୟଶ୍ରୀଙ୍କର ଡୋଫାନିଆଁ ହସଟା ପିଲଙ୍କର ରଡ଼ିକୁ ଭେଦି କାନରେ ବାଜୁଛି ।

ଟ୍ରେଜେରି ଅଡୁ ଅଧରାତିଆ ଘଣ୍ଟାର ଶବଦ ଶୁଭିଲା । ରାତି ଗୋଟାଏ ହେଲାଣି । ହଳଧର ବାବୁଙ୍କ ଘର ଅନ୍ଧାର ଦିଶୁଛି ହୁଏତ ସେ ଜୟଶ୍ରୀଙ୍କ କାନରେ ଭୁନ ଭୁନ କହୁଥିବେ, ଶୁଣିଲଣି, ସୁକାନ୍ତ ବାବୁଙ୍କ ସ୍ତ୍ରୀ ରମାର କଥା—

କହୁ ଥାଉନ୍ତୁ । ପିଲ ଦୁଇଟାଙ୍କୁ ମୁଁ ତୁନ କରେଁ ।

ଫିକା ଯାହାନ୍ତାର ଦେହ ଉଲ୍ଲସା ଶୀତଳ ଲହଡ଼ିଆ ଧୀର ହାଲୁକା ପବନ । ପିଲ ଦୁହିଁଙ୍କୁ ପୁଣି ନିଦ ହୋଇଗଲ । ରମା ମଧ୍ୟ ଅଚେତ ହେଲ ପରି ଶୋଇ ପଡ଼ିଲ । ଅନ୍ତେଙ୍କ ଲଭିଇଲ କେତେ ଘଟଣା, ଅନ୍ୟ ତୁଣ୍ଡରୁ ଶୁଣିବା କେତେ କଥା, ଯାହାଙ୍କ ମନରେ ଭେଦ ସୁଖ ଦୁଃଖ, ହସ କାନ୍ଦ, ପ୍ରଶଂସା ନିନ୍ଦା, ସହାନୁଭୂତି ବିରକ୍ତି ଓ ହିଁ ନାହିଁର ଗୋପନ କମ୍ପନର ଶିହରଣ ଭୁଲ ଅତୀତର ଜୀବନରେ କେବେ ଆଣିଥିଲ, ନିଜ ମନର ଆଶା ଦୁରାଶା, ହେଲ ନ ହେଲର ଉଲ୍ଲାସ ହତାଶ, ସବୁ ମିଶା ମିଶି ହୋଇ ସପନ ରାଇଜରେ ସମ୍ଭବ ଅସମ୍ଭବ, ଆଦିଅନ୍ତ ହୀନ କେତେ ଘଟଣା ସର୍ଜନା କଲ, ବାଲ୍ୟ ଲଭିଲ—

ସଞ୍ଜ । ପିଲ ଦଓଟିଙ୍କୁ ଗୃହକର ପାଖରେ ଛାଡ଼ି ରମା ଓ ସୁକାନ୍ତ ବୁଲି ଯାଇଛନ୍ତି । ଅଧା ଜହ୍ନର ଅସ୍ପଷ୍ଟ ଆଲୁଅ ଓ ଧୀର ପବନ ମନ ଉଲ୍ଲସାଉଛି । ରମାର ହାତ ଧରିଛି ସୁକାନ୍ତ । ରମା ଅଳପ ବିଚଳିତ ହୋଇ ଆଗକୁ ପଛକୁ ଚାହୁଁଛି, କେତେ ଲୋକ ଯାଆସ କରୁଛନ୍ତି । ହାତ ଖସାଇ ନେଉଛି ।

ସୁକାନ୍ତ ବୁଝିଲ । କହିଲ, ତୁମେ ମତେ ଭଲ ପାଅନାହିଁ ରମା, ଏକଥା ମୁଁ ଜାଣେ । ମତେ ବାହା କରାଇବା ଆଗରୁ ତୁମର ବାପ ମା ତୁମର ମତାମତ ନେଇଥିଲେ ତୁମେ କଅଣ କହି ଥାଅନ୍ତ ମୁଁ ଅନୁମାନ କରି ପାରୁଛି ।

ରାଗିଲଣି ? କେତେ ଲୋକ ଯାଆସ କରୁଛନ୍ତି ଦେଖତ । ସେମାନେ କଅଣ ଭାବବେ ? ନିନ୍ଦାକରି କହିବେ । ଆମେ ଯେ ଘର କଣରେ ରହିବା ଲୋକ । ଆମ କାନକୁ ଆସିବ ନାହିଁ । ତୁମ କାନକୁ ଯିବ । ସମସ୍ତଙ୍କ ଆଗରେ, ପୁଣି ଦେବା ଦେବୀଙ୍କୁ ସାକ୍ଷୀ ରଖି ତୁମେ ମୋ ହାତ ଧରିଛ । ବାଟ ଘାଟରେ ହାତ ଧରି ଆଉଥରେ ଚାଲି ଥିଲେ ବାହାରେଇଙ୍କୁ ଦେଖାଇଲେ କଣ ଅଧିକା ହେବ ?

ହଲଧର ବାବୁ ଜୟଶ୍ରୀ ଦେବୀଙ୍କ ହାତ ଧରି ବାଟରେ ଚାଲିଲା ବେଳେ ତ ଲୋକେ ଦେଖନ୍ତି । ପଛରେ ହୁଏତ ସେମାନେ ସମାଲୋଚନା ଠାହି ଠାପରା କରୁଥିବେ । ସେ ସବୁ କଥା ତାଙ୍କର କାନରେ କେବେ ପଡ଼େ ନାହିଁ । ପଡ଼ୁଥିଲେ ବି ସେମାନେ ହସି ଉଡ଼ାଇ ଦେଉଥିବେ ।

ତୁମେ ରାଗ ନାହିଁ, ମୋ ରାଣ । ଡାକ୍ତରଙ୍କ ସ୍ତ୍ରୀ ଗୋମତୀ ଦେବୀଙ୍କୁ ଦେଖିଛ ତ ? ସ୍ନେହ ସାଗରର ପାରାବାର ସେ । ସଂସାର ଯାକର ସବୁ ଲୋକ ତାଙ୍କର ବାପ, ଦାଦ, ମାମୁଁ, ମଉସା । ସମସ୍ତଙ୍କୁ ସେ ସେପରି ଭାବନ୍ତି । କାହାକୁ ତ ଆଡ଼ ହୁଅନ୍ତି ନାହିଁ । ସମସ୍ତଙ୍କୁ କଥା କହନ୍ତି । ଦୁନିଆଁ ଯାକର ପିଲାଙ୍କୁ ନିଜ ପିଲାପରି ମଣନ୍ତି । ହେଲେ ସଂସାରରେ ଜଣେ ଲୋକ ଅଛନ୍ତି ଯାହାଙ୍କୁ ସେ ଆଡ଼ ହୁଅନ୍ତି । ସେ ଜଣକ କିଏ ହୋଇଥିବେ କହିଲ ?

ସୁକାନ୍ତ ଭାବିବାକୁ ଲାଗିଲେ । କହିଲ, ହଲଧର ବାବୁ ?

ନାଁ, ହଲଧର ବାବୁଙ୍କ ସଙ୍ଗେ ସେ ତର୍କ କରନ୍ତି । ଥଟ୍ଟା କରି ସେ ଦିନେ ତାଙ୍କୁ କହୁଥିଲେ, ମୁଁ ଆରଘରେ ଥାଇ ଶୁଣିଛି, ମତେ ତ ଲାଜ ମାଡ଼ିଲା । ମୁଁ ଉଠି ଚାଲି ଗଲି । ସେ ବଡ଼ ଅସଭ୍ୟ ଥଟ୍ଟା କରନ୍ତି ମ ।

କହ, କହ— ।

ଛି, କହିବି ନାହିଁ ।

ମୋ ରାଣ, କହ ।

ଆରେ, ରାଣ ପକାଉଛ କାହିଁକି ? ଶୁଣିଲେ ତୁମେ ରାଗିବ ; ତୁମରି କଥା ।

ମୁଁ ରାଗିବି ନାହିଁ କହ ।

ଗୋମତୀ କହିଲେ, ଠାକୁରାଣୀ ମନ୍ଦିର ଭିତରେ ତୁମେ ଯାହାକୁ ଦେଖିଥିଲ ସେଇ ଡମରୁ ଭାଉଯା ମ ଜଜ୍, ସେ ବି ତୁମକୁ କଠ ମଠ କରି ଅନେଇ ଥିଲା । ଜୟଶ୍ରୀଙ୍କ କାନରେ ସତ ମିଛ କରି ତୁମେ ଯାହା ଗପିଥିଲ, ଜୟଶ୍ରୀ ସେତକ ସମସ୍ତଙ୍କ ଆଗରେ ପ୍ରକାଶ କରୁଛି । ଶୁଣିମ୍ ଜଜ୍, ଗୋଟିଏ ଲୁଣ୍ଡର କଥା ଜଣଙ୍କ

କାନରେ ଭେଦ ଯେତେବେଳେ ତା ପାଟିରୁ ବାହାରେ, ସେଥିରୁ ପାଞ୍ଚକଥା ହେଲେ ପନ୍ଦର କଥା ଲଗେ । ଜୟଶ୍ରୀ କେତେ ହଜାଇ କେତେ ଲଗାଇଛନ୍ତି, ତାଙ୍କୁ ଜଣା । ହେଲେ, ସାର ମର୍ମଟା ଏହି ଯେ, ତୁମ ଭାଉଯା ଇଞ୍ଜିନିୟରଙ୍କର ଦୁଇ ପିଲା ଜନ୍ମ କଲେଣି । ଇଞ୍ଜିନିୟରଙ୍କ ଭାଉଜ ଡାକ୍ତରଙ୍କର ତିନିଟିଅଙ୍କୁ ସଂସାରକୁ ଆଣିଲେଣି । କାହା ଭାଉଯା ଭାଆର ଆସି ତୁମ ଘର ଘରଣୀ ହୋଇଛନ୍ତି ତାଙ୍କୁ ପଚାର । ସେଇଠା ଅଣ୍ଟୁକୁଡ଼ା ହୋଇ ବସିଛୁ ।

ରମା ହସି ଉଠିଲା । ଆଶା କରିଥିଲା ସୁକାନ୍ତ ମଧ ବଡ଼ପାଟି କରି ହସିବେ । ରହସିଆ କଥାକୁ ରହସ୍ୟ ମଣି ରମାର ହାତ ଧରିବେ । ଏଣିକି ତେଣିକି ଚାହିଁ ରାସ୍ତା କଡ଼ର ଗୋଡ଼ବାଣ ଗଛ ଛାଇତଳେ ମୁଣ୍ଡ ନୋଇଁ ଆଣି, ରମାର ପ୍ରଫୁଲ୍ଲିତ ଗାଲ ଉପରେ ଗେଲ କରିବେ । ଗେହ୍ଲେଇ ପଚାରିବେ, କହ ମ, ଜଜ୍ କଅଣ କହିଲେ, ଜୟଶ୍ରୀ କଅଣ କହିଲେ ?

ରମା କହି ଥାଆନ୍ତା, ଜଜ୍ କହିଲେ, ସତେ ଗୋମତୀ ଦେବୀ, ଏ ଦୁନିଆଁରେ କାହାଁ ପିଲା କେଉଁଠି ଜନମି ବଢ଼ନ୍ତି, ମଣିଷ ହୋଇ କାହାଁକୁ ବାପ ବୋଲି ଡାକନ୍ତି ସେକଥା ତୁମ କଥାରୁ ଏବେ ବୁଝିଲି ।

ଜୟଶ୍ରୀ ତ ଧାଇଁ ଆସି କହି ଥାଆନ୍ତେ, ଜଜ୍ ହେଲେ କ'ଣ ବୁଦ୍ଧି ଉଣା ହୋଇ ଯାଏ କି ? ମୁଁ କହୁଛି, କାହା ପିଲା କାହାକୁ ମାଆ ବୋଲି ସଂସାରରେ ଡାକନ୍ତି ସେ ଖବର ଜଜ୍ ରଖି ନାହାନ୍ତି କି କେହି ରଖି ନାହାନ୍ତି ।

ଗୋମତୀ ପଚାରିଲେ, କହୁନ କଅଣ କହିବ ?

ଜୟଶ୍ରୀ କହିଲେ, ମହାପ୍ରସାଦ ନବୀନ ସରଳ । ହଜବାର ସ୍ଥିର ହେଲା । ବାଆରେଇ ହୋଇ କେତେଥର ସେ ଆମ ଝରକା ଆଗ ରାସ୍ତାରେ ନ ଜାଣିଲା ପରି ଠେଲ ମାରିଲେ । ଭଲ କରି ଦେଖିନୁ ବୋଲି ତାଙ୍କ ଠେଲ ମାରିବା ଆଗରୁ ପରଦାକୁ ଠେକ ଦେଇଥାଏ । କେତେ ଥର ଚାରିଆଖି ମିଳିଛି । ହାତଗଣ୍ଠି ପଡ଼ିଛି । -ସିରୁତ ଅଜାଣତ ମନ ମହଲର ଅଭି ଗୋପନ ଅନ୍ତରନସୁ ।

ଯାହାକୁ ଗୋପନ କର, ସେ କେମିତି ପ୍ରଘଟ ହଏ, କେହି କହି ପାରିବେ ନାହିଁ । ବୋଉ କହିଲ ବାପାଙ୍କୁ, ସେଇଠା ମାଇଗୃଠାଏ, ବଜାଗ୍ରଠାଏ, ତା'ଙ୍କୁ ଜୋଇଁ କରିବ ନାହିଁ । ଯେ ଶାଶୁ ହୋଇଥାନ୍ତେ ସେ କୁଆଡ଼େ କହିଲେ, ସେଇଠା ଫାଜିଲ୍‌ଠାଏ, ବେମହଣ ଠାଏ, ତା'ଙ୍କୁ ବୋହୂ କରିବ ନାହିଁ ।

ଯେ ବର ହୋଇଥାନ୍ତେ ସେ ଅତି ସୁଧର ପିଲା । ବାପ ମାଁଆଙ୍କର କୁହାର ବୋଲର । ନିଶାହ, ଚରିତ୍ରବାନ୍ । ସେ ମାଆଙ୍କର ଅବାଧ ହେଲେ ନାହିଁ । ଅମ ଘର ଝିଅରକା ଆଗରେ ଆଉ ଠେହଲ ମାରିବାକୁ ଆହିଲେ ନାହିଁ । ବାପ ମାଆ ଯେଉଁଠି ସ୍ଥିର କଲେ ସେଇଠି ସେ ବାହା ହେଲେ ।

ଦଇବ ଘଟ ସୂତ୍ର । ହଳଧର ବାବୁଙ୍କ ବିଷୟରେ କଥା ପଡ଼ିଲ । କୁଆଡ଼େ ପଚାରିଲେ, ନାମଟି କଅଣ ? ଜାଣିଲେ, ନାମଟି ଜୟଶ୍ରୀ । ମୁହଁ ଖୋଲି ମନ ଆନନ୍ଦରେ କହି ଉଠିଲେ ବାଃ, ଚମତ୍କାର ନାମଟି । ଜାତକ ଯୁଝି ହେବା ଦରକାର ନାହିଁ ।

ଆଉ ଜୟଶ୍ରୀ ?

ଆଖିରେ ଲୁହ ଧରୁ ନାହିଁ । ଛି କେଡ଼େ ଅସନା ନାମଟା, ହଳଧର ! ତାଙ୍କ ବାପ ମାଙ୍କର ରୁଚି ଅତି ମନ୍ଦ । ପିଲାଦିନେ ଗେହ୍ଲାରେ ଡାକୁଥିବେ, ଆରେ ହଳା । ଅଧିକ ସ୍ନେହ ସଙ୍ଗେ ଆଶୀର୍ବାଦ ମିଶାଇ ତହିଁରେ କୃତ୍ରିମ କ୍ରୋଧର ପରଖ ଦେଇ ବାପ ବଡ଼ ପାଟିକରି ଡାକ ଛାଡ଼ୁଥିବେ, କରେ ହଳଆ— । ଛି, ଛି, ଅସନା ନାମଟା । ଗ୍ରାମଲୋକେ ସମ୍ମାନ ଦେଖାଇବାକୁ ତିନ ଅକ୍ଷରରେ କହୁଥିବେ ଆଉ ସବୁ ଭଲ ତ ହଳଦ ବାବୁ ? ଦୂରରୁ ଅଜଣା ଲୋକଙ୍କ କାନକୁ ଶୁଭୁଥିବ, ବଳଦ ବାବୁ ପରିକା ।

କାନ୍ଦୁଛି କାହିଁକି ଜୟଶ୍ରୀ ? ଭାଗ୍ୟରେ ଥିଲେ ଏପରି ବର ମିଳେ ଲୋ । ସେ ଦେଖିବାକୁ ବଳରାମଙ୍କ ପରି ସୁନ୍ଦର, ବଳୁଆ, ସରଳ । ସେ ପୁଣି ଜଜ୍ ହେଉଛି ।

ଜୟଶ୍ରୀ ତୁନି ତୁନି କହିଲେ ଆଇ ବୁଢ଼ୀକୁ, ଅତି ଅସନା ତାଙ୍କର ନାମଟା । ଆଇମ, ଅମରେନ୍ଦ୍ର ପରିକା ନାମଟିଏ ତାଙ୍କୁ ମିଳିଲ ନାହିଁ ?

ତୋ ମୁହଁକୁ ସରମ ନାହିଁଲେ କରମନାଶୀ । ହଉଲେ, ନାଁରୁ କଅଣ ମିଳବ ଛଡେ ? ବାଟ ଘୋରକର ପିଇବୁ କି ? ଗେରସ୍ତ ଭରିଜାଙ୍କର ତ ଆମ ଗ୍ରାଇକରେ ଗୋଟିଏ ବୋଲି ନାମ । ସେ ଡାକିବ, ହଉଦ୍ୟୋ । ତୁ ଡାକିବୁ ହଉଦ୍ୟୋ— । ଫୁଲେଇ ପଣ ସେତିକି ଥାଉ । ତୋ ମନକୁ ଯେଉଁନାମଟି ପାଉଛି ତୋ ଗେରସ୍ତକୁ ମନେ ମନେ ସେଇ ନାମରେ ଡାକୁନୁ । ଅମରେନ୍ଦ୍ର ମାଇଗ୍ତ କୁଆଡ଼େ ମାଇପକୁ ସଙ୍ଗରେ ନେଇ ତା ଶ୍ଵଶୁର ଗାଁକୁ ଗଲଣି ।

ଗୋମତୀ କହିଲେ, ଅମରେନ୍ଦ୍ର ବାବୁ ଆମ ଗେରସ୍ତଙ୍କର ବଡ଼ କିରାଣୀ ।' ସତେଗୋ ଜୟଶ୍ରୀ, ରୂପଟି ତ କାର୍ତ୍ତିକ ପରି ସୁନ୍ଦର । ସ୍ୱାସ୍ଥ୍ୟ ଯେ ଭୀମ ପରିକା । ହେଲେ, ଲୋକେ କହନ୍ତି, ସେ ମାଇଗ୍ତ । ଆଗକୁ ଆହିଲେ ମୁଣ୍ଡ ବଙ୍କାକରି ଠିଆ ହୁଅନ୍ତି । ତଳକୁ ଅନାଇ ଧୀରେ ଧୀରେ କଥା କହନ୍ତି । ଆଜ୍ଞା ହଁ, ଆଜ୍ଞା ହଁ କହି ବିରକ୍ତ କରନ୍ତି । କିପରି ନମ୍ରତା ପାଇ ଆଗରୁ ଖସି ପଳାଇବେ ସେଥିକି ସବୁବେଳେ ଉଦ୍‌ବିଗ୍ନ ଥିଲ ପରି ଜଣା ପଡ଼ନ୍ତି । ହେଲେ, ଯେଉଁକାମ କହିବ, ସେକାମ ସେ କରିବାକୁ ପଛାନ୍ତି ନାହିଁ । ଅମର ବାବୁ ମାଇଗ୍ତ ହୋଇ ପାରନ୍ତି, କିନ୍ତୁ ତାଙ୍କର ତିନ ପୁଅ ହେଲେଣି । ଏଥର ଝିଅଟିଏ ହେବ ବୋଲି ସେ ଆଶା କରିଛନ୍ତି ।

ଜୟଶ୍ରୀ କହିଲେ, ଦେଖ ଗୋ ରମା, ମୋର ତିନ ପୁଅଙ୍କୁ ସେ ଶୁକୁଟୀ, ଚେପଟା ନାକୀ, ମୁଖ ଦାନ୍ତୁରୀ, କଅଣଟି ତା'ର ନାମ, ରହ, ମୋ ଜିଭ ଅଗରେ ଅଛି—

ଗୋମତୀ ମନେ ପକାଇ ଦେଲେ, ଇନ୍ଦିରା ।

ହଁ, ଇନ୍ଦିରା ।

ରମା କହିଲା, ଅଣୁନା ସେଥିରୁ ଗୋଟିଏ କି ହଉଚି । ଘର ସୁନ୍ଦର ଦିଶିବ । ଗହଳ ଚହଳ ହେବ । ତାଙ୍କ ସେବା ଯତ୍ନରେ ବେଳ କଟି ଯିବ । ନିଜର ଦେହ ମୁହଁ ସଜାଇବାରେ ସମୟ ନଷ୍ଟ ନକରି ସେଇ ପିଲାଙ୍କର ଅର୍ଦଳରେ ଆଖିର ପଲକ ପଡ଼ିଲ ପରି ଦିନରାତି କଟି ଯିବ । ତାଙ୍କୁ କୋଳରେ ଧରିଲେ ନ ଫଳିଲ ଆଶା ଫଳିଲ ପରି ଲଗିବ । ହାତ ପାତି ମାଗିଲେ ଇନ୍ଦିରା କଣ ମନା କରିବ ?

ଗୋମତୀ କହିଲେ, ଅଭାବ ଗ୍ରସ୍ତ ସଂସାର ତାଙ୍କର । ଘର କାମ କରି କରି ଶୁକୁଟୀ ଇନ୍ଦିରା କାଉଳ ବାଉଳ ହେଉଛି । ପିଲା ତିନିଟା ଅଯତ୍ନ ହେଉଛନ୍ତି । ଚିଡ଼ା ଖୋଇ ହେବାରୁ ପିଲାଗୁଡ଼ାଙ୍କୁ ଯେ କାଟି ସଜି ପକାଉଛି । ଗେରସ୍ତ ଅମରବାବୁ ବି ଇନ୍ଦିରାର କୋପରୁ ରକ୍ଷା ପାଆନ୍ତି ନାହିଁ । ଅମରବାବୁ କିଛି କହନ୍ତି ନାହିଁ । ଯାହାଙ୍କ ପହରୁ ଉଠି ଘରର ସବୁ ପାଇଟି କରନ୍ତି । ଏପରିକି ଇନ୍ଦିରାଙ୍କର କାଠି-ଲଗା ପାଇଁ ସ୍ନାନ ପାଇଁ ପାଣି କାଢ଼ି ରଖି ଦିଅନ୍ତି । ବଗିଚା କରିବା ଓ ସେପେଇ କରିବାରେ ତାଙ୍କର ବଡ଼ ସଉକ୍ । ପିଲା ତିନୋଟି ଯେ ତାଙ୍କର ପ୍ରାଣରୁ ବଳି ଅଧିକ । ଇନ୍ଦିରାତ ନାହିଁ କରିବ ନାହିଁ, ତେବେ ଅମରବାବୁ ରାଜି ହେବେ ନାହିଁ ।

ଜୟଶ୍ରୀ କହିଲେ, ତେମେ ଦିନେ ସପନରେ ଉଡ଼ିଲା କଥା ଭାବୁଛ । ଯାବତ ମା'ଅର ମନ ପଛେ ତଟିବ, ଯାବତ ବାପାର ମନ ତଟିବ ନାହିଁ । ଅମରବାବୁଙ୍କ ପିଲାଙ୍କୁ ହଲଧର ବାବୁ ଆଉ ଆଖିରେ ଚାହିଁବେ ନାହିଁ । ରମା ପେଟରୁ ଜନମିଛି ତ କୁନୁ, ସେଇଟିକ ଦେଲେ ଜକ୍ ମଣିବେ ନିଜ ପିଲାଟା ପାଖକୁ ଆସିଲା । ପୁଣି ମଣିବେ, ମନ୍ଦିର ଦେଖାପରେ ଯେଉଁ ଭୁଲ୍ ଟା ସେ କରିଥିଲେ ସେତକ ସୁଧୁରି ଗଲା । ରମାର ପିଲାକୁ ବୋକ ଦେଇ ମୋ କୋଳକୁ ଦେବେ ଓ ମୋ ମୁହଁକୁ ଅନେଇଁ ହସି ହସି କହିବେ, ନିଅ, ଏଇ ତମର ପୁଅ । ଅତି ଯତ୍ନରେ ପାଳି ମଣିଷ କର ।

ଗୋମତୀ ମୁଣ୍ଡ ହଲାଇ ଭ୍ରୂଲତା ଟେକି ହସ ହସ ହୋଇ କହିଲେ, ହେଲା ଯେ ପୁଣି ହେଲା ନାହିଁ । କୁନୁକୁ ସେ ତମ କୋଳକୁ ଦେବେ ଯେ ଦେଲା ବେଳେ, ତମ ମୁହଁକୁ ଚାହିଁଲା ବେଳେ, ସେ ସେଇ ମୁହଁଟିକ ଆଉ ପରିକା ଦେଖିବେ, ଯେଉଁ ମୁହଁଟି ସେ ଯାବତାଙ୍କ ମନ୍ଦିର ଭିତରେ ଠାକୁରାଣୀଙ୍କ ଆଖି ଆଗରେ ପ୍ରଥମେ ଦେଖିଲେ ଓ କେହି ଦେଖିପାରୁ ନାହାନ୍ତି କି ଜାଣିପାରୁ ନାହାନ୍ତି ଛଳନାରେ କଣେଇଁ କଣେଇଁ ଛପନ ଥର ଦେଖିଥିଲେ ଓ ମନ କନକନ ହୋଇ ହିଁ ହିଁ କହୁଥିଲା ବେଳେ ଧନ ଛନ ଛନ ହୋଇ ରହ ରହରେ ଲଗାମ ଟାଣି ସେ ମନକୁ ଅଟକାଇ ରଖିଥିଲା । ସେ ମୁହଁଟି ଏଇ ରମାର ।

ଗୋମତୀ ରମାର ମୁହଁକୁ ହାତରେ ବୁଲାଇ ଧରି ପୁଣି କହିଲେ, ସତଟି କି ରମା ? ଆଗୋ ଜୟଶ୍ରୀ, ଦେଖିଲ, ଏ ମୁହଁଟି ତମ ଆଖିକି ମୋ ମୁହଁ ପରିକା ଦିଶୁଛି କି ନାହିଁ କହିଲ ? ଦିଶୁନାହିଁ ପରା ? ଇଞ୍ଜିନିୟରଙ୍କ ଆଖି କି ସେମିତି ଦିଶେ ନା । ହିଁ, ଦିଶୁଥିବ ତ ।

ରମା କହିଲା, ଛି— !

ଗୋମତୀ କହିଲେ, ହଁ, ଛି ଯେ ଏ ମିଣିପ ଗୁଡ଼ାଙ୍କ ଆଖିକ ଗୋଟିଏ ମୁହଁ ତ୍ୱେଲ କାଲ ଭେଦରେ ଭଲ ଭଲକା ଦିଶେ। ଦୂର ପରବତ ସୁନ୍ଦର। ପର ପରିଣିତା ସୁନ୍ଦର। ଆଗରୁ ଅସିଲେ ବୀରବର କେତେ ଧୀର, କେତେ ସୁଧିର, କେତେ ଉଦାର। ମୁହଁକୁ ଟିକିଏ ଚାହିଁବେ ନାହିଁ ଗୋ, ମନ୍ତ୍ର ଜପିଲା ପରି ମନେ ହେଉଥିବ ପରଦାରେଷୁ ମାତୃବତ୍। ଆଗରୁ ଖସିଲେ ନରଲୋକରେ ବଢ଼ିଲେ ରହିଲେ ତ, ହସିଲେ। ପ୍ରେମ ସାଗରରେ ଭାସିଲେ। ଦୂର ପରବତ ସୁଷମା ଆଣି ପାଖ ପର-ବତେ ନେସିଲେ। ଅଭଲ ଅଳଜୁକ ଦଲ ମ।

ସମସ୍ତେ ହସି ଉଠିଲେ— ।

ସୁକାନ୍ତ ଅଗେଇ ଯାଉଛନ୍ତି। ସଞ୍ଜ ପହର କେତେବେଳୁ ଗଡ଼ି ଗଲଣି। ରାତର ଅନ୍ଧାର ଘୋଟି ଆସିଲଣି। ଆରେ, କେତେ ଦୂରକୁ ସେମାନେ ଚାଲି ଆସିଲେ।

ଜୟପୁର ସହରର ଆଲୁଅ ମାଳ ଆଉ ଆଖିକୁ ଦେଖା ଯାଉ ନାହିଁ। ତାରା ଆଲୁଅରେ ରାସ୍ତାଟି ଅସ୍ପଷ୍ଟ ଦିଶୁଛି। ଆଗରେ ପାହାଡ଼। ଡାହାଣ ପାଖେ ନାଳଟି ଭଙ୍ଗର। ପାହାଡ଼ ଉପରର ଚନ୍ଦନ ବଣ ଅନ୍ଧାରଆ ଦିଶୁଛି। ବାଲମାଳ ସେପାଖେ ଛୋଟ ପାହାଡ଼ ତଳେ ବାଢ଼େଣୀପୁଟ୍ ଗ୍ରାମ। କେଉଁ ଘରୁ କ୍ଷୀଣ ଆଲୁଅର ଧାରଟିଏ ଆସୁଛି।

ରମାର ଛାତିରେ ଛନକା ପଶିଲା। ସୁକାନ୍ତ ଅଗେଇ ଚାଲିଛି। ଘୋଲ ପାରି ହୋଇ ଘାଟି ଉପରକୁ ସେ ଉଠୁଛି। ତୁଣ୍ଡରୁ କଥା ବାହାରୁ ନାହିଁ।

ଏତେ ରାତିରେ କୁଆଡ଼େ ସେ ଯାଉଛନ୍ତି, କୁଆଡ଼କୁ ନେଉଛନ୍ତି ? କଥା କହୁ ନାହାନ୍ତି କାହିଁକି ?

ରମା ଭୟଭୀତ ସ୍ୱରରେ ପାଟି କରି ଡାକିଲା, ରହ ମ, ରହ।

'ସୁକାନ୍ତ ଆଉ ଦେଖା ଯାଉ ନାହିଁ । ରମାକୁ ଏକା ଛାଡ଼ି ଅଦୃଶ୍ୟ ହୋଇ ଗଲଣି ।

ଅସ୍ତବ୍ୟସ୍ତ ହୋଇ ରମା ପାଛ କରି ଆଗକୁ ଧାଇଁଲା । ବାଟ କଡ଼ର ପଥର ଝୁଣ୍ଟି ସାତ ତାଳ ଗହିର ନାଳର ଜଳରେ ପଡ଼ିଲା । ଆଘାତ ହୋଇ ନାହିଁ । ଅଳପ ପାଣି । ହେଲେ ବି ପ୍ରଖର ସ୍ରୋତ । ଦୁଇପାଖେ ଡାଳ ଖଣ୍ଡି । ହାତରେ କଅଣ ଧରି ଅଟକି ରହିବାକୁ ହାତ ବଢ଼ାଇଲା । କିଛି ମିଳୁ ନାହିଁ । ସେ ଭାସି ଯାଉଛି ।

ଚିତ୍କାର କରି ଡାକ ଛାଡ଼ୁଛି, ହାଇହୋ, ହାଇହୋ — — ।

ଡାଳ ଖଣ୍ଡି ଉଭେଇ ଯାଇଛି । ପଥର ଧରି ସେ ଅଟକି ରହିଛି । ଅନ୍ଧାର ଅପସରିଛି । ଫିକା ଆଲୁଅ । ନାଳ କୂଳରେ କୁନୁ ଓ ଇରା ଠିଆ ହୋଇ କାନ୍ଦୁଛନ୍ତି । କୁନୁ ଡାକ ଛାଡ଼ୁଛି, ମା, ମା — ।

ଦେହରେ କଅଁଳ ହାତର ପରଶ ଲାଗିଲା ।

ନିଦ ଭାଙ୍ଗିଲା । ସର୍ବାଙ୍ଗ ଥରି ଥରି ହୋଇ କମ୍ପୁଛି ।

ରମା ଆଖି ଖୋଲିଲା । ଖୋଲା ଝରକା ବାଟେ ପାହାନ୍ତି-ଆଲୁଅର ଆଭା ଘର ଭିତରେ ପଶୁଛି । ଶୀତଳ ବାଆରେ ଲୋମ ଟାଙ୍କୋରି ଉଠୁଛି । ପାଖରେ ବସି କୁନୁ ଡାକୁଛି । ଇରା ଗଡ଼ ଗଡ଼ ଯାଇଁ ଗୋଡ଼ତଳେ ଶୋଇଛି । ସେ ସେଠି ଓଦା କରିଛି ।

ରମା ବ୍ୟସ୍ତ ହୋଇ ଉଠି । କି ଅସମ୍ଭବ ଭୀଷଣ ସ୍ୱପ୍ନ ସେ ଦେଖିଲା ସତେ ! ସୁକାନ୍ତ ଗସ୍ତରେ ଯାଇଛନ୍ତି । ପିଲା ଦିଓଟି ତା ପାଖରେ ଅଛନ୍ତି । ଏଇ ତା'ର ଘର, ଏଇ ତା'ର ସଂସାର । ନଦୀ, ନାଳ, ପର୍ବତ ନାହିଁ । ଅନ୍ଧାର ରାତି କି ବଣ ପାହାଡ଼ ନାହିଁ । ପାହାନ୍ତି ବେଳର ନୀରବତାକୁ ଥରାଇ କୁନୁ କେବଳ କାନ୍ଦିଲା ସ୍ୱରରେ ଡାକ ଛାଡ଼ୁଛି, ମା, ମା — ।

କଅଣରେ କୁନ ?

ତୁ କାନ୍ଦିଲୁ, ପାଟି କଲୁ—

ଫେରିଲୁ କି ? ଆ ମୋ କୋଳକୁ ।

କୁନୁକୁ ସେ କୋଳକୁ ନେଲା । ଇରି ଛଟପଟ ହେଲାଣି । ତାର ମଧ୍ୟ ନିଦ ଭାଙ୍ଗିଲାଣି ।

ମଙ୍ଗଳ ବାର । ଜଗଜ୍ଜନନୀ ମନ୍ଦିରରେ ଭୋଗ କରାଇବ । ମହାଦେବ ମନ୍ଦିରକୁ ନଡ଼ିଆ ପଠାଇବ । ସପନ କଥା ସତ ହୁଏ ନାହିଁ । ଯଦି ହୁଏ, ନିଜକୁ ଦେଖିଲେ ପରକୁ ହୁଏ । ଗତ ରାତିରେ କି ସପନ ସେ ଦେଖିଲା ତାର ମନେ ନାହିଁ । ମନେ ପକାଇବାକୁ ଡର ନାହିଁ । ଉତ୍କଣ୍ଠା ମନର ବିକଳ ଭାବନା ଦେବୀଙ୍କ ଚରଣ ତଳକୁ ଥରକୁ ଥର ଛୁଟି ଯାଉଛି । ଶରଣ ପଶୁଛି । କରୁଣ ସ୍ୱରରେ କରୁଣା ଭିକ୍ଷା କରୁଛି ; ଅଳି କରୁଛି, ମୋର ପଛେ ମରଣ ହେଉ ମା ସବୁ ଶୁଭରେ ସେ ଫେରି ଆସନ୍ତୁ !

ଶୁଭ କାଉ କେତେ ଥର ଆସି ଅଗଣାରେ ନାଚି ନାଚିକା ରାବି ରାବିକା ଅଧାର ଖାଇ ଚାଲି ଗଲାଣି । ହାତରୁ କଂସା ବାସନ ଖସି ପଡ଼ୁଛି । ବାଁ ଆଖି ତେଉଁଛି । ଇରି ତା ମନକୁ ବାପା ବାପା ବୋଲି ଡାକ ଛାଡ଼ୁଛି । ମଟର ଗାଡ଼ି ଶବଦ ଶୁଣିଲେ କୁନୁ ବାଡ଼ି ଖଣ୍ଡେ ଧରି ପଦାକୁ ଧାଇଁ ଯାଉଛି । ସେ କେତେଥର କହି ହେଲାଣି, ଡ୍ରାଇଭର୍ ଭାଇକୁ ସଙ୍ଗରେ ନ ନେଇ ଏକା ବାପାଙ୍କୁ ନେଇ ଗଲା । ସେ ମାଡ଼ ମୂଳେଇଛି ।

ସରକାରୀ କାମ । ବଣ, ପାହାଡ଼ମାଳ ମଝିରେ ରହଣି । ଦୁଇଦିନ ପାଇଁ ଯାଇ ପାଞ୍ଚ ସାତ ଦିନ ରହିଯିବା ଯେପରି ସ୍ୱାଭାବିକ, ପାଞ୍ଚ ସାତ ଦିନ ପାଇଁ ଯାଇ ଦିନଟିଏ ରହି ଫେରି ଆସିବା ମଧ୍ୟ ସେହିପରି । ନୂଆ ନୂଆ ଭୟ ଲାଗୁଥିଲା । ଆସି-ବାକୁ ଡେରି ହେଲେ ମନ ଦକ ଦକ ହେଉଥିଲା । ଅଶୁଭ ଭାବନା ଛାତି ଥରାଉ ଥିଲା । ଛୁଆ ଝିଅଙ୍କୁ ଛାଡ଼ି ବିଲେଇ ପରି ସେ ହେଉଥିଲା । ବିନା କାରଣରେ ଦୁଇ ଆଖିରୁ

ଦରି ଦରି ଝରି ପଡ଼ୁଥିଲି ଲୁହ । ଅଭ୍ୟାସ ହେଲଣି । ଚନ୍ଦ୍ରା ଦଙ୍କ ମନ କୁଞ୍ଜ ନାହିଁ । ଠାକୁରେ ବଳେ ଶୁଭରେ ଫେରିଆସିବେ ।

କାଲି ସେ ବିରକ୍ତ ହୋଇ ଯାଇଛନ୍ତି । ମନ ଗୋଳେଇ ହେଉଥିବ । ରମାକୁ ଏହା ଅଜଣା ନାହିଁ । ଫେରି ଆସିବାକୁ ଉଚ୍ଛନ୍ନ ହେଉଥିବେ । ଶୀଘ୍ରକାମ ଶେଷ କରି ସେ ବାହୁଡ଼ି ଆସିବେ । କେବେ ସେ କହିବେ ନାହିଁ ଯେ ରାଗ କରି ରମା ଉପରେ ବିରକ୍ତ ହୋଇ ସେ ଚାଲି ଯାଇଥିଲେ । ଗୋଳେଇ ପୋଳେଇ ହେବାକୁ ସହଳ ସହଳ ଫେରି ଆସିଛନ୍ତି । ନ କହିଲେ ନାହିଁ । ତାଙ୍କ ଲଜାରି ମୁହଁ, ମଉନ ହସ, ଅବାଗିଆ ଢଙ୍ଗ ତାଙ୍କୁ ଚହ୍ଲା ପକାଇ ଦଏ ଯେ ଅତୀତ ବ୍ୟବହାର ପାଇଁ ସେ ଅନୁତାପ କରିଛନ୍ତି ।

ଆଖିରେ କଜଳ ନାହିଁ ମୁଣ୍ଡ ବନ୍ଧା ହୋଇ ନାହିଁ । ପିନ୍ଧିଲି ଶାଢ଼ୀ ମଇଳା ହୋଇଛି । ଅତି ସ୍ନେହରେ ଯେଉଁ ଗହଣା ଗଣ୍ଡି କାଣ୍ଟାଲଗିର ଉଡ଼ାଇନ୍ ପ୍ରକାରେ ଗଢ଼ାଇ ଥିଲେ ସେ ସବୁ ଦେହରେ ନାହିଁ । ବାକ୍ସ ଭିତରେ ସାଇତା ହୋଇ ରହିଛି । ଗୋଡ଼ରେ ଅଳତା ପିନ୍ଧା ହୋଇ ନାହିଁ ।

ଏ ସବୁ ତ୍ରୁଟି ଦେଖି ମଧ ସେ ଦେଖନ୍ତି ନାହିଁ । ଖାଲି ଆଖି ଦିଓଟିକୁ ଅନାଇଁ ରହନ୍ତି । ପାଖକୁ ଲଗି ଲଗି ଆସନ୍ତି । କାଖ ହେଲି ପିଲି ଇରିକୁ ଗେଲ କରୁଣୁ ଗୋଟାଏ ହୁଇଟା ଖସି ଆସେ ରମାର ମୁହଁକୁ । ଗଲା ବେଳେ କଅଣ ଗୋଟାଏ ଘଟିଥିଲା, ଆଇଲା ବେଳେ ସେତକ ରମା ବି ପାସୋରି ଯାଏ ।

ରମା ଆଗ ଘର ହ୍ୱାର ସଫା ସୁତୁରି କଲି । ବେଢ଼ାଏ ଅଳଅ । ଚାକରାଣୀ ହାତରେ ଭିତର ବାହାର ନିର୍ମଳ କରି ଧୁଆଇଲି । ସୁକାନ୍ତ ଏଇଆ ଚାହାନ୍ତି । ଘର ଦର୍ପଣ ପରି ଝଟକୁ ଥିବ । ଦେଖିଲେ ଖୁସି ଲାଗିବ ! ଏତକ କରିବାକୁ, ଲୁଗା ପଟା ସାଇତି ରଖିବାକୁ ଓ ବହି ଗୁଡ଼ାକ ଝଡ଼ା ଝଡ଼ି କରି ସଜାଇ ରଖିବାକୁ ଧନ ଖରଚ ହୁଏ ନାହିଁ । ମନଥିଲେ ହେଲି । କିନ୍ତୁ ରମାକୁ ତ ବେଳ ମିଳେ ନାହିଁ । ପିଲି ହୁଇଟା ଉଲ୍ଟିକରି ଲଗାଇ ଦଅନ୍ତି । ଅର୍ଦ୍ଧେ ହେଲେ କେଉଁ କାମ ହାତରେ ଗୋଡ଼ରେ ପଶେ ନାହିଁ । ସୁକାନ୍ତ ନିଜେ ତ ସାତ ପିଲିଙ୍କଠୁଁ ବଳନ୍ତି । ଘରେ ଥିଲି ବେଳେ ସେ ଏତେ ବିବାଦ କରନ୍ତି ଯେଏପାଖ ସେପାଖ ହୋଇ ବେଳଯାଏ ।

ରେଡ଼ିଓ ଧରି ଟେବୁଲ ପାଖରେ ବସିଛନ୍ତି । ଘଡ଼ ଘଡ଼ କରୁଛନ୍ତି । ଗୋଟିଏ ଭାଷା କି ଗୋଟିଏ ଷ୍ଟେସନର ଖବର କି ଗୀତ ଶୁଣି ସନ୍ତୁଷ୍ଟ ହେବାର ଧୈର୍ଯ୍ୟ ତାଙ୍କର ନାହିଁ । ବୁଝନ୍ତୁ କି ନ ବୁଝନ୍ତୁ ସବୁ ପ୍ରକାର ଭାଷା ସେ ଶୁଣିବାକୁ ଚାହାନ୍ତି । ସବୁ ଷ୍ଟେସନ ସଙ୍ଗେ ସଂଯୋଗ ସ୍ଥାପନ କରିବାକୁ ଆଗ୍ରହ କରନ୍ତି । ଶୁଣିଲା ଲୋକକୁ ବିରକ୍ତ ଲଗେ । ତାଙ୍କୁ କିପରି ବିରକ୍ତ ଲଗେ ନାହିଁ କେଜାଣି । ଡାକ ଛାଡ଼ନ୍ତି, କପେ ଚା ଦିଅ ମ ।

ସକାଳୁ ଦୁଇଥର ଚା ପିଇ ସାରିଲେଣି । ବେଳ ନଅଟା ନ ହେଉଣୁ ପୁଣି ଚା ବିବାଦ କଲେଣି । ନ ଦେଲେ ବିରକ୍ତ ହେବେ ନାହିଁ, ଅଭିମାନ କରିବେ । ଅଖିଆ ଅପିଆ ଚାକୁରୀ କାମ ବାହାନାରେ ଅଫିସ ଚାଲି ଯିବେ । ଫେରିବେ ତେଉରରେ । ଚା କପେ ଦେଲେ ଭୋକ ମରିଯିବ । ଭାତ ବାଢ଼ିଲେ ପାଟିକି କଚ୍ଛ ରୁଚିବ ନାହିଁ । ଡ଼ାଲି ଲଗିବ ଅଲଣା ତରକାରି ଲୁଣିଆଁ, ଭାତ ଠାଣୁଆଁ, ବାସନ ବାଲିଆ, ଘରଣୀ ମଇଳିଆ, ପିଲିଏ କଳିଆ ।

ଏତେ ବର୍ଷ ସଂସାର କରି ମଧ୍ୟ ସେ ତାଙ୍କ ମନ କଥା ବୁଝିଲ ନାହିଁ ।

ରମା, ମୁଣ୍ଡ କୁଣ୍ଡାଇଲ ନାହିଁ, ବାଇଆଣୀ ପରି ବାଳ ଅଲରା କରି ବୁଲୁଛ ? ଦେଖିଛ ତ ପିଃ ପଦ୍ମଭୂଷଣମଙ୍କ ପତ୍ନୀଙ୍କୁ ? ତମ ଘର ଆଗରେ ତ ଅଛନ୍ତି ଶ୍ରୀମତୀ ଜୟଶ୍ରୀ । ତାଙ୍କୁ ଦେଖ ଓ ଶିଖ । ବିଛଣାରୁ ଉଠିବା ସଙ୍ଗେ ସଙ୍ଗେ ଆଗ ମୁଣ୍ଡଟାକୁ ସଜାଡ଼ି ନଅନ୍ତି ସେମାନେ । ଭଲ ଦିଶେ । ଆରସି, ପାଉଡ଼ର, କଜଳ, ଅଲତା, ସିନ୍ଦୁର ପାଉଡ଼ର ଟେବୁଲ ଉପରେ ସଜାଇ ରଖିବା ଉଚିତ । ନିଜର ଯତ୍ନ ସେମାନେ ନିଜେ ନଅନ୍ତି । କେଡ଼େ ସୁନ୍ଦର ଦିଶନ୍ତି । ସେମାନେ ବି ସକାଳୁ ସଞ୍ଜ ଯାଏ ଘରକାମ କରନ୍ତି । ନିଜର ଯତ୍ନ ଯେ ନେଇ ନ ଜାଣେ ସେ ସ୍ୱାମୀ କି ପିଲା ଛୁଆଙ୍କର କି ଯତ୍ନ ନେବ ? ଆଚ୍ଛା, ମୁଣ୍ଡଟାରେ ପାଉଡ଼ର ମାରିବ କି ଅମେ ଥାଳ ପାଖରୁ ଉଠିବୁଁ ?

ସତକୁ ସତ ସେ ଉଠି ଯିବେ ଯେ । ରମା ଆର ଘରକୁ ଯାଇ ମୁଣ୍ଡରେ ପାନିଅଁ। ମାରିଲା । ଆଖିରେ କଜଳ ଗାର ଦେଲା । ମୁଣ୍ଡରେ ସିନ୍ଦୂର ଟୋପା ଲଗାଇ ଏକ ମିନିଟରେ ଏ ଘରକୁ ଆସିଲା ।

ହିଁ, ଏଥର ହେଲା । ଲୁଗାଟା କିନ୍ତୁ ମଇଳା ରହିଛି । ସେ ଆଡ଼କୁ ଦୃଷ୍ଟିଦେବା ଉଚିତ । ବି: ବାନାର୍ଜିଙ୍କ ଘରଣୀଙ୍କୁ ଦେଖିଛ ତ ? କାହିଁକି, ଡାକ୍ତର ସାହେବଙ୍କ ସ୍ତ୍ରୀ ଶ୍ରୀମତୀ ଗୋମତୀ । ଯେତେବେଳେ ଦେଖ, ତୁଷାର ଧବଳ ଅମଳ ବସନ । ମଇଳା ଲୁଗାରେ ନାନା ପ୍ରକାର ଜୀବାଣୁ ବାସ କରନ୍ତି । ଯେତେ ଜାତର ଭୀଷଣ ରୋଗ ଏବେ ଦେଖା ଦେଲଣି ସବୁ ତ ସେହି ଜୀବାଣୁ ମାନଙ୍କ ପାଇଁ, ଅର୍ଥାତ ମଇଳା ଲୁଗା ପାଇଁ ଅର୍ଥାତ୍ ତମର ମାନଙ୍କ ପାଇଁ । ଲୁଗା ପାଲଟିବ କି ଆମ୍ଭେ ଉଠିବୁଁ ?

ଓହୋ, ଖାଇ ହଅମ, ଅଣ୍ଡା ହୋଇଯିବ, କେତେ ଢଙ୍ଗ କାଢ଼ୁଛି । କାଲି ସକାଳେ ତ ଏଇ ବାସୀ ଶାଢ଼ୀ କାଢ଼ିଥିଲି । ଥରେ ଧୂଆ ହୋଇଛି । ପିଲାଏ ମଇଳା କରି ଦେଉଛନ୍ତି । ମୋ ପାଇଁ ରଙ୍ଗ ଶାଢ଼ୀ ଦୁଇଟି ଆଜ କିଣି ଆଣିବ । ପି: ପଦ୍ମନାଭଙ୍କ ସ୍ତ୍ରୀ ରଙ୍ଗ ସାଢ଼ୀ ପିନ୍ଧନ୍ତି । ମଇଳା ହେଲେ ଜଣା ପଡ଼େ ନାହିଁ ।

ସୁକାନ୍ତ ଚୁପ ରହିଲେ । ମୁଠିଏ ଭଲକରି ଭୋଜନ କଲେ । ଅଫିସ ଯିବାକୁ ପ୍ରସ୍ତୁତ ହେଲେ । ଦୁଇଦିନ ହେଲା ଥୋଡ଼ରେ କ୍ଷୁର ଲଗି ନାହିଁ । ଗେଞ୍ଜି ଝାଳୁଆ ଗନ୍ଧଉଛି । ଖାକି କନାର ଅଧା ପ୍ୟାଣ୍ଟ ଓ ଅଧା ସାର୍ଟ ଗୁରିଦିନ ହେଲା ବଦଳା ହୋଇ ନାହିଁ । ଖାକି ମୋଜାର ତଳ ମଡ଼ାପରି ଗନ୍ଧାଉଛି । ପକେଟର ରୁମାଲ ଅତି ମଇଳା । ଯୋତାରେ ଶୁଖିଲା କାଦୁଅ ଲଗି ରହିଛି ।

ଏସବୁ ଆଡ଼କୁ ଇଞ୍ଜିନିୟର ସାହେବଙ୍କର ଦୃଷ୍ଟି ନାହିଁ । ଖୋଲି ଟ୍ରଙ୍କରୁ ପରିଷ୍କାର ଡ୍ରେସ୍ କାଢ଼ି ରମା ଆଲନା ଉପରେ ଥୁଇ ରଖିଛି । ସେ ସବୁ ସେମିତି ଅଛି । ବାଳ କୁଣ୍ଡା ହୋଇ ନାହିଁ । ଅଫିସ ଯିବା ବେଳ ହେଲଣି । ତରତର ହେଉଛନ୍ତି । ସବୁ କଥା ତାଙ୍କ କାନରେ ପକାଇଲେ ସେ ନିଜେ ତ ଲାଜବା ହେବେ, ପରକୁ ବାଛୁଛନ୍ତି କଅଣ ?

ପୁରୁଷ ପିଲା । ଘରର କର୍ତ୍ତା । ରୋଜଗାରିଆ । ତେଣୁ ତାଙ୍କର ସବୁ ତ୍ରୁଟି କ୍ଷମଣୀୟ । ହଉ ଯାଉନ୍ତୁ ସେ ଅଫିସକୁ । ଫେରିଲେ ରମା ଅବଶ୍ୟ କହିବ, କହୋ।

ପର ଘରର ମହଲାଙ୍କୁ ତେମେ ଅନାଅଁ କାହିଁକି ? କିଏ କିପରି ଲୁଗା ପିନ୍ଧିଛି, ମୁଣ୍ଡ ବାନ୍ଧିଛି, କଜଳ ଲଗାଇଛି, ପାଉଡ଼ର ବୋଳ ହୋଇଛି, ସେଥିରୁ ତମକୁ କି ମିଳିବ ?

ରମା ହସିବାକୁ ଲାଗିଲା ।

କ ହେଲ ଏତେ ହସୁଛମ ?

ହସିବି ନାହିଁତ କଅଣ କାନ୍ଦିବି ? ତୁମେ ଯେତେ ବିରକ୍ତ ହୁଅ, ଯେତେ ଠାଣି ଠାଣି କଥା କହି ଗାଳିଦିଅ ମୁଁ କେବଳ ହସିବି କହୁଛି । ତୁମ ମନ କଥା ତୁମେ ପଦାରେ ପକାଇ ଦେଇଛ । ଅତି ବୁଦ୍ଧିଆ ମଣିଛ ନିଜକୁ । ଧରି ପଡ଼ି ଗଲଣି ଯେ ।

କଅଣ ଧରି ପଡ଼ିଗଲି କହତ ?

କହିଲେ କଅଣ ମୋତେ ଦେବ ?

ଆଗ କହିବ ନା ଆଗ ନେବ ?

ଆଗ ନେବ ।

ସୁକାନ୍ତ ତାର ମୁଣ୍ଡଟିକୁ ଦୁଇ ହାତରେ ଧରି ରଙ୍ଗିଲ ଗାଲ ଦିଓଟିରେ ଚୋକ ଦେଲା । ମୁଣ୍ଡଟିକୁ ଛାତିରେ ଜାକି ଧରିଲା । ଅଧାଖୋଲା ପରଦା ବାଟେ ପଦାକୁ ଚାହିଁଲା । ଜୟଶ୍ରୀ ରାସ୍ତା ଆର ପାଖ ଘର ବାରଣ୍ଡା ଉପରେ ଠିଆ ହୋଇ ହସିଲା ମୁହଁରେ ଅନାଇଁଛନ୍ତି । ହଳଧର ବାବୁ ଚାଲି ଚାଲି କୋର୍ଟକୁ ଯାଉଛନ୍ତି । ଆଗକୁ ଅନାଇଁ ସେ ଚାଲୁ ନାହାନ୍ତି । ତାଙ୍କ ଦୃଷ୍ଟି ସୁକାନ୍ତର ଝରକା ଉପରେ । ମନର ଆଗ୍ରହ ଯେପରି ଗୋଟାଏ ହଜିଲା ଦରବ ଖୋଜୁଛି । ଆଖି ଅଣ୍ଡାଳ ହେଉଛି । ଆଜି ତାଙ୍କ ପୁରୁଣା ଗାଡ଼ିର କଳ ବିଗିଡ଼ିଛି ।

ସୁକାନ୍ତ ରମାକୁ ମୁକ୍ତ ଦେଇ କହିଲା, ନେଲତ, ଏବେ କହ । ଦେଖ, ଜୟଶ୍ରୀ କେମିତି ଅନାଇଁଛନ୍ତି । ହଳଧର ବାବୁ ତୁମକୁ ଖୋଜି ଖୋଜିକା ଆଗେଇ ଗଲେଣି । ଆଖି ଉଣ୍ଡୁଥିଲା, ଏବେ ମନ ଧୁଣ୍ଡୁଥିବ ।

ଛି, ଅଲକ୍ଷଣୀ । ବେହିଆ । ପରଦାର ଧାରି ଠାଣିମ ।

ଥାଉ୍ ଥାଉ୍ । ଜୟଶ୍ରୀ ଘର ଭିତରକୁ ଚାଲି ଯାଉଛନ୍ତି ଦେଖ । କେଡ଼େ ବେଖାତିରଆ ଗର୍ବିତ ଚାଲି ।

କହିବ ? ଯେତେ ଯେଉଁଠି ଘର ଘରଣୀ ତମେ ଦେଖିଥାଅ ସମସ୍ତଙ୍କୁ ମୋରଠେଇଁ ଦେଖିବାକୁ ମନ କର । ମନ ନ ମାନିଲେ ବିରକ୍ତ ହୁଅ । ଚଗଲା । ତୁମ ମନଟା ହାଇଁପାଇଁଆ ।

ବାଁ ଆଖି ତେଇଁଛି । ଆଜ ସେ ନିଶ୍ଚୟ ସବା ଶୁଭରେ ଫେରି ଆସିବେ । ତାଙ୍କର ପ୍ରକୃତି ସେ ଅଖିଆ ଅପିଆ ବେଳ ବୁଡ଼ିକୁ ଫେରନ୍ତି । କାମରେ ମନ ଲଗିଗଲେ ସେ ନିଜକୁ ଓ ଘର କୁଟୁମ୍ବଙ୍କୁ ଭୁଲି ଯାଆନ୍ତି । କାମ ସରିଲେ ଘରକୁ ଫେରିଲେ ଛୋଟ ବଡ଼ ସବୁ କଥା ତାଙ୍କ ଆଖିରେ ପଡ଼େ ।

ଆଜ ଆଉ୍ କିଛି ସେ ବାଛି ପାରିବେ ନାହିଁ । ଘରଦ୍ୱାର ସଫା ସୁତୁରା । ସବୁ ପଦାର୍ଥ ଯଥା ସ୍ଥାନରେ ସଜା ହୋଇଛି । ମଇଳା ଓ ଦାଗମଇଳା ଲୁଗା ପଟା ବନ୍ଧା ହୋଇ ରହିଛି, ଧୋବା ଆସିଲେ ନେଇ ଯିବ । କେବଳ ରମା ନିଜେ ଯେଉଁ ଧଳା ଶାଢ଼ୀ ଖଣ୍ଡି ପିନ୍ଧିଛି ସେଇଟି ଦାଗ ମଇଳା । ସବୁ କାମ ଶେଷକରି ସେ ସେଖଣ୍ଡି ଯାଲଟି ଦେବ ।

ଛଇ ଲେଉଟା ବେଳ । ପିଲା ଦିଓଟିଙ୍କୁ ରଙ୍ଗିଆ ଖେଳାଇବାକୁ ନେଇଛି । ଫେରୁଥିବ କି କଅଣ । ସେ ଫେରିଲେ ତାକୁ ବଜାରକୁ ପଠାଇବ । ଢିଅ ଅଧସେର ଆଣିଲେ ପୁରି ହପୁଞ୍ଜା ଛାଣି ଦେବାକୁ ଅଧିକ ବେଳ ଲଗିବ ନାହିଁ । ମହନଭୋଗ, ଆଳୁଦମ୍ ଟିକିଏ ଓ ତିମେଇଁ ଛୀରି ଅଲପ ହେଲେ ସେ ଶାନ୍ତିରେ ଖାଇବେ । ମାଛରେ ତାଙ୍କର ଶ୍ରଧା, କିନ୍ତୁ ଅବେଳରେ ମିଳିବା କଷ୍ଟ । ବଜାରକୁ ପଠାଇବାକୁ କେହି ଲୋକ ନାହାନ୍ତି । ନହେଉ୍, ଚଳ ଯିବ ଯେ । ମୁଣ୍ଡଟି ଏତିକି ବେଳେ ବାନ୍ଧି ନ ଦେଲେ ଆଉ୍ତ ବେଳ ମିଳିବ ନାହିଁ । ପିଲା ଦିଓଟି ଫେରି ଆସିଲେ ଦୁଷ୍ଟାମି କରିବେ ।

ଉମା ନିଜର ଯତ୍ନ ନେଲା ।

ବଡ଼ ଅଇନାରେ ନିଜକୁ ଦେଖିଲା । ନିଜ ହାତରେ ସେ ମୁଣ୍ଡ ବାନ୍ଧୁଛି । ସୁକାନ୍ତର ହାତ ଧରି ଆସିଲା ବେଳେ ମୁଣ୍ଡରେ ବେକାଏ କେଶ ଥିଲା । ଅଣ୍ଟା ଯାଏ ଲମ୍ବ । ବୋଉ, ଖୁଡ଼ୀ, ଅଈ କି ଖଞ୍ଜାର ଆଉ କେଉଁ ମାଇପେ ଘିଣି ତେଲ ବୋଳି ଘଣ୍ଟାଏ ସମୟ ଲଗି ବାନ୍ଧି ଦେଉଥିଲେ । କେତେ ପ୍ରକାରେ ଜୁଡ଼ା ବାନ୍ଧି ଜାତି ଜାତିକା ଫୁଲମାଳ ଗୁଡ଼ାଇ ଦେଉଥିଲେ ।

ସୁକାନ୍ତଙ୍କ ଘରକୁ ଆସିଲା ଦିନୁ ନିଜେ ସେ ନିଜ କେଶର ଯତ୍ନ ନେବାକୁ ଚେଷ୍ଟା କରିଥିଲା । ଶାଶୁ, ଜା, କି ନଣନ୍ଦ କେହି ପାଖରେ ନାହାନ୍ତି । ସାଙ୍ଗ ମାଇପେ ସିନା ସ୍ନେହ ଶ୍ରଦ୍ଧାରେ କେବେ କିପରି ମୁଣ୍ଡରେ ହାତ ଦିଅନ୍ତି ସବୁ ଦିନେ କିଏ ଏହା କରିବ ? କେହି କେହି ଇର୍ଷାରେ ହେଉ କି ସହଳ କାମ ଛିଣ୍ଡାଇ ଦେବାକୁ ଉଠି ଉଠି କରି ପାନିଆଁରେ ଛିଣ୍ଡାଇ ଦିଅନ୍ତି । ଖୁଣନ୍ତି ପୁଣି, ମାଆଲୋ, ଝୋଟ ଗୋଛ ପରି ଏତେ ବାଳ କେମିତି ବଢ଼ାଇଲୁ ମ ?

ବୋଉ କି ଅଈଙ୍କ କାନରେ ଯଦି ଏକଥା ପଡ଼ି ଥାଆନ୍ତା ସେମାନେ ଖୁଣିଲା ମାଇପିର ମହତ ସାରନ୍ତେ । କିଏ କହେ ଗୋ ତୁମକୁ ମୋ ବାଡ଼ୁଅ ଝିଅର ମୁଣ୍ଡରେ ହାତ ଦେବାକୁ ? ଉଠ, ଉଠ । ନାସି ତୁଲଭ ତ ସେତିକି । ଖୁଣି ଦେଲେ ବାଳ ଉପୁଡ଼ି ଯାଏ ଏକଥା କଅଣ ଜଣା ନାହିଁକି ?

ଆଖିରେ ଲୁହ ଆସିଲା । ମା ଖୁଡ଼େଇ ଅଈଙ୍କ ସ୍ନେହ ଆଜି ସାତ ସପନ । ବାପ ଦାଦି ଭାଇଙ୍କ ଆଦର ଓ ଗେହ୍ଲା ପଣିଆ ଶୀତକାଲ ଶୀତଳ ସକାଳ କୁହେଳି ତଳ ଗଛ ଗହଳର ମହଳ ଛାଇ ପରି ପରିତେ ହେଉଛି । ସେଇ ଜଙ୍ଗଲ ସ୍ଥାନ, ଗେଲ ବସର ସରସ ଦିନ ଆଉ ଫେରିବ ନାହିଁ ।

ଜୀବନ ନାହା ବାହା ନଈ ପାରି ହୋଇ ସେ କୂଳରୁ ଆସି ଏକୂଳରେ ଲାଗିଛି । ନାଉରିଆ ସୁକାନ୍ତ ତାର ନାହା ଓ ସାହା । ବାହାପଦ, ଆହାପଦ ତାଙ୍କର ତୁଣ୍ଡରେ । ସେଇ ଯେ କାଣ୍ଡାରି, ତାରିବା ମାରିବା ସବୁ ସ୍ନେହ ସୋହାଗର ଏକା ସେଇ ଉତ୍ସ ।

ନିଜ ମୁହଁକୁ ଆଇନାରେ ନିରେଖି ରମା ଆତ୍ମ-ସନ୍ତୋଷ ଲଭ କଲା । ସେ ଆସିଲେ ଆଜ ଆଉ ଖୁଣି ପାରିବେ ନାହିଁ । ଅଭିମାନ କରି ଛଳେଇ କହି ପାରିବେ ନାହିଁ ଯେ ମୁଣ୍ଡ ଅଲଗା ହୋଇଛି, ନୁଖୁରା ହୋଇଛି । ଦାଣ୍ଡରେ ହର୍ଣ୍ଣ ଶୁଭିଲେ ହରସଫା ସାଢ଼ୀ ଖଣ୍ଡି ପାଲଟି ଦେବାକୁ ବେଶୀ ବେଳ ଲଗିବ ନାହିଁ ।

ନାକପୁଡ଼ା ତଳେ ଓଠ ଉପରେ ଡାହାଣ ପାଖେ ଛୋଟ ବ୍ରଣଟିଏ କେବେ ଉଠି ଥିଲା । ତହିଁରେ ଦୃଷ୍ଟି ପଡ଼ି ନଥିଲା । ସାବୁନ୍ ଲଗାଇ ମୁହଁ ଧୋଇ ତଉଲି-ଆରେ ମୁହଁକୁ ରଗଡ଼ି ସଫାକଲା ବେଳେ ବ୍ରଣର ମୁଣ୍ଡ ଛିଣ୍ଡି ଗଲା । ତେଲ ହାତରେ ମୁହଁ ଘଷି ଚିକ୍କଣ କଲା ବେଳେ ତେଲ ହାତ ବ୍ରଣ ମୁହଁରେ ବାଜିଥିଲା । ଚଗରଗ ହୋଇ ପୋଡ଼ୁଛି । ନାଲି ଦିଶୁଛି ।

ରମା ତହିଁରେ ସ୍ନୋ ଟିକେ ଲଗାଇ ଦେଲା । ଶୀତଳ ଲାଗିଲା । ଜଳା କମିଲା । ବୟସ-ବ୍ରଣ ଏପରି ସବୁଙ୍କର ଉଠେ । ଚନ୍ଦନ ଘୋରି ଲଗାଇ ଦେଲେ ବସିଯାଏ କି ପାଚି ଯାଏ । ତା ମୁହଁରେ କେତେ ଥର ଉଠିଛି । ଆପେ ଆପେ ଭଲ ହୋଇ ଯାଇଛି । ସେମିତ, ବଳେ ଭଲ ହୋଇ ଯିବ । ସେଥିରେ ମନ ଦେଲେ କାମ ଅଧା ରହିଯିବ । ସେ ଫେରିଲେ ଖାଇବେ କଅଣ ? ଭୋକରେ ପେଟ ଆଉଣ୍ଡି ହେଉଥିବ ।

ଆରେ ହଁ, ବେକଟା ଲଙ୍ଗଳା କରି ବସିଛି । କାନ ଫୁଲ ମଇଳା ହୋଇଛି । ହାତରେ ବାପ ଘରର ଦହପଟି ସୁନା କାଚ ଅଛି । ସେବି ମଇଳା ହୋଇ ଗଲାଣି । ସୁକାନ୍ତ ପୁରୁଣା ଗହଣା ଭଙ୍ଗାଇ ସେଇ ସୁନାରେ ନୂଆ ନିରୋଳା ସୁନା ପକାଇ କେତେ ଗହଣା ଗଢ଼ାଇ ଦେଇଛନ୍ତି । କାଠା ଲଗ୍ ଦେଖି ନୂଆ ଓ ରମାର ମନ ପାଇଲା ଡିଜ ଇନ୍ ପ୍ରକାରେ ସେ ସବୁ ଗଢ଼ା ହୋଇଛି ।

ଅତି ଅଲଜୁକ । । ଅଳ କରନ୍ତି, ପେଡ଼ିରେ ସାଇତା ହେବାକୁ ସେ ସବୁ ଗଢ଼ା ହୋଇଥିଲା କି ? ଦେହରେ ନ ମଣ୍ଡିଲେ ସେ ଗୁଡ଼ାକ ମାଟି ଗୋଡ଼ି ସଙ୍ଗେ ସମାନ ନୁହଁକି ରମା ? ତୁମ ଅଙ୍ଗରେ ସେସବୁ ଗହଣା ଶୋଭାକାର ହଣେ, ତୁମର ଶୋଭାକୁ ସେ ବଢ଼ାଏ । ଆଜ ଭଲ ଦିନ, ଭଲ ବାର । ସବୁ ଗହଣା ତୁମେ ପିନ୍ଧିବ । ତୁମକୁ ମୋ ରାଣ ।

ଛୁ, ଘୃଣା ପକାଉଛ ? ଇଲ ମିଲ ଥୁକ୍ । କୁନୁ ଓ ଇରୀ ଓଠାଣି ପକାଇବେ ।
ହୁଇଟା ଯାକ ପିଲ ତମର ପରି ଅବେଇଜ ହୋଇଛନ୍ତି । ସଞ୍ଜ ବେଳେ କେହି
ଗହଣା ପିନ୍ଧନ୍ତି ନାହିଁ । ଉଠତ, ମୁଁ ଶ୍ରେଷ ଘରକୁ ଯାଏଁ । ଇଙ୍ଗିଅ କଅଣ ରାନ୍ଧୁଛ
ଦେଖି ଆସେଁ । ଦେଖ ଦେଖ, କୁନୁ କଅଣ କରୁଛି ।

କୁନୁ ଇରୀ ଦେହରେ ପାଉଡ଼ର ବୋଳୁଛି । ଇରୀ ତଳେ ବସି ରବର
କଣ୍ଢେଇ ଧରି ଖେଳୁଛି । କୁନୁକୁ କଣ୍ଢେଇରେ ପିଟୁଛି ।

କୁନୁକୁ କଣେଇଁ ଗ୍ଭହିଁ ସୁକାନ୍ତ କହିଲ, ଖେଳୁଛନ୍ତି ସେମାନେ । ତାଙ୍କ ଆଡ଼ି
ଦେଇ ମତେ ଭୁଲଉଛ ? ମୁଁ ଏଥର ରୁଷିବି କହୁଛି । ପିନ୍ଧିବ ନାହିଁ ?

ସୁକାନ୍ତ ମୁହଁ ଫଣଫଣ କରି ଗ୍ଭହିଁଲ । ରମା ହସି ହସିକା ତଉଡ଼ି ପାଖକୁ
ଘୁଞ୍ଚିଗଲ । ସ୍ୱାମୀଙ୍କର କେଶ ସଜାଡ଼ିଲ ଅଙ୍ଗୁଠିରେ । ମୁହଁ ନୁଆଁଇଁ କାନ ପାଖରେ
କହିଲ, ଡାକ୍ତର ବାବୁଙ୍କ ସ୍ତ୍ରୀ ଆଜି ସଞ୍ଜରେ ବୁଲି ଆସିବେ, ଖବର ପଠାଇଛନ୍ତି ।
ସେ ଆସିଲେ ଜଜ୍‌ଙ୍କ ଘରଣୀକୁ ସଙ୍ଗରେ ଆଣନ୍ତି । ଜୟଶ୍ରୀ ଯେମିତକା ତେମେ ତ
ଜାଣିଛ । ଦି ପହରେ ସେ ଆସିଥିଲେ । ମତେ ଏମିତ ରୂପରେ ଦେଖି ଯାଇଛନ୍ତି ।
ତୁମେ ଆସିଛ ବୋଲି ସେ ଜାଣନ୍ତି । କଣେଇଁ ଗ୍ଭହିଁବେ । ମୁରୁକି ହସିବେ । କେତେ
ଥଟ୍ଟା କରିବେ । ମତେ ଲଜ ମାଡ଼ିବ । କାଲି ସକାଳେ ପିନ୍ଧିବି ।

ସୁକାନ୍ତ ହାତ ଧରି ହସି ହସିକା କହିଲ, ଏଥର ଧରା ପଡ଼ିଛ । ରଙ୍ଗିଅ କଅଣ
ରାନ୍ଧୁଛି ରାନ୍ଧୁ । ଗୋମତୀ ଓ ଜୟଶ୍ରୀ ଆସିବା ଆଗରୁ ମୁଁ ତୁମକୁ ଗହଣା ପିନ୍ଧାଇ
ଦେବି । ସେମାନେ ଉପହାସ କଲେ ସତ କଥା କହି ଦେବି । କହିବି, ମୁନୁ ବାପା
ଛପାହେଲ କାବ୍ୟ କବିତା କି ଉପନ୍ୟାସ ଗଳ୍ପ ପଢ଼ନ୍ତି ନାହିଁ । ଏ ପ୍ରକାର ଯେତେ
ବହି ଓଡ଼ିଆ ଭାଷାରେ ଛପାହୁଏ ସବୁ ସେ କିଣନ୍ତି କୁନୁ, ଇରୀ ଓ ମୁନୁଙ୍କ ମା ପାଇଁ ।
ତୁମେ ସେ ସବୁ ପଢ଼ିବ । ମୋ କାବ୍ୟ କବିତା ଗଳ୍ପ ଉପନ୍ୟାସ ନିର୍ଜୀବ ନୁହନ୍ତି ।
ମନଗଢ଼ା ନୁହନ୍ତି । ସେ ସବୁ ଜୀବନ୍ତ ହୋଇ ଜଣକ ଦେହରେ, ଜଣକ ମନରେ,
ଜଣକ ଗ୍ଭଲି ଚଲଣି, ଢଙ୍ଗ ଢାଙ୍ଗ, ରାଗରୋଷ, ମାନ ଅଭିମାନ, ସ୍ନେହ ମମତା ଓ
ହସ କାନ୍ଦରେ ଠୁଳ ହୋଇଛନ୍ତି । କହତ ରମା, ସେ ଜଣକ କିଏ ?

ରମା ପାଖ ଆଲମାରୀ ଆଡ଼କୁ ଗ୍ଭହିଁଲ । ଓଠରେ ହସ ।

କେବକାର ଘଟଣା ମନ ଗହନର ରଙ୍ଗମଂଚରେ ଅଭିନୀତ ହେଉଛି । ଦେହର ସୀମା ଅଛି । ମନର ସୀମା ନାହିଁ । କାଳ ଓ ବ୍ୟବଧାନ ମନର କେଉଁ କୋଣରେ ହଜି ଯାଆନ୍ତି । ଲୁଚି ଛପି ଯାଆନ୍ତି । ଅନ୍ଧାର ରାତିରେ ଟର୍ଚ୍ଚ ଆଲୁଅ ବୁଲିଗଲା ପରି ମନର ଆଲୁଅ ବୁଲିଯାଏ । ଅତୀତକୁ ଆଲୋକିତ କରେ । ବର୍ତ୍ତମାନ୍ ତ ଗତିଶୀଳ, ଦୈର୍ଘ୍ୟ ପ୍ରସ୍ଥ ବିହୀନ ରେଖାଟିଏ । ଅତୀତ ଓ ଭବିଷ୍ୟତର ମଝିଁଆ ମଝି ଅତି ଗତିରଦ୍ଧ ବେଳକାଳ ହୀନ ଅଭେଦ୍ୟ ପ୍ରାଚୀର । ମନର ଆଲୁଅ ସେହି ପ୍ରାଚୀରକୁ ଭେଦ କରିବାକୁ ସାହସ କରେ, ପାରେ ବା ନପାରେ, ହେରେ ବା ଫେରେ ।

ମୁନୁ ତାଙ୍କର ଅନାଗତ ପୁତ୍ର, ଭବିଷ୍ୟତର କାମନା ।

ଆଲମାରୀ ଭିତରେ କେତେ ବହି ସଜା ହୋଇ ରହିଛି । ରମା ସେଥିରୁ କେତେ ଖଣ୍ଡି ପଢ଼ିଛି, ଆଉ କେତେ ଖଣ୍ଡି ଅତି କଷ୍ଟରେ ଅଧା ପଢ଼ା ହୋଇଛି । ଶେଷ କରିବାକୁ ମନେ ନାହିଁ । ବେଳ ମିଳେ ନାହିଁ । ସୁକାନ୍ତ ଅଫିସ ଗଲେ ପହରେ ବିଶ୍ରାମ ନେଲା ବେଳେ ସେ ପଢ଼ିବାକୁ ଚେଷ୍ଟା କରେ । ପିଲା ଦିଓଟି ଠାଣି ଓଟାରି ପକାନ୍ତି । ସେମାନେ ଅଲଗା ଖେଳିଲେ ମନ ଛନ ଛନ ହୁଏ । ପଢ଼ାରେ ମନ ଲାଗେ ନାହିଁ । କେତେ ମାଇପେ ପଢ଼ିବାକୁ ବହି ମାଗି ନିଅନ୍ତି । ମନେ ରହେ ନାହିଁ । ଫେରାଇବା ନ ଫେରାଇବା ସେମାନଙ୍କର ଦୟା ଉପରେ ନିର୍ଭର କରେ ।

ରମାର ଗହଣା ପିନ୍ଧା ସରିଛି ।

ଆଇନା ଆଗରେ ଠିଆ ହୋଇ ନିଜକୁ ନିଜେ ଚାହିଁଲା । ସେ ଆଜି ଆଉ ପ୍ରକାରେ ଦିଶୁଛି । ମୁଣ୍ଡ, ନାକ, କାନ, ହାତ, ବେକ, ସବୁଠି ପଥର ବସା ସୁନା ଗହଣା ଝଟକି ଉଠୁଛି । ଘର ଭିତର ଅନ୍ଧାରିଆ ଦିଶିଲାଣି । ତାଙ୍କର ଆସିଲା ବେଳ ହେଲାଣି । କାନରେ ସତେକି କେତେ ଦୂରରୁ ଛୁଟି ଆସୁଥିବା ହର୍ଣ୍ଣର ଶବ୍ଦ ବାଜୁଛି । ମନ କହୁଛି, ସେ ନିଶ୍ଚୟ ଫେରି ଆସିବେ । କାହିଁକି ଆଜି ଅଜଣା ଉଛା-ଛିଆ ଭାବନା ଛାତି ଥରାଉଛି ?

ପିଲ ଦୁହିଁଙ୍କୁ ନେଇ ରଙ୍ଗିଆ କେତେ ବେଳୁ ଗଲଣି । ସେ ଫେରିଲ ନାହି କାହିଁକ ?

ଘରେ ସେ ଏକା ଅଛି । ସଞ୍ଜ ହୋଇ ଆସିଲଣି । ରଙ୍ଗିଆର ବୁଦ୍ଧି ନାହିଁ ; ଆରେ । ଆଜ ସଞ୍ଜରେ ଜଗତ୍ର ଜନନୀଙ୍କ ମନ୍ଦରକୁ ଦର୍ଶନ କରିବାକୁ ସେ ଯିବ ପରା । ଗୋମତୀ ଦେବୀଙ୍କୁ ଖବର ପଠାଇ ଥିଲ । ଯିବେ କି ନ ଯିବେ ସେ ବେଉରା ପଠାଇ ନାହାନ୍ତି । ରଙ୍ଗିଆ ଆସୁଥିବ ପରା । ଦେଖେଁ ।

ଦାଣ୍ତ କବାଟ ଖୋଲ ପଦାକୁ ଚାହିଁଲ । ସତେ, ସେ ଆସୁଛି । କୁନୁ ଓ ଇବା ସଙ୍ଗରେ ଅଛନ୍ତି । କୁନୁ ଓ ଇବା ତାର ଦୁଇ ଆଖି । ଦି ଘଣ୍ଟା ହେବ ଆଖି ଫୁଟି-ଗଲ ପରି ଲଗୁ ଥିଲ । ହେଇ, ଆସୁଛନ୍ତି ତାର ଆଖିର ଜ୍ୟୋତି । କୁନୁ ରଙ୍ଗିଆର ହାତ ଧରି ଚାଲଛି, ଇବା ତାର କାଖରେ । ପାଖେଇ ଆସିଲେଣି, ରମାକୁ ଦେଖି ନାହାନ୍ତି ।

ମନ କୁରୁଳ ଉଠିଲ । ରମା ଆଖି ବୁଲଇଲ । ରାସ୍ତା ଆର ପାଖ ଘରର ବାରଣ୍ଡାରେ ହଳଧର ବାବୁ ଠିଆ ହୋଇ ଏକ ଧ୍ୟାନରେ ତାଆର ଆଡ଼କୁ ଚାହିଁ ରହିଛନ୍ତି । ଘର ଭିତରେ ଥାଇ ଜୟଶ୍ରୀ ପରଦା ଆଡ଼େଇ ଏକ ଦୃଷ୍ଟିରେ ଅନାଇଁ ରହିଛନ୍ତି କୁନୁ ଓ ଇବାଙ୍କୁ ।

ରମାର ଓଠ ଉପର ଖଣ୍ଡିଆ ବ୍ରଣ ପୋଡ଼ି ଉଠିଲ । ସେ ଘର ଭିତରକୁ ପଳାଇ ଆସିଲ ।

ସଞ୍ଜବତୀ ଲଗାଇ ଅଗଣାର ତୁଳସୀ ଚଉରା ମୂଳେ ଜଳାଇ ରମା ତଳେ ମୁଣ୍ଡ ଲଗାଇ ପ୍ରଣାମ କଲ । ପ୍ରାର୍ଥନା କଲ, ସ୍ୱାମୀ ସକଳ କାର୍ଯ୍ୟରେ ସଫଳ ହୋଇ ସର୍ବ ଶୁଭରେ ଫେରି ଆସନ୍ତୁ । ଠାକୁରାଣୀ ପ୍ରସନ୍ନ ହୋଇ ସ୍ୱାମୀ ଓ ପୁତ୍ରକନ୍ୟାଙ୍କୁ ଦୀର୍ଘାୟୁ କରନ୍ତୁ । ଧନ ଜନ ଗୋପଲକ୍ଷ୍ମୀରେ ତାର ସଂସାର ପରିପୂର୍ଣ୍ଣ ହେଉ ।

ରଙ୍ଗିଆ ଆଲୁଅ ଜଳାଇ ସାରିଲଣି । ଶୁକ୍ରବାଣୀ ପାର୍ବତୀ ବାରଣ୍ଡାରେ ଗୋଡ଼ ଲମ୍ବାଇ ବସିଛି । ତାର ଗୋଡ଼ରେ ଇରା ଶୋଇ ପଡ଼ିଲଣି । ହରି ପିଅନ ପାଖରେ ବସି ଦାଣ୍ଡଘରେ କୁନୁ ବାଘ ଭାଲୁ ଗପ ଶୁଣୁଛି । ଗୋମତୀ ଖବର ପଠାଇଥିଲେ ଯେ ସେ ପିଲଙ୍କୁ ଡାକ୍ତରଙ୍କ ପାଖରେ ଛାଡ଼ି ରମା ଘରକୁ ଆସିଲେ ଜୟଶ୍ରୀଙ୍କୁ ସଙ୍ଗରେ ନେଇ ତିନିହେଁ ଠାକୁରାଣୀଙ୍କ ମନ୍ଦିରକୁ ଯିବେ ।

ଜୟଶ୍ରୀ ତ ଜଜଙ୍କ ସଙ୍ଗେ ବୁଲି ବାହାରି ଗଲେଣି । ଗୋମତୀ ଆସିଲେ 'ରମା ତାଙ୍କ ସଙ୍ଗେ ଯିବ । ହରି ପିଅନ ସଙ୍ଗରେ ଯିବ । ପାର୍ବତୀ ଓ ରଙ୍ଗିଆ ଘରେ ରହିବେ । ଏହି ବିଚାର ରମା କରୁଛି । ରଙ୍ଗିଆ ପାଖରେ କୁନୁ ରହିବାକୁ ରାଜି ନ ହେଲେ ତାକୁ ସେ ସଙ୍ଗରେ ନେଇ ଯିବ ।

ରମା ଆହୁରି ଥରେ ମୁଣ୍ଡିଲଗାଇ ବୃନ୍ଦାବତୀଙ୍କୁ ଓଳଗି ହେଲା । ବାପ ମା ମୋର କୁଶଳରେ ଥାଉନ୍ତୁ । ଭାଇ ଭାଉଜ ଓ ପିଲା ଦିଓଟି ଦୀର୍ଘାୟୁ ହୁଅନ୍ତୁ । ଆଜି ଚିଠି ଆସିବ ବୋଲି ଶୁଭକାଉ ସକାଳେ ଆସି ରାବ ଛାଡ଼ି ଅଗଣାରେ ନାଚୁଥିଲା ।

ବାପା ଲେଖିଛନ୍ତି ଦାଣ୍ଡ ଧାଉଡ଼ୀ ଚାଳଘର ଭଙ୍ଗାଇ ଯେଉଁ ପକ୍କାଘର ତୋଳା ହେଲା ସେଘର ଅବିକଳ ସୁକାନ୍ତ ଦେଇଥିବା ପ୍ଲାନ୍ ପ୍ରକାରେ ହୋଇଛି । ଅଳ୍ପ ଖରଚରେ ଏଡ଼େ ସୁନ୍ଦର ସେ ହୋଇଛି ଯେ ଲୋକେ ପ୍ରଶଂସା କରୁଛନ୍ତି । କେତେ ଲୋକ ପ୍ଲାନ୍‌ର କପି କରି ନେଉଛନ୍ତି । ମୋ କୋଠା ପାଇଁ ମୋ ମନରେ ଯେଉଁ ଗର୍ବ ଓ ଆନନ୍ଦ ଆସୁଛି, ମୋ ଜୋଇଁ ସୁକାନ୍ତର ଦକ୍ଷତା ଓ ବୁଦ୍ଧି କଥା ଭାବି, ମନରେ ତହୁଁ ବଳି ଗର୍ବ ଓ ଆନନ୍ଦ ଆସୁଛି । ଠାକୁରେ ତାର ଉତ୍ତରୋତ୍ତର ଉନ୍ନତି କରିବେ ଏ ବିଷୟରେ ମୁଁ ନିଃସନ୍ଦେହ ! ଦଶରା ପାଖେଇ ଆସିଲା ସେଇଦିନ ଘର ପ୍ରତିଷ୍ଠା କରା ହେବ । ତୁ, ସୁକାନ୍ତ ଓ ପିଲାମାନେ ଅବଶ୍ୟ ଆସିବ ।

ବୋଉ ଲେଖିଛନ୍ତି, ଦୁଇବର୍ଷ ପାଖେଇ ଆସିଲା, ତୋର ମୁହଁ ଦେଖିନି ନାହିଁଲେ ରମା, ମନ ମୋର ଛଟପଟ ହେଉଛି । ସବୁବେଳେ ତେମେମାନେ ମୋ ଆଖି ଆଗରେ ନାଚି ଯାଉଛ । ଦଶରାକୁ ନିଶ୍ଚୟ ଆସିବ । କୁନୁ ଓ ଇରାକୁ ମୋ ପାଇଁ ଗେଲ କରିବୁ । ଜୋଇଁ ଯେଉଁ କାନଫୁଲ ହଳକ ପଠାଇଥିଲେ, ସେ ଏଡ଼େ ସୁନ୍ଦର ହୋଇଛି ଯେ ଟାଁ ମାଇପେ ଦେଖି ହାଇଁ ପାଇଁ ହେଉଛନ୍ତି । ଠାକୁରେ ତାଙ୍କୁ

ଘର୍ଦ୍ୱାସ୍ତୁ କରନ୍ତୁ । ପୁଅ ତ ନାତି ଦୁହିଁଙ୍କୁ ଓ ବୋହୂଙ୍କୁ ନେଇ ସୁନ୍ଦରଗଡ଼ ଗଲ ସେ ଆସି ବର୍ଷ ପୁରିବାକୁ ବସିଲଣି । ବୋହୂଙ୍କର କଅଣ ପିଲପିଲି ହେବ । ସାମ୍ନ ଆସିଲେ ମୁଁ ସୁନ୍ଦରଗଡ଼ ଯିବ । ଦଶହ୍ରା ଆଗରୁ ମୁଁ ଗାଁକୁ ଫେରି ଆସିଥିବ ଯେ ।

ଭାଇ ସୁନ୍ଦରଗଡ଼ରୁ ଲେଖି ଛନ୍ତି, ତୋ'ଭାଉଜର କାଲି ରାତି ପାହାନ୍ତାବେଳେ ପୁଅଟିଏ ହୋଇଛି । ଜଙ୍ଗଲ-ବିଭାଗରେ ରେଞ୍ଜର କାମ । ବଣ ପାହାଡ଼ରେ ବୁଲି ବୁଲି ସମୟ କଟୁଛି । ଆଜ ଦୁଇ ପ୍ରହରେ ଫେରିଲି । ଦେଖିଲି ଟିକ ପୁଅ ରଡ଼ି ଛାଡ଼ୁଛି । ତା! ନାମ ତୁ ବାଛିବୁ ବୋଲି ତୋ ଭାଉଜ ଆଦେଶ ଦେଇଛନ୍ତି, ଯେପରି ଧୀରେନ୍ଦ୍ର ଓ ବୀରେନ୍ଦ୍ର ସଙ୍ଗକୁ ମାନବ । ତୋ ପାଇଁ ଓ ସୁକାନ୍ତ ପାଇଁ ଆଜ ପାର୍ଶଲ୍ କରି ହଲେ ଭଲ ଏଣ୍ଡିଚଦର ପଠାଇଲି । ବୋଉଙ୍କୁ ଆଣିବାକୁ ଯାଇଥାଅନ୍ତି । ମନା କରି ଆଜ ଲେଖି ଦେଉଛି । ଦଶହରାକୁ ସମସ୍ତଙ୍କୁ ନେଇ ଘରେ ଛାଡ଼ି ଆସିବ । ବେଳ ପାଇଲେ ଜୟପୁର ଯାଇ ତମମାନଙ୍କୁ ଦେଖି ଆସିବ ।

ରମା ମନେ ମନେ ହସିଲ । ଟିକ ପୁଅଟିର ମୁହଁ ହସି ଯାଉଛି । ତା'ଙ୍କ ଭାଇକୁ ବଳ ଭାଉଜ ସୁନ୍ଦର । ଧୀର ଓ ବୀର ବାପ ଓଳ ଆଣିଛନ୍ତି । ସାନ ପୁଅ ନିଶ୍ଚୟ ମା ପରି ହୋଇଥିବ । କେଡ଼େ ସୁନ୍ଦର ନାମଟି ତାଙ୍କର—ବକୁଳ । ହେଲେ, ସେ ଅତି ଧୀର ସ୍ଥିର । ଭାଇଙ୍କ ନାମ ରାମଚନ୍ଦ୍ର । ତାଙ୍କ ନାମ ସୀତା ହୋଇଥିଲେ ଭଲ ହୋଇଥାନ୍ତା । ସାନ ପୁଅ ନାମ ନରେନ୍ଦ୍ର ଦେଲେ ଭଲ ହେବ ପରା, ନୋହିଲେ ସୁରେନ୍ଦ୍ର, ହରେନ୍ଦ୍ର । କୁନୁ ବାପା ଗସ୍ତରୁ ଫେରିଲେ ସ୍ଥିର କରି ଦେବ । ସେ ତ କହିବେ ଗୁଳା ପକାଇବା, ଇରି ଗୁଳା ଟେକିବ । ଯେଉଁ ନାମ ଉଠିବ ସେଇଆ ଲେଖିଦେବ ।

କୁଜଙ୍ଗର ତଳମାଲରେ ରମାର ଶଶୁର ଘର । ଶାଶୁ ଶଶୁର ନାହାନ୍ତି । ନଣନ୍ଦମାନେ କେବେଠୁଁ ପରଘରକୁ ଗଲେଣି । ଶାଶୁଘର ଗ୍ରାମର ରୂପ ସେ ଦେଖି ନାହିଁ । କଟକରେ ବାହାଘର ହେଲ ବେଳେ ଯେଉଁ ଭଦ୍ରଲୋକଟି ସ୍ୱାମୀଙ୍କର କଣ୍ଠ

ହୋଇଥିଲେ, ବେଦରେ ବସି ବାହା କରାଉଥିଲେ ସେ କୁଆଡ଼େ ତା'ର ଦେଢ଼-ଶୁର । ତାଙ୍କ ନାମ ଦାମୋଦର । ଜାଆଙ୍କ ନାମ ନୟନତାରା । ଦୁଇ ପୁଅ ଓ ଉନ୍ନି ଝିଅକୁ ସଙ୍ଗରେ ନେଇ ସେ ଗ୍ରାମରୁ କଟକ ଆସିଥିଲେ । ମାସଟିଏ ରହି ଫେରି ଗଲେ ।

ଦୁଇ ଭାଇଙ୍କ ମଧ୍ୟରେ ଚଠି ପତ୍ରର ଆଦାନ ପ୍ରଦାନ ନ ଥାଏ । ଅକାଳେ ସକାଳେ ଜାଆ ଖଣ୍ଡେ ଖଣ୍ଡେ ପତ୍ର ଲେଖନ୍ତି । ଟଙ୍କା ପଠାଅ ବୋଲି ସିଧା ସଳଖ ନ ଲେଖି କେବଳ ଦୁଃଖ ବର୍ଣ୍ଣନା କରନ୍ତି, ଆଗୋ ରମା, ଶଶୁର ଘରତ ଦେଖିଲ ନାହିଁ । ଆମ କଳବଳ କଥା ଜାଣିବ କିପରି ? ଲୁଣି ପାଣି ମାଡ଼ି ଆସିଲା ଏ ବର୍ଷ ଯେ ବନ୍ଧ ଭାଙ୍ଗି ଜମିରେ ଲକ୍ଷ୍ମୀ ଚରିଲା । ଅଳ୍ପ ଫସଲ ଯେ ପେଟକୁ ନାଅଣ୍ଟେ । ବଡ଼ ପୁଅ ଭଗବାନ ଦଶ କ୍ଲାସରେ ଅନନ୍ତପୁରରେ ପଢୁଛି । ଦରମା ନ ଦେଲେ ନାମ କଟି ଯିବ । ମୋର ଦର ଲୁଗା ଖଣ୍ଡେ ନାହିଁ ବୋଲି ଦାଣ୍ଡକୁ ବାହାରୁ ନାହିଁ । ପିଲାଗୁଡ଼ାକ ଅଭେକାଙ୍କ ପରି ହୋଇଛନ୍ତି । କାନ୍ତଙ୍କୁ କହିବ, ଗଣ୍ଟିବ ଭାଇ ଭାଉଜ ବୋଲି ଏକାଥରେ ଭୁଲି ଯିବେ ନାହିଁ ! ଦଶହରାକୁ ଭଗବାନ ଜୟପୁର ଯିବ ବୋଲି ହେଉଛି । ଗଦାଏ ବାଟ । ମୁଠାଏ ଟଙ୍କା ଖରଚ ହେବ । ଦୁ ବେଳା ଦ ଭୋକ ମିଳିବା ତ କାଠିକର ପାଠ, ବାଟ ଖରଚ ଦେବ କିଏ ? ମୁଁ କହିଲି, ଖୁଡ଼ୀଙ୍କୁ ଲେଖୁନୁ । ସେ କହିଲା, ଲଜ ମାଡ଼ୁଛି । କାନ୍ତକୁ କହିବ । ଚଠି ଖଣ୍ଡେ ଦେବ ମ ରମା, ଗଣ୍ଟିବ ହିଁ ପଛେ, ତମରି ଜାଆ ମୁଁ, ତମର ବଢ଼ନ୍ତି ହେଉ ବୋଲି କେତେ କଲ୍ୟାଣ କରୁଛି । ପିଲା ଦୁଇଟିକୁ ଦେଖି ନାହିଁ ସିନା, ସବୁ ବେଳେ କଲ୍ୟାଣ କରୁଛି, ଠାକୁରେ କୋଟି ପରମାୟୁ ଦେଉନ୍ତୁ । ତମ ରୂପ ସଦା ବେଳେ ମୋ ଆଖିରେ ନାଚୁଛି ! ଥା ; ରହିଲି ।

ସୁନା ଖଡ଼ିକା ପରି ଧଡ଼ିଆ ଧେଡ଼ଙ୍ଗ ମାଇପିଟିଏ ସତେକି ଆଗରେ ଆସି ଠିଆ ହୋଇ ଯାଉଛି । ଅମରବାବୁଙ୍କ ସ୍ତ୍ରୀ ଇନ୍ଦିରାଙ୍କ ଛୁଟିକା । ସୁକାନ୍ତ ଆସିଲେ, ରମା ଅବଶ୍ୟ କହିବ, ଭାଇଙ୍କ ଠିକଣାରେ ଶହେଟି ଟଙ୍କା ପଠାଇ ଦିଅ । ଭଗବାନଙ୍କୁ ଆସିବାକୁ କହ । ତମର ତ ବୁଲା ଚାକିରି, ବେଶୀଦିନ ଗସ୍ତରେ କଟୁଛି । ନିଜ ଲୋକ ପାଖରେ ଥିଲେ ନିରାପଦ । ଦୁହିଁଙ୍କର ମଙ୍ଗଳ । ପୁଅ କିଏ ଝିଉରି କିଏ ? ଗଲାକଥା ଭୁଲି ଯାଅ । ହଉ, ଭାଇ ସିନା ତୁମକୁ ହେଲା କରିଥିଲେ, ସବୁ ସମ୍ପତ୍ତି

ଲେଖାଇ ନେଲେ ତାଙ୍କ ନାମରେ, ଭନେ କର ଦେଲେ, ଭଗବାନଙ୍କ ପୁତ୍ରଙ୍କୁ ବାଦ ଛେଦ ଭେଦରେ ସେ ତ ନ ଥିଲ । ଠାକୁରେ ତୁମକୁ ବଡ଼ କରିଛନ୍ତି । ବଡ଼ ପଣ ତୁମର ରଖ । ଠାକୁରେ ମଙ୍ଗଳ କରିବେ । ତାଙ୍କ ଆଶୀର୍ବାଦର ଠେକ ରହିବ ।

ହିର ପିଅନ ଅଫିସରୁ ଖବର ଆଣିଛି, ବାବୁ ସିନା ତିନ ଦିନ ପାଇଁ ଗସ୍ତ ପକାଇଛନ୍ତି, ଫେରିବାକୁ ପାଖିଦିନ କ ସାତ ଦିନ ଲଗିବ କିଏ କହିବ ? ଅରଣ୍ୟ ମଝିରେ ବହି ଅଟୁଥିବା ପାହାଡ଼ିଆ ନାଳରେ ବନ୍ଧ ପକାଇ ପାଣିକୁ ଅଟକାଇ ରଖା ହୋଇଛି । ନୂଆ କାମ, ନୂଆ ମାଟି । ବଳକା ପାଣି ଖଲାସ କରିବାକୁ ଯେଉଁ ନାଳ ହେବାର କଥା ସେକାମ ଶେଷ ହୋଇ ନାହିଁ । କେନାଲ ସବୁ ଖୋଳା ହୋଇ ସାରିଛି । ପାହାଡ଼ କଡ଼େ କଡ଼େ ବଙ୍କେଇ ବଙ୍କେଇ ଲଗିଯାଇଥିବା ନାଳ ତିନି ମାଇଲ୍ ଆସିଲା ପରେ ଚଲନଗୁଡ଼ା ଓ ଆଖ ପାଖ ଗ୍ରାମର ହଜାରେ ଏକର ଭୂମିରେ ପାଣି ଛାଡ଼ିବ । ବଡ଼ ବରଷାରେ ଡ୍ୟାମ ଓ ନାଳର ଅବସ୍ଥା ଦେଖି ବ୍ୟବସ୍ଥା କରିବାକୁ ଲୋକବାକ, କୋଡ଼ି କାଙ୍କ ଧରି ଦିନରାତି ଜଗି ରହିବେ । ବଡ଼ ଇଞ୍ଜିନିୟର ଦେଖିବାକୁ ଆସୁଛନ୍ତି ବୋଲି ତାର୍-ବାର୍ତ୍ତା ଆସିଛି ।

ଏବେ ଲୋକ ପାଖରେ ଅଛନ୍ତି । ଆପଦବିପଦ ବିଭ୍ରାନ୍ତିର ପ୍ରଶ୍ନ ଉଠୁ ନାହିଁ । ଗଲା ବେଳେ ସେ ଅଶାନ୍ତ ହୋଇଗଲେ । ସେଇଥି ପାଇଁ ରମା ମନରେ ଦୁଃଖ । ରମା ବୃନ୍ଦାବତୀ ତଳସୀ ତଳେ ମୁଣ୍ଡ ଲଗାଇ ପୁଣି ଜଣାଣ କଲା, ମାଆଗୋ, କଅଣ କଲେ ସେ ସୁଖୀ ହେବେ, ଅଶାନ୍ତ ହେବେ ନାହିଁ, ବିରକ୍ତ ହେବେ ନାହିଁ, ସେହି ବୁଦ୍ଧି ମତେ ଦିଅ । ନିଜକୁ ଭୁଲି, ଜୀବନ ଦେଇ ଯେଉଁର ତାଙ୍କୁ ମୁଁ ସୁଖୀ କରି ପାରିବି ସେତିକି ଦୟା, ସେତିକି କରୁଣା ମୁଁ ମାଗୁଣି କରୁଛି । ସେତିକି ଶିକ୍ଷା, ସେତିକି ବୁଦ୍ଧି ଓ ଦକ୍ଷତା ମୋ ନାରୀ ଜୀବନର ମହା ସମ୍ପତ୍ତି ହେଉ । ଆଉ ସବୁ ତ ତାଙ୍କର—ଧନ ଦରବ, ଗହଣାଗଣ୍ଠି, ପୁଅ ଝିଅ, ହାତଧରି ଘରଣୀ କରି ଆଣିଛନ୍ତି ଯେଉଁ ରମାକୁ, ସବୁ । ତାଙ୍କୁ ସୁଖୀ କରିବାର ମନ, ଆଗ୍ରହ, ବୁଦ୍ଧି ଓ ଦକ୍ଷତା ମୋ'ର ହେଉ । ଏତିକି ମୋ ନିଜ ପାଇଁ ମାଗୁଣି ।

ଗୋପୀନାଥ ଡାକିଲେ ପଦାରୁ, ରମା, ରମା—।

ଜଗନ୍ନାଥଙ୍କ ମନ୍ଦିରରେ ଆଜି ଅଧିକ ଭିଡ଼ । ମଙ୍ଗଳବାର ସନ୍ଧ୍ୟା, ଆରତି ଦେଖି-ବାକୁ କେତେ କୁଳକାମିନୀ ଏକତ୍ର ହୋଇଛନ୍ତି । କେତେ ଭଦ୍ରଲୋକ ମଧ୍ୟ ଅଡ଼େଇ ହୋଇ ଗୋଟିଏ ପାଖରେ ହାତ ଯୋଡ଼ି ଠିଆ ହୋଇଛନ୍ତି । ପୁଅଝିଅ ତୃତୀଣୀ ପିଲା କେତେ ମାଆମାନଙ୍କର କାନି ଧରି ନୋହିଲେ କାଖରେ ଥାଇ ଦେବୀଙ୍କର ଆରତି ଦେଖୁଛନ୍ତି, ପାଟି ଭୁଣ୍ଡ କରୁଛନ୍ତି । ଘଣ୍ଟି ଶବଦରେ କାନ ଅତରା ପଡ଼ୁଛି । ସୁବାସିତ ସୁମନ ଓ ଧୂପ ଧୂଆଁର ମହକରେ ନାସା ଉଲ୍ଲସି ଉଠୁଛି । ମନରେ ଆସୁଛି ନୂତନ ଶକ୍ତି । ଅଭିଳାଷ ପୂରଣର ଆଶା ଜାଗି ଉଠୁଛି ।

ସମସ୍ତେ ଏଠାରେ ସମାନ । ଜାତି, ଧନ, ମାନ, ଆସନ, ଶାସନ ଓ ଅଭି-ମାନ । ଭିନ୍ନ ହେଉଛି ରୂପ, ଭେକ, ବୟସ, ମାନସ ଓ କାମନା । ନାରୀ ମେଳରେ ଜୟଶ୍ରୀ, ଗୋମତୀ, ଇନ୍ଦିରା ଓ ରମା ଦେବୀ ଦର୍ଶନ କରୁଛନ୍ତି । ଗୋମତୀଙ୍କ କାଖରେ ତାଙ୍କର ଦେଢ଼ ବର୍ଷର ସାନ ଝିଅଟି ବଲବଲ କରି ଚାହୁଁଛି । ରମାର କାନି ଧରି ଠିଆ ହୋଇଛି କୁନ୍ । ସିଦ୍ଧ କରି ହରି ପିଅନ ପିଠିରେ ଲଦି ହୋଇ ଆସିଛି । ଇନ୍ଦିରାର ତିନୋଟି ପୁଅ ଆଉ ପାଖେ ଅମର ବାବୁଙ୍କ ଆଗରେ ଠିଆ ହୋଇଛନ୍ତି । ତିନି ଚାରି ଜଣ ଭଦ୍ର ଲୋକଙ୍କ ପରେ ଯୋଡ଼ହସ୍ତ ହୋଇ ଉଭା ହୋଇଛନ୍ତି ହଳଧରବାବୁ ।

ଆରତି ସରିଲା ।

ସମସ୍ତେ ତଳେ ମୁଣ୍ଡ ଲଗାଇ ଓଲଗି ହେଲେ । ଜୟଶ୍ରୀ ମାଗିଥିବେ ପୁଅଟିଏ । ଗୋମତୀ ଚାହୁଁଥିବେ, ସ୍ୱାମୀଙ୍କ ମନରୁ ନାସ୍ତିକତା ଦୂର ହେଉ । ଇନ୍ଦିରାର ମାଗୁଣି ସ୍ୱାମୀଙ୍କର ପଦୋନ୍ନତି ହେଉ । ଅଭାବର ପୋଷଣରେ ସେ ଛଟ ପଟ ହେଉଛନ୍ତି । ସ୍ୱାମୀ ଓ ପିଲାମାନଙ୍କୁ ଭଲକରି ମୁଠିଏ ଖାଇବାକୁ ଦେଇ ପାରୁନାହାଁନ୍ତି । କେଜାଣିବା ଇନ୍ଦିରା କନ୍ୟାଟିଏ ମାଗୁଣି କରୁଛି । ରମାର ଗୁହାରି ସ୍ୱାମୀ ସବୁ ଶୁଭରେ ମନ ଝୁଲିରେ ଶ୍ୱାପଦସଙ୍କୁଳ ଅରଣ୍ୟ ଭିତରୁ ଫେରି ଆସନ୍ତୁ । ଏହା ଛଡ଼ା ସମସ୍ତଙ୍କର ଭଲ ମାଲିଶୀ କାମନା । ସଖିକୁ ଚାହିଁ କେତେ ମାଦ୍ୱକିଳ !

ସମସ୍ତେ ଡକ୍ରୁ ମୁଣ୍ଡ ଟେକି ଉଠିଲେ । ରମା କଡ଼େଇ ଗୃହିଁଲ ଆଗକୁ । ହଲ-ଧର ସ୍ଥିର ଦୃଷ୍ଟିରେ ଗୃହିଁ ରହିଛନ୍ତି ତାହାର ଆଡ଼କୁ । ଗୃର ଚକ୍ଷୁ ମୁହୂର୍ତ୍ତେ ହେଲ ଏକାଠି । ବିଜୁଳି ବେଗରେ ସ୍ମୃତି ଫେରିଗଲ ସାତବର୍ଷ ତଳକୁ ।

—ଭୁବନେଶ୍ୱର । ପାର୍ବତୀଙ୍କ ମନ୍ଦିର । ପାଖରେ ବୋଉ, ଆଗରେ ଭାଇ ଓ ତାଙ୍କ ପାଖରେ ଜଣେ ଅପରିଚିତ ଯୁବକ । ତା'ର ରୂପବୟସର ଦର୍ଶକ, ତା'ର ଭବିଷ୍ୟତର ବଣ୍ଟିରକ ! ସେହି ତ ଏ ହଲଧର, ମନର କଷଟିରେ ପରଖି ଦେଖି-ଥିଲେ । ଭଲ ନୁହେଁ ଭେଲ ବୋଲି ବାପାଙ୍କ ଆଗରେ ମୁହଁ ନେପଡ଼ ଉହୁଁ କହି-ଥିଲେ !

ଆଖି ପଲକରେ ଭାବନା ଦୂର ଅତୀତରୁ ବାହୁଡ଼ି ଆସିଲ । ରମା ଦୃଷ୍ଟି ଫେରାଇଲ । ମନ ଗଗନରେ ହଲଧରଙ୍କର ବର୍ଣ୍ଣିତ କୌତୁହଲୀ ଅନନ୍ତର ଲେଉଟ ଆଖିର ଡୋଳା ଦିଓଟି ଜ୍ୟୋତିରିଙ୍ଗଣ ପରି ଲିଭିଜଳି ଲିଭିଜଳି ଅବଙ୍କର ରହିବହି ରହିବହି ନିଶ୍ୱାସିଆ ପବନରେ ଆଡ଼ ଦଣ୍ଡେ ଖେଳି ବୁଲିଲ । ଥରିଲ ଛାତିରେ ହଜିଲ-ଅଭିମାନ ଉପହାସ କରି ଉଡ଼ି ଛାଡ଼ିଲ । କେଉଁ ଗୁଣରେ ତୁମେ ସମାନ ମ ମୋ'ର କୁନୁ ବାପ ସଙ୍ଗରେ ? ରୂପ, ଗୁଣ, ସାହସ, ଠାଣପଣ ?

ରମା କୁନୁକୁ କାଖ କରି ଛାତିର ଦ୍ରୁତତର ସ୍ପନ୍ଦନକୁ ଉପଶମ କଲ । ଗୋମତୀଙ୍କ ପଛେ ପଛେ ମନ୍ଦିର ବାହାରକୁ ରାସ୍ତା ଉପରକୁ ଆସିଲ ।

କୁନୁକୁ ହରି କାଖ କରି ପଛରେ ଆସୁଛି । ଜୟଶ୍ରୀ ପଛରୁ ଆସି ରମାର ହାତ ଧରିଲ । ଇନ୍ଦିରା ଧରିଲ ଗୋମତୀଙ୍କ ହାତ । ସେ ଅସଜ ମଣିଷ । ଧନ ଓଳ କରେ ପୁଣି ଜନମୀ ହେବ । ତାର ପିଲାଡ଼ିନୋଟି ଅମର ବାବୁଙ୍କ ଉପରେ ସବାର ହୋଇ ଆଗେଇ ଗଲେଣି । କାଖରେ, କାନ୍ଧରେ ଓ ପିଠିରେ ।

ଜୟଶ୍ରୀ କହିଲେ ଗୋମତୀଙ୍କୁ, ଦେଖ ଦେଖ ତାଙ୍କ ପାରିଲ ପଣ । ଆଉ ହାଖଟି ଖାଲି ଅଛି ।

କାହାର ଗୋ ?

ତାଙ୍କ ନାମତ ତୁଣ୍ଡରେ ଧରିବ ନାହିଁ । କିନ୍ତୁ କି ଇନ୍ଦିରା, ତମ ବରିଙ୍କ ନାଁ କଅଣ ? ସେ ମୋ'ଠାରେ ତିନି ପୁଅର ବାପ । ମୁଁ ଆଗ, ଇନ୍ଦିରା ପଛ । ମୋ ପିଲିଙ୍କୁ ଜନମ କରିବା ଦାୟିତ୍ୱଟା ଇନ୍ଦିରାକୁ ଦେଇଛି । ଆଉ ଗୋଟିଏ ହେଲେ ଆଗ-କାଖ ଖାଲି ରହିବ ନାହିଁ । ଅଲଜୁକ ପଣକୁ ତ ସେ ସରିଛନ୍ତି , ହେଲେ ...

ଜୟଶ୍ରୀ କଥା ଅଧା ରଖିଦେଲେ । ହଲଧର ପଛରେ ଆସୁଛନ୍ତି ବୋଲି ତାଙ୍କର ମନେ ପଡ଼ିଗଲା ।

ଇନ୍ଦିରା କହିଲେ, ବଡ଼ ଲୋକଙ୍କୁ ଉତ୍ତର ନାହିଁ । ନୋହିଲେ କହନ୍ତୁ ! ଦିନେ କାଲେତ ଜୟଶ୍ରୀ ଦେବୀଙ୍କର ପାଦଧୂଳି ତାଙ୍କ ପିଲିଙ୍କ ଘରେ ପଡ଼ିଲା ନାହିଁ । ସୁଖ ଦୁଃଖ କଥା ସେ କିପରି ବୁଝିବେ ? ଅବେଇଜ ପିଲଗୁଡ଼ାଙ୍କର ଘୁଅ ମୁତ ଯଦି ସେ କରୁଥାଆନ୍ତେ, ରୋଗବଇରାଗରେ ରାତି ଅନିଦ୍ରା ହୋଇ ଜଗି ବସି ପହରା ଦେଉଥାଆନ୍ତେ, ପେଟକୁ ଅନ୍ନ ଦେହକୁ ବସନ ଯୋଗାଇ ଦେଉ ଥାଆନ୍ତେ, ତେବେ ମୁଁ ଜାଣନ୍ତି କାହିଁକି ତିନିପୁଞ୍ଜା ପିଲା ପେଟରୁ କାଢ଼ି ତାଙ୍କ ମନକଲା ବରିଙ୍କ ଆଗରେ ଥୋଇ ଦିଅନ୍ତି । ତାଙ୍କର ଯେଉଁ ହାଇଁ ପାଇଁଆଁ ମନ, କଙ୍ଗାଳିଆ ଅଲକ୍ଷଣା ସ୍ୱଭାବ, ତାକୁ ଛି କରି ହାତ ଗୋଡ଼ରେ ଆଡ଼େଇ ଦିଅନ୍ତି ନାହିଁ ।

ବାଟ ଚାଲୁ ଚାଲୁ ଇନ୍ଦିରା କଥଗୁଡ଼ା ଟାଉଟାଉ କରି କହିଗଲା । ଦିନ ଓଳିକରେ ଇନ୍ଦିରାର ପିଲପିଲି ହେବ । ଝିଅଟିଏ ପାଇଁ ମାନସିକ କରିଛି । ଦାଣ୍ଡରୁ କୋଳାହଳ ଭିତରେ ସମସ୍ତେ ନୀରବ ହୋଇ ଖଣ୍ଡେ ଦୂର ଚାଲିଗଲେ ।

ରମା ମନେ ମନେ ଖୁସି ହେଲା । ଧଡ଼ିଆ ଧେଡ଼ଙ୍ଗ ମଜନ ମୁହଁୀ ସୁନାଖଡ଼ିକା ଇନ୍ଦିରା ହାଡ଼ଜଳା କଅଁଳ କଥା କହି ପାରେ । କଥାରେ ଆଉଁସି ବଡ଼ ପଣିଆଁରୁ ପ୍ରଚ୍ଛନ୍ନ ଦର୍ପରୁ ଚୋପା ଛଡ଼ାଇ ପାରେ । ଭଲ ହୋଇଛି । ଜୟଶ୍ରୀଙ୍କର କୁହାଁଳିଆ ପଣକୁ ଇନ୍ଦିରା ଭଲ ମାଡ଼ ମାରିଛି ।

ପ୍ରକାରାନ୍ତରରେ ଇନ୍ଦିରା କହି ଦେଇଛି, ତୁମେ ବନ୍ଧ୍ୟା, ତୁମକୁ ତୁମର ସ୍ୱାମୀ ପ୍ରେମ କରନ୍ତି ନାହିଁ । ପର ପିଲଙ୍କୁ ଦେଖି ଡହଳ ବିକଳ ହୁଅ ନାହିଁ । ସେମାନେ ଯେଉଁ ଭଗବାନଙ୍କର ଦାନ, ସେହି ଭଗବାନଙ୍କୁ ସୁମରଣା କର । ଜନନୀ ହେବ ଓ

ଲୁଚିବ, ଦୁଃଖ ଯନ୍ତ୍ରଣା, ଆନନ୍ଦ ଓ ମା ପଣିଆଁର ଗବ' ଉପର ହାତ ଧରାଧରି ହୋଇ ଚାଲନ୍ତି ।

ଉମାର ଓଠ କଡ଼ ଖଣ୍ଡିଆ ବ୍ରଣଟା ପୋଡ଼ି ଉଠିଲା । ଜୟପୁରର ବଡ଼ ଦାଣ୍ଡରେ ଆଗ ପଛ ହୋଇ ବୋଝେଇ ଟ୍ରକ୍ ଦୁଇଟା ଭାରି ବେଗରେ ଛୁଟି ପଳାଇଲା । ସମସ୍ତେ ଆଡ଼େଇ ଗଲେ । ଗୋମତୀଙ୍କ କୋଳରୁ ଝିଅଟିକୁ ଉମା ଟାଣି ନେଇ ଛାତିରେ ଯାକିଲା । କହିଲା, ବେବିକୁ ମୁଁ ବୋହୂ କରିବ । ଲୁନୁକୁ ବାହା କରାଇବ । ବେବି, ତୁ ମୋ ବୋହୂ ହେବୁଟି ? ଉମା ତା' ପୂରିଲା ପୂରିଲା କଅଁଳ ଗାଲରେ ଗେଲ କଲା ।

ଗୋମତୀ କହିଲେ, ମୋ'ର ସେଥିରେ ରାଜି । ସୁକାନ୍ତ ବାବୁ ଟିକା ମନା କରିଦେଲେ, ନୋହିଲେ ସେ ଲିଲି, ମିଲି ଓ ବେବିଙ୍କର ବାପ ହୋଇ ଥାନ୍ତେ । ନ ହେଲେ ନାହିଁ । ବେବିର ଶଶୁର ହେଉନ୍ତୁ । ଯେଉଁ ଦିନ ସେ ମୋ' ସମୁଦି ହେବେ, ସେଇଦିନ ତାଙ୍କୁ ପଚାରିବ, କାହିଁକି ମନାକଲ କହୋ, ସବୁ ମାଇପେ ତ ଏକା ପରିକା ।

ଜୟଶ୍ରୀ ପଚାରିଲେ, ଏବଯାଏ ଝୁରି ହେଉଛ କି ?

ଗୋମତୀ କହିଲେ, ଯେଉଁମାନେ ପ୍ରେମରେ ପଡ଼ି ହତାଶ ହୁଅନ୍ତି—ସେଇମାନେ ଝୁରନ୍ତି । ଝିଅସର ହୁଅନ୍ତି । ବଡ଼ପଣ ଦେଖାଇ ହୁଅନ୍ତି । ଯେଉଁମାନେ ହାତକୁ ହାତ ହେଲା ପରେ ନିଜ ବର ସଙ୍ଗେ ପ୍ରେମରେ ପଡ଼ନ୍ତି, ସେମାନେ ସୁଖରେ ରହନ୍ତି । କେବେ କାହାର କେଉଁଠି ସମ୍ବନ୍ଧ ପଡ଼ିଥିଲା ସେଇ କଥାଟା ମନରେ ରହି ଯାଇ ଥାଏ । ପର ଜୀବନରେ କେବେ ଅଚାନକ ମନେ ପଡ଼ିଲେ କୌତୁକ ଲାଗେ । ହସ ମାଡ଼େ, ଅଛା କରି ପଦେ କହିବାକୁ ପାଟି ଖିଲଖିଲ ହୁଏ ।

ଇନ୍ଦର ବଦାସ୍ତ ନେଇ ବାଟ ଭାଙ୍ଗି ଗଲେ । ଅମର ଗଲ ରାସ୍ତା ମୋଡ଼ରେ ଅପେକ୍ଷା କରୁଛନ୍ତି । ପିଲ ତନହେଁ ରାସ୍ତା ଉପରେ ଠିଆହୋଇ ବୋବାଳ ଛାଡ଼ିଲେଣି । ହଳଧର ଖଣ୍ଡେ ଦୂର ଆଗେଇ ଗଲେଣି । ହରି ବୁନୁର ହାତ ଧରି ତାଙ୍କ ପଛରେ ଚାଲିଛି । ଶୀଘ୍ର ଘରକୁ ଫେରି ଯିବାକୁ ରମାର ମନ ଉଚ୍ଛନ୍ନ ହେଉନି । ଇନ୍ଦର ଯଦି ନଦି ଭାଙ୍ଗିଥିବ ସେ ହଳଧର ଜାଣିଥିବ । ରଙ୍ଗିଆ କି ପାଟକ ତାକୁ ବୁଝାଇ ରଖି ପାରିବେ ନାହିଁ ।

ରମା ଆଗେଇ ଗଲ । ମନରେ ଧାରଣା ହେଲ, ତାଆର ଅନୁପସ୍ଥିତିରେ ବୁନୁ-ବାପା ଫେରି ଆସିଥିବେ । କେତେଥର ଏପରି ଘଟିଛି । ଆଜି କାହିଁକି ନ ଘଟିବ ? ରମାର ଅନୁପସ୍ଥିତିରେ ବସାକୁ ଫେରିଲେ ଦେହରୁ ଜାମା ଯୋତା କାଢ଼ି ଆଗ ଘର ସଜାଡ଼ିବାରେ ଲାଗି ଯାଆନ୍ତି । ମଇଳା ଲୁଗା ପଠା ଭାଙ୍ଗି ବାନ୍ଧି ରଖନ୍ତି । ନିଜ ହାତରେ ଘରଦ୍ୱାର ଓଳାଇ ପରିଷ୍କାର କରନ୍ତି । ନିଜେ ସଫା ସୁତୁରା ହୋଇ କାମ୍ପ ବାହାନାରେ ବୁଲିବାକୁ ଯାଆନ୍ତି । ରଙ୍ଗିଆକୁ ମନାକରି ଦେଇ ଯାଆନ୍ତି, ବାବୁ ଆସିଛନ୍ତି ବୋଲି କହିବୁ ନାହିଁରେ । ଘରଦ୍ୱାର କିଏ ସଫା କରିଛି ପଚାରିଲେ କହିବୁ, ତୁ କରିଛୁ ।

ରଙ୍ଗିଆକୁ ପଚାରିବା ଆବଶ୍ୟକ ହୁଏ ନାହିଁ । ଘର ଭିତରକୁ ପଶିଗଲେ ସମସ୍ତେ ଯେପରି ହସି ହସିକା କହି ଉଠନ୍ତି, ସେ ଆସିଛନ୍ତି । ରମା ଖୁସିହୋଇ ପଚାରେ କେତେ ବେଳେ ସେ ଆସିଲେ ରେ, ଜଳଖିଆ ଦେଇଛୁ ? ମୁଁ ଡାକ୍ତର-ବାବୁଙ୍କ ଘରକୁ ଯାଇଛି ବୋଲି କହିଲୁ ନାହି ? ମୋତେ ଡାକିବାକୁ ଧାଇଁ ଗଲୁ ନାହିଁ ? ପୁଣି ସେ ଗଲେ କୁଆଡ଼େ ? ମାଛଟା ସେ ଆଣିଛନ୍ତି ପରା । କାଟି ଦେଲୁ ନାହିଁ ? ହଉ, ମୁଁ କରିବି । ତୁ ଯା, ତାଙ୍କୁ ଡାକି ଆଣିବୁ ।

ସେ କେଉଁଠିକି ଗଲେ ମତେ କହି ନାହାନ୍ତି ମା ।

କ୍ଲବ୍‌ରେ ବସି ତାଆସ ଖେଳୁଥିବେ । ଅରେ ବୁନୁ, ତୋ'ବାପା ଆଇଲେଣି । ହେଇଟି ଦେଖ୍, କେଡ଼େ ବଡ଼ ମାଛ ଆଣିଛନ୍ତି ।

ରମାର ଚାଲିଚାଲି ଦୋହଲି ମୁଣ୍ଡ ଭିତରେ ଜୋଛନା ଧୂଆ ମନ ପାରିବାରରେ ଭାବନାର ଢେଉ ଖେଳୁଛି ।

ଗୋମତୀ ରମାର ହାତ ଧରିଲେ । ତାର ଭାବନାର ଡୋର ଛିଣ୍ଡିଲା ।

ସେ ରମା କୋଳରୁ ବେବିକୁ ନେଲେ । ବେବି କାହାକୁ ଅଡ଼ୁଆ ବାରେ ନାହିଁ । ଗାଲକୁ ଗେଲ୍ କରି ରମାକୁ ପଚାରିଲେ, ଆଜି ରାତିରେ ସୁକାନ୍ତ ବାବୁ ଫେରିବେ କି ରମା ?

ଜୟଶ୍ରୀ ଉତ୍ତର ଦେଲେ, ରମା ଦେବୀ ଆଜି ନୂଆ ବୋହୂଟିଏ ପରି ଦିଶୁଛନ୍ତି ମ । ମନ୍ଦିର ଭିତରେ ଲୋକେ ଠାକୁରାଣୀଙ୍କ ଦର୍ଶନ କରିବେ କିଅଣ, ରମା ଦେବୀଙ୍କର ଦର୍ଶନ କଲେ । ଦେଖା ପରୀକ୍ଷା ବେଳେ ତାଙ୍କ ମା ଯଦି ରମାକୁ ଏମିତି ସଜାଇ ପାର୍ବତୀଙ୍କ ମନ୍ଦିରକୁ ନେଇ ଥାଆନ୍ତେ ଆଜି ଗୋମତୀ ଆଉ କାହାଘରର ଘରଣୀ ହୋଇ ଥାଆନ୍ତେ ! ଗୋରା ଦେହକୁ ନୀଳ ଶାଢ଼ୀ । ପଥର ବସା ସୁନା ଗହଣା । ବିଜୁଳି ଆଲୁଅରେ ଝଟକି ଉଠୁଥିଲା । ସେପାଖ ମଣିଷଙ୍କ ଅଲକ୍ଷୁକ ବନଶୀ ଆଖି ଲଖି ରହିଥିଲା । ଏପାଖ ମାଇପଙ୍କ ମନ ଈର୍ଷାରେ ଘନ ଘନ କନ କନ ଛନ ଛନ ହେଉଥିଲା । ମା ଜଗତ ଜନନୀ ବି ଅନାଇଁ ରହିଥିଲେ । ଆଶୀର୍ବାଦ କରିଥିଲେ, ରମାର ସାତପୁଅ ସାତଝିଅ ହେଉନ୍ତୁ । ହେବେ ଯେ ।

ରମା ଥରହର କହିଲା, ଜୟଶ୍ରୀ ବି ଆଉ କାହା ଘରର ଶୋଭା ବଢ଼ାଉ ଥାଆନ୍ତେ । ଦୁଇଟା ପିଲଙ୍କ ଅରଦୋଳିତ ମୁଁ କରି ପାରୁ ନାହିଁ, ଏତେ ପିଲଙ୍କ ଅରଦୋଳି କରି ପାରିବି କିପରି ? ମାଆଙ୍କୁ ପ୍ରାର୍ଥନା କରୁଛି । ଆମ ଗୋମତୀଙ୍କ କୋଳରେ ଦଶଟି ପିଲା ଅଜାଡ଼ି ଦେଉନ୍ତୁ । ଜୟଶ୍ରୀଙ୍କ କୋଳରେ ବାରଟି । ଜୟଶ୍ରୀ ବଳେ ବୁଝିବେ ।

ଗୋମତୀ ତୁନି ରହିଲେ ।

ଡାହାଣ ହାତ ଜଗନ୍ନାଥଙ୍କ ମନ୍ଦିର । ବାଁ ପାଖେ ପୁରୁଣା ନନ୍ଦିର । ଆଗରେ ଯରତୀୟକ୍ତ ନୂଆ ନନ୍ଦିର । ଡାହାଣ ପାଖେ ସୁନାରୀ ସାହି ଗଳି । ପୁରୁଣା ନନ୍ଦିରର

ପାଚୀଗ୍ରି କଡ଼େ କଡ଼େ ବାଁହାଡ ଅନ୍ଧାରିଆ ଗଳିଟି ଶିବ ମନ୍ଦିର ଆଡ଼କୁ ପଡ଼ିଛି ।
ବଡ଼ ରାସ୍ତା ଛାଡ଼ି କେତେ ଲୋକ ସେହି ଗଳି ଆଡ଼େ ମୋଡ଼ିହୁଛନ୍ତି ।

ହଳଧର ବଡ଼ରାସ୍ତାରେ ମସ୍‌ଜିଦ୍ ପାଖରେ ଠିଆ ହୋଇ ପଛକୁ ଚାହିଁଛନ୍ତି ।
ଲୁନୁ, ମାଆ ମାଆ ବୋଲି ଡ଼ାକ ଛାଡ଼ୁଛି ।

ହଳଧର କହିଲେ, ସହଳସହଳ ପାଦ ପକାଇଲେ ଭଲ ହେବ ।।

ଜୟଶ୍ରୀ କହିଲେ, ରମା ଚାଲି ପାରୁ ନାହାନ୍ତି ।

ଗୋମତୀ କହିଲେ, ନାଇଁମ, ଜଜ ସାହେବ ତ ଧାଇଁ ଧାଇଁ ଚାଲୁଛନ୍ତି ।
ଆଗେଇ ଯାଇ ଅପେକ୍ଷା କରି ଆଲୁଅ ଖମ୍ବ ପାଖରେ ଠିଆ ହୋଇ ପଛେଇ ଚାହୁଁ
ଛନ୍ତି । ତାଙ୍କ ସଙ୍ଗରେ କିଏ ଧାଇଁ ପାରିବ ? ଆପଣ ଆଗରେ ନଯାଇ ପଛରେ
ଆସନ୍ତୁ । ଦେଖିବେ, ଆମେ କେଡ଼େ ବେଗି ବାଟ ଚାଲିବୁଁ । ଟିକିଏ ଦୂରେଇ
ଚାଲିବେ ହିଁ, ନୋହିଲେ ଆମ କଥା ଆପଣଙ୍କର କାନରେ ପଡ଼ିବ ।

ହଳଧର ଆଡ଼େଇ ଯାଇ କହିଲେ, ହଉ, ପଛରେ ରହିଲି । କାନରେ
ହାତ ଦେଉଛି ।

କର୍ଣେଇ ଚାହିଁଲେ ରମାକୁ । ହସହସ ମୁହଁ । ରମାର ଦୃଷ୍ଟି ପଡ଼ିଲା । ଅଲୁହା
ଅହମିକା ତାଆରି ପାଦରେ ସଂଚାରିଲା ଅଜଣାଶକ୍ତି । ଗୋମତୀଙ୍କ ହାତଧରି ହଳଧର
ବାବୁଙ୍କ କଡ଼ ଦେଇ ସେ ଆଗେଇଗଲେ । ସହଳ ପାଦ ଅଗକୁ ଆଗକୁ ପଡ଼ିଲା ।
ଆପେ ଆପେ କଥା ଖସିଲା ଓଠରୁ, କହନ୍ତ ତମରି ତାଙ୍କୁ, କାନରେ ହାତ ନଦେଇ
ଆଖିରେ ହାତ ଦେଇ ଚାଲିବେ । ଜୟଶ୍ରୀଙ୍କୁ ଚିମୁଟି ଦେଲା ।

ଜୟଶ୍ରୀ କହିଲେ, ଓହୋ, ମତେ କାହିଁକି ଚିମୁଟୁଛ ? ସେ କାନରେ
ଆଖିରେ ହାତ ନ ଦେଉନ୍ତୁ । ଘରକୁ ଗଲେ ତାଙ୍କର ନାକରେ ହାତ ଦିଆଇବି ।

ସମସ୍ତେ ହସିଲେ ।

ପାଖ ଦେଇ କେତେ ଜଣ ନାରୀପୁରୁଷ ଆଗେଇ ଗଲେ । ସମସ୍ତେ ତୁନି
ହେଲେ । ସମସ୍ତଙ୍କର ମନେ ପଡ଼ିଲା ଯେ ସେମାନେ ବାଟରେ ଚାଲୁଛନ୍ତି । ରାସ୍ତା

ଉପରେ ଏଣେତେଣେ ଗଳ୍ପ କରିବା ଓ ଉଚ୍ଚହାସ୍ୟ କରିବା ଭଦ୍ରଘରର ନାରୀ ସୁଲଭ ପ୍ରକୃତି ନୁହେଁ । ମାଦଳା ସାହି ଆହୁରି କେତେ ଦୂର ଅଛି ।

ଆଗେଇ ଚାଲିଲେ । ଅସ୍ୱାଭାବିକ ନୀରବତା ସୂଚାଇ ଦେଲା, ସମସ୍ତେ ନିଜ-ନିଜର ଭାବନା ବିଭୋର ।

ମନର ସରଗ ମଉଳିଲା । ସ୍ୱାମୀ ଫେରି ନାହାନ୍ତି । ଫେରିବେ ବୋଲି ଖବର ପାଇ ନଥିଲେ ମଧ୍ୟ ଅବୋଧ ମନ ତାଙ୍କୁ ଡାକ ଛାଡ଼ୁଥିଲା । ଅବଶ୍ୟ ତାଙ୍କର ମନ ଶୁଣି ପାରିଥିବ । କାମ କାର୍ଯ୍ୟ ମଝିରେ ବୁଡ଼ି ରହି ପାସୋରି ଯାଇଥିବେ । ସେ ଶୁଭରେ ଫେରନ୍ତୁ, ମା' ଜଗତ ଜନନୀଙ୍କ ପାଖରେ ଏହି ପ୍ରାର୍ଥନା କରି ଆସିଛି । ଆଉ ତା'ର ଚିନ୍ତା ନାହିଁ ।

ଇରା ପଲଙ୍କ ଉପରେ ଶୋଇ ପଡ଼ିଛି । ପାର୍ବତୀ ବିଦାୟ ନେଇ ନିଜ ଘରକୁ ଫେରିଗଲା । ହରି ଗୋମତୀଙ୍କୁ ଛାଡ଼ି ଆସିବାକୁ ଯାଇଛି । ଗଡ଼ିଆ ସାହି ବେଶି ଦୂର ନୁହେଁ । କୁନୁକୁ ଗିଲାସେ କ୍ଷୀର ପିଇଦେଲା ସେ ଶୋଇ ପଡ଼ିବ । ପ୍ରସାଦ ପାଇଛି । ଭାତ ନ ଦେବା ଭଲ । ରମାର ଭୋଜନ କରିବାକୁ ଆଗ୍ରହ ନାହିଁ, କିନ୍ତୁ ପରବାସିଆ ଘରେ ଘର-ଘରଣୀ ଉପାସ ରହିବା ଅମଙ୍ଗଳ କଥା । ଜଙ୍ଗଲ ଭିତରେ ଛୋଟ ବଙ୍ଗଳାରେ କ'ଣ ଆଜି ସେ ଖାଇଥିବେ ?

ରାତି ଦଶଟା । ଏଥର ସେ ଶୋଇବାକୁ ଯିବ । ହରି ଓ ରଙ୍କିଆ ଦାଣ୍ଡଘରେ ଶୋଇ କଥାଭାଷା ହେଉଛନ୍ତି । ଡରଭୟର ପ୍ରଶ୍ନ ଉଠୁ ନାହିଁ ।

ରମା କବାଟ କିଳିଲା । ଓଠ ଉପର ଖଣ୍ଡିଆ ବ୍ରଣ ଅଧିକ ଜଳୁଛି । ଓଠଟା ମାଡ଼ି ମାଡ଼ି ପଡ଼ୁଛି । ରମା ବ୍ୟସ୍ତହୋଇ ଆଇନା ଟେକି ଦେଖିଲା । ଆରେ, ବ୍ରଣଟା ଚମ ଭିତରେ କେତେ ବଡ଼ ହୋଇ ଫୁଲି ଉଠିଲାଣି । ଫୁଲ ଆଖିତଳ ଯାଏ ମାଡ଼ି ଗଲାଣି । ସ୍ନୋ ଟିକେ ଲଗାଇ ଦେଲେ ଥଣ୍ଡା ଲାଗିବ । ଭଲ ହୋଇଯିବ ।

ରମା ସେଇଆ କଲି । ଏତେ ଦୂର ଚାଲିଚାଲି ଯାଇ ଦେବୀଙ୍କ ଦର୍ଶନ କରି ସେ ଫେରିଛି । କ୍ଳାନ୍ତ ଅନୁଭବ କରୁଛି । ଲୁଗା ପାଲଟିବାକୁ ଦେହରେ ବଳ ନାହିଁ । ବ୍ରଣଟି ଥଣ୍ଡା ଲଗିଲଣି । ଫୋଡ଼ା ଜଳା କମିଲଣି । ମୁଣ୍ଡ ବୁଲଉଛି ।

ରମା ଏ ଘରର ଆଲୁଅ ଲିଭାଇ ଆର ଘରକୁ ଗଲା । ପିଲା ଦୁଇଟି ଶାନ୍ତିରେ ଶୋଇଛନ୍ତି । ରମା ଟର୍ଚ୍ଚ ଆଲୁଅ ହାତରେ ଧରି ବିଜୁଳି ଆଲୁଅ ଲିଭାଇଲା । ଟର୍ଚ୍ଚ ଜାଳି ପଲଙ୍କ ଉପରକୁ ଉଠି ଦୁଇ ପିଲାଙ୍କ ମଝିରେ କ୍ଳାନ୍ତ ଦେହ ଲମ୍ବାଇ ଦେଲା । ଆଲୁଅ ଲିଭାଇ ତକିଆ କଡ଼ରେ ରଖିଲା । ଆଖି ବୁଜିଲା ।

ମନେ ପଡ଼ିଲା, କେଡ଼େ ଭୁଲ୍ ସେ ନ କରିଛି ସତେ । ସୁଟ୍-କେସ୍‌ରେ ଟର୍ଚ୍ଚ ଦେଇ ନାହିଁ । ଅନ୍ଧାର ରାତି । ମଶାରି ନାହିଁ । ଆଲୁଅ ନାହିଁ । ପାହାଡ଼ ଗଡ଼ାଣୀ ଝରଣା କୂଳ ନିବିଡ଼ ଅରଣ୍ୟ ମଝିରେ ଛୋଟ ବଙ୍ଗଳା ଘର । ଉପରେ ଚାଳ । ପୁରୁଣା । ମାଟିକାନ୍ଥରେ ଗାତ ଥିବ । ନନ୍ଥାଁଣି । କବାଟ ଖୋଲି ପଦାକୁ ବାହାରିଲେ ବାଘଭାଲୁ ଡର । ନଶା ଗର୍ଜୁଥିବ । ଭୂତପ୍ରେତ, ବଣ ପାହାଡ଼ର ଦେବା ଦେବୀ, ଆତଯାତ ହେଉଥିବେ ।

ଭୟଙ୍କର କଥା । ଚାଣ୍ଡାଳୁଣୀ ମୁଁ ନ ମଲି କାହିଁକି ? କେଡ଼େ ଭୁଲ ମୋ'ର ମନ । କିପରି ନିଶ୍ଚିନ୍ତ ହୋଇ ଶୋଇବ ?

ରମା ଛଟପଟ ହୋଇ ଉଠି ବସିଲା । ଅନ୍ଧାର ଘର ଭିତରେ ସତେ କି ସେ ମଶାରି ବାହାରେ ଠିଆ ହୋଇଛନ୍ତି ।

ତୁମେ ମତେ ଭଲପାଅ ନାହିଁ, ରମା । ତୁମକୁ ମୁଁ ଚାହିଁଥିଲି । ଜୀବନ ସଙ୍ଗିନୀ କରି ଆଣିଥିଲି । ସୁଖୀ କରିବାକୁ ଆପ୍ରାଣ ଚେଷ୍ଟା କରିଛି । ନିଜକୁ ସମର୍ପି ଦେଇଛି । କିନ୍ତୁ ତମେ ତ ମୋତେ ଚାହିଁ ନ ଥିଲ ।

ତମର ଓ ମୋ ର ଆଗରୁ କେବେ ଦେଖା ସାକ୍ଷାତ ହୋଇ ନ ଥିଲା, ରମା, ତୁମର ପିତାମାତା ତୁମର ମତାମତ ଚାହିଁ ନ ଥିଲେ । ଯଦି ଚାହିଁଥାନ୍ତେ ତୁମେ ହୁଏତ ମନା କରି ଦେଇଥା'ନ୍ତ । ତୁନି ରହି ଅସମ୍ମତି ପ୍ରକାଶ କରିଥାଆନ୍ତ । କିନ୍ତୁ ସେମାନେ ମୌନଂ ସମ୍ମତି ଲକ୍ଷଣଂ ଭାବି ଯାହା ଆଜି ହୋଇଛି, ସେଇଆ କରି

ଥିଲେ । ସେମାନେ ଗୋଟିଏ ପୁରୁଷ ଆଗର ଲୋକ । ସେମାନଙ୍କର ଧାରଣା ଯାହାର ଯିଏ ତା'ର ସିଏ ଅବଶ୍ୟ ହେବ ।

ପତି ପରମ ଗୁରୁ । ପରମ ଦେବତା । ପତ୍ନୀ ଗୃହ-ଲକ୍ଷ୍ମୀ । ସେମାନେ କେବଳ ଏହା ଶିଖି ନ ଥିଲେ, ମନ ଓ ପ୍ରାଣରେ ଅନୁଭବ କରୁଥିଲେ । ପରସ୍ପରର ଭୁଲ-ଭ୍ରାନ୍ତିକୁ ନଜର କରି ନେଉଥିଲେ । ପରସ୍ପରର ଅଲଗା ଦେହ କେବେ ସିନା ପାଖେଇ ଆସୁଥିଲା, ଏକାଠି ହେଉଥିଲା, କିନ୍ତୁ, ମନ ଓ ସହାଗ ଛନ୍ଦାଛନ୍ଦି ହୋଇ ଏକାକାର ହୋଇଥିଲା । ଜଣକ ପ୍ରତି ଅନ୍ୟ ଜଣକର ଅଜଣା ଅନ୍ୟମନସ୍କ ତ୍ରୁଟି ପାଇଁ, ଦୁଇଟି ମନ ବ୍ୟାକୁଳ ଛଟପଟ, ଉଦ୍‌ବେଳବିକଳ ହେଉଥିଲା ।

ହଁ, ରମା, ଏବକାଳର ବିବାହ ମିଳନ କେବଳ ଦେହ ପାଇଁ ବୋଲି ଆମେ ଗ୍ରହଣ କରୁଛୁ । ସାମାଜିକ ନିୟମ, କୁଳର ପ୍ରଥା, ମାନସମ୍ମାନ ବ୍ୟାହତ ହେବାର ଭୟ, ଦୁନିଆଁର ସମାଲୋଚନା ଡର, ଉଭୟଙ୍କୁ ଗୋଟିଏ ଘରେ ବନ୍ଦୀ କରି ରଖିଛି । ଦୁଇଟି ଦେହ ଏକାଠି ହେଉଛି । ପିଲାଛୁଆ ସଂସାରକୁ ଆସୁଛନ୍ତି । ଦୁଇଟି ମନ ଦୂରେଇ ରହୁଛି । ପରସ୍ପରର ସ୍ୱାର୍ଥ, ପିଲାଛୁଆଙ୍କୁ ମଣିଷ କରିବାର ଦାୟିତ୍ୱ, ଗୋଟାଏ ଜାଲ୍ ଜୀବନର ଅଭିନୟ କରାଉଛି; ସେହି ଜୀବନ ଓ ଚଳନରେ ପ୍ରକୃତ ପ୍ରେମର ପରଶ ନାହିଁ । ସେଇଥିପାଇ ତୁମର ସବୁ ତ୍ରୁଟି ମୁଁ ଲକ୍ଷ୍ୟ କରୁଛି । ତୁମେ ମତେ ଗ୍ରହି ନ ଥିଲ । ତୁମେ ଯାହାଙ୍କୁ ଗ୍ରହିଥିଲ, ସେଇ ହଲଧର ତୁମର ଆଗରେ ଅଛନ୍ତି !

ରମା ଦୁଇହାତରେ ନିଜ ମୁଣ୍ଡକୁ ଧରି ଅନ୍ଧାର ଘରେ କାନ୍ଦି ଉଠିଲା । ମୁଣ୍ଡ ହଲଇ କହି ଉଠିଲା, ନା,ନା,ନା— ।

ତୁନି ହେଲା । ଶ୍ୱଶୁର କୋହ ଚାପି ମନ ଭିତରେ କହିହେଲା, ମୋତେ ତୁମେ ଏପରି ଭୁଲ ବୁଝ ନାହିଁ । ମୁଁ କାହାକୁ ଗ୍ରହି ନ ଥିଲି । ମୋତେ ଯିଏ ନଜର କରି

ଅଣିଛ, ମୁଁ କେବଳ ତା'ର । ସିଏ ମୋ'ର ସ୍ୱାମୀ । ମୋର ସର୍ବସ୍ୱ । ମୋ'ର ଚଳନ୍ତି-ଦେବତା । ସବୁ ବ୍ୟାକୁଳତା ସତ୍ତ୍ୱେ ତୁମର ସେବା ମୁଁ କରି ପାରୁ ନାହିଁ । ମୋ'ତେ ଆସୁନାହିଁ । ପ୍ରେମ କଅଣ ମତେ ଜଣାନାହିଁ । ମୋ ମନରେ ତୁମ ବ୍ୟତୀତ ଆଉ କାହାର ସ୍ଥାନ ନାହିଁ ।

କିଏ ସେ ହଳଧର ? ତାଙ୍କୁ ମୁଁ ଚିହ୍ନେ ନାହିଁ । ଆମେ ତ ଝିଅ । ମୋ ପରି କେତେ ଝିଅ ପରଘରେ ଘରଣୀ ହେଲେଣି । କେତେ ବା ପିଲାଙ୍କର ଜନନୀ ହେଲେଣି । ଦାଣ୍ଡକୁ ବାହାରିବାର ସ୍ୱାଧୀନତା ତୁମେମାନେ ଦେଇଛ, ହାତେ ଓଢ଼ଣୀ ଟେକି ମୁଣ୍ଡ ଉପରେ ରଖିବାକୁ ତୁମେ କହୁଛ । ତୁମେ ପୁଣି କହୁଛ, ମୁଣ୍ଡ ଯତ୍ନକରି ବାନ୍ଧ । ମୁହଁରେ ପାଉଡର ବୋଳ । ଓଠରେ ରଙ୍ଗ ଲଗାଅ । ଆଖିରେ କଜଳ ଦିଅ । ନଖରେ ନାଲିପୁଟି ଚଢ଼ାଅ । ପଦରେ ଅଳତା ମଣ୍ଡ । ଦେହକୁ ରଙ୍ଗଚଙ୍ଗର ସେମିଜ୍ ବ୍ଲାଉଜରେ ଅଧା ଘୋଡ଼ାଅ, ଅଧା ଦେଖାଅ । ରଙ୍ଗଚଙ୍ଗର ସୂକ୍ଷ୍ମ ଶାଢ଼ୀ ଆବୃତ କର । ରଙ୍ଗଚଙ୍ଗର ପଥରବସା ଗହଣା ସର୍ବାଙ୍ଗରେ ମଣ୍ଡ ।

ତୁମ କଥା ନ ମାନିଲେ ତୁମେ ମୁହଁ ଶୁଖାଅ । କଥା ମାନିଲେ ତୁମେ ଖୁସି ହୁଅ । ପଦାକୁ ବାହାରିଲେ ତୁମ ପରିକା ସହସ୍ର ଲୋକଙ୍କ ଡେରିଛ ଗୃହାଣୀ ଉପରେ ପଡ଼େ । ଗୃହାଣୀତ ନୁହେଁ, ବନସୀ । ସେ ଗୃହାଣୀ ଗୋଟାଏ ଗିଳି ପକାଇବାକୁ ଆଗ୍ରହ ପ୍ରକାଶେ ।

ହଳଧରଙ୍କର ଗୃହାଣୀ ସେମିତକା ।

ତାଙ୍କର ପରି ଆହୁରି କେତେ ଭଦ୍ରଲୋକ—ଯୁବକ, ପ୍ରୌଢ଼ ଓ ବୃଦ୍ଧ ମନ୍ଦିର ଭିତରେ ଥାଇ ଦେବୀଙ୍କର ଦର୍ଶନ କରୁଥିଲେ । ସେମାନେ ଯୋଡ଼ ହସ୍ତ । ଦୃଷ୍ଟି ଭ୍ରମି ଯାଉଥିଲା । ସେ ସବୁ ଦୃଷ୍ଟି ହୁଏତ ଉଦ୍ଦେଶ୍ୟ ହୀନ । କେଉଁଣିବା, କୌତୁକ ପୂର୍ଣ୍ଣ, କୁତୂହଳ ପୂର୍ଣ୍ଣ । କେତେ ଦୃଷ୍ଟିରେ ସଂକେତ ଓ ଆଶଂକା ପୂର୍ଣ୍ଣ । ହଳଧରଙ୍କର ଦୃଷ୍ଟି ନିର୍ଲଜ । ଲାଳସାରେ ଜର୍ଜରିତ ।

କାହିଁକି ? ଏକଥା ତୁମକୁ ଅଜଣା ନାହିଁ । ନିଜର ଲାଳସାର ହଳାହଳକୁ ନିଜେ ସେ ପାନ କରିଛନ୍ତି, ନିଜେ ସେ ବିଷେଇ ହୁଠନ୍ତି । ସେଥିରେ ତୁମର

କଅଣ ଥାଏ, ମୋର କଅଣ ଥାଏ ? ଜୟଶ୍ରୀଙ୍କର ରୂପ ଯୌବନକୁ ସବୁବେଳେ ସଜ ସତେଜ ଓ ଚଳଚଳକା ମୋହନୀୟ କର ହଳଧରଙ୍କର ଓଲେଇ ଆଗ୍ରହକୁ କେବଳ ନଜ ଗୃହପାଖେ ବେଙ୍ଗଲା ପକାଇବାର ସବୁ ଉଦ୍ୟମ ବିଫଳ ହୋଇଛି ।

ସେ ନ ଜାଣନ୍ତୁ, ମୁଁ ଜାଣିଛି, ତୁମକୁ କହୁଛି । ତୁମେ ବିଶ୍ୱାସ କର । ପତ୍ନୀ ପାଇଁ ଅସରନ୍ତି ପ୍ରେମର ସେ ଅନୁନୟ କରୁଛନ୍ତି । ନଜ ପାଖରେ ପ୍ରତି ମୁହୂର୍ତ୍ତିରେ ସେ ନଜର ଅଣାୟତ୍ତ ମନ ପାଇଁ ଦୋଷୀ ହେଉଥିବେ । ନଜେ ପୁଣି ସେ ବିଚ୍ଛୁରକ । ଏତେ ଲୋକଙ୍କୁ ଦଣ୍ଡ ଦେଉଛନ୍ତି । ନଜ ପାଇଁ ସେ କେଉଁ ଦଣ୍ଡର ବ୍ୟବସ୍ଥା କରଛନ୍ତି ତେମେ ଜାଣକ ?

ଭାବନା ଭିତରେ ଅଗ୍ରହୀ ସୁକାନ୍ତ ପଶୁରୁଛନ୍ତି, ମୁଁ ଜାଣେ ନାହିଁ, ତୁମେ ଜାଣି ଚ କୁହ ।

କହବ ? କାମନାର ଅନଳ ଜଳାଇ ନଜକୁ ସେଥିରେ ତିଳ ତିଳ କରି ପୋଡ଼ି ଛଟପଟ ହେଉଛନ୍ତି । ହେଉନ୍ତୁ, ସେଥିରେ କାହାର କ ଥାଏ ?

ତୁମେ ମୋର ସୁନା ମୁଣ୍ଡା—କଠୋର ଓ ନର୍ମଳ । ତୁମର ଝାଣ ପଣକୁ ମୁଁ ଛଳ କରେ ନାହିଁ । ମୁଁ ଜାଣେ, ତୁମେ ଅଭନୟ କର ନାହିଁ । ମନ ରଖା କଥା ଜାଣ ନାହିଁ । ତୁମ ମନକୁ ମୋ କାମ ନ ଆସିଲେ ତୁମେ ରାଗ, ଗାଳ ଦଅ, ଫୋପଡ଼ାକଚଡ଼ା କର । ଅଭମାନ କର ଦୂରକୁ ପଳାଅ । ଆପେ ଆପେ ପୁଣି ଫେରି ଆସ । ଗୋଳେଇ ହୁଅ ।

ମୁଁ ସବୁ ଜାଣେ । ଅଭମାନ କରବ ତମ ଉପରେ ? ନାଁ, ପାରବ ନାହିଁ । ଆସ ମ ପାଖକୁ । କାହାପର ସେଠି ମୁହ ଶୁଖାଇ ଠିଆ ହୋଇଛ କାହିଁକ ? ମୋର ଅପାରଗତା, ଅଶିକ୍ଷା, ଅସାବଧାନତାକୁ କ୍ଷମା କରମ ।

ସୁକାନ୍ତ ପାଖକୁ ଆସିଲ ।

ମଶାରି ଠେଙ୍ଗ ପାଖରେ ବସିଲ । ବାହାରେ ଅନ୍ଧାର । ମନମହଲରେ ସହସ୍ର

ସ୍ପୀପାଳ କରୁଛ । ସୁକାନ୍ତ ରମାର ମୁହଁ ଟେକି ହସ ହସ ହୋଇ ଗେହ୍ଲେଇ ପଗ୍ଗରିଲ, ରାଗିଲ କି ? ସେତେବେଳେ ମୁଁ ମୋ ନିଜ ଭିତରେ ନ ଥିଲି । ମୋ ମନ ପାହାଡ଼ ତଳ ଘନ ଅରଣ୍ୟ ମଝିରେ ବୁଲୁଥିଲା । ସେଠାରେ ସହସ୍ର ଲୋକ କାମ କରୁଛନ୍ତି, ନିର ଝରଣାକୁ ପୋଷା ମନାଇବାକୁ ମଝିରେ ବନ୍ଧ ପକାଉଛନ୍ତି । ନାଳ ଖୋଳୁଛନ୍ତି । କେତେ ଭୂମିରେ ପାଣି ମାଡ଼ିବ । କେତେ କୃଷକଙ୍କ ଜମିରେ ଦ୍ୱିଗୁଣ ଫସଲ ଫଳିବ । ସେମାନେ ସୁଖରେ ଆନନ୍ଦରେ ଘର ସଂସାର କରିବେ । ମୁଁ ବି ଉପରିକମାନଙ୍କଠାରୁ ପ୍ରଶଂସା ପାଇବି । ପଦୋନ୍ନତି ପାଇଁ ସୁପାରିସ୍ ପାଇବି । ପଦୋନ୍ନତି ହେବ । ଆମେ ମଧ୍ୟ ସୁଖରେ ରହିବା, ରମା ।

ଅଭିମାନ କଲକି ? ମୋର କେତେ ରାଗ ରୋଷ ତ ତୁମେ ସହୁଛ । କାଲିକା ଘଟଣା ପାଇଁ ମୁହଁ ଶୁଖାଉଛ, ରାତି ଅଧରେ କାନ୍ଦୁଛ ? ରମା, ତୁମେ ମୋର ସବୁ ପାଗଳାମୀ ତଗଲପଣିଆ ସହୁଛ ବୋଲି ତ ମୋର ଅତି ସ୍ନେହ ଆଦରର ଅମୂଲ୍ୟ ମଣି ହୋଇ ଛାତି ତଳେ ସଦାବେଳେ ଝଟକୁଛ । ମୋର ଅତି ଆପଣାର ହୋଇ ପାରିଛ ।

ସଂସାରରେ ଆଉ କିଏ ଅଛି କହତ ରମା, ଯିଏ ମୋର ଅଳଅର୍ଦ୍ଦଳି ଓ କଥା ଅକଥାରେ ରାଗ ରୋଷ ସହି ପାରିବ ? ମୋର ସବୁ ଦୁର୍ବଳତାକୁ ହଜମ କରି, ମାନ ଅଭିମାନକୁ ପଛକୁ ପକାଇ ହସି ହସିକି ଆଗକୁ ଆସିବ ? ଥରଟିଏ ମନକଣା ଶୁଣାଣୀରେ ସବୁଦୋଷ କ୍ଷମା କରି ମୋର ମନ ଓ ଆତ୍ମାକୁ ଓଠାରି ନେଇ କୋଳ କରିବ, ଗେଲ କରିବ ? ଆଉ କେହି ନାହିଁ । ଏକା ତୁମେ ।

ମୁହଁ ଟେକତ, ହସ, ଥରଟିଏ ହସ । ହସିବ ନାହିଁ କିପରି ଦେଖିବି ରହ ।

ସୁକାନ୍ତ ରମାର ଲୁହଧୁଆ ମୁହଁରେ ଗେଲ କଲା । ସବୁ ଅଭିମାନ, ଦୁଃଖ ଓ ସନ୍ଦେହ ତା'ର ବାହୁ ବନ୍ଧନର ପରଶରେ ଦୂର ହୋଇ ଗଲା । ରମାର ଦେହ ମନ ଓ ଆତ୍ମା ଉଲ୍ଲସିତ ହେଲା ।

ସେ ଭାବିଲା, ଦେହଟି ତାଙ୍କର ଦୂରରେ ଥିଲେ ବି ମନଟିତ ଏଇଠି ଅଛି । ଏଇ ଅନ୍ଧାର ଘରର ମଶାରି ତଳେ, ରମାର ଭିତରେ ଓ ବାହାରେ । ଆଉ

ତାଙ୍କର ଦେହ ଓ ମନରୁ ଉଦ୍ଭବ, ସ୍ନେହ ସହାଗ ଆଶା ଆକାଙ୍‌କ୍ଷାର ଉପାଦାନ ନେଇ ଗଢ଼ା ହୋଇଛନ୍ତି ରମାର ଉଦରେ, ରମାର ରକ୍ତ ମାଂସରେ ଯେଉଁ ନୂଆ ମଣିଷ ହଳକ—ଭୁନୁ ଓ ଇରା, ନା, ସୁକାନ୍ତ ଓ ରମା, ସେ ହଳକ କେଡ଼େ ନିଶ୍ଚିନ୍ତରେ ଶୋଇଛନ୍ତି ।

ରମା ଆଖିରୁ ଲୁହ ପୋଛି, ପୁଣି ବିଛଣାରେ ଶୋଇଲା । ଦୁଇ ପାଖକୁ ହାତ ଲମ୍ବାଇ ଭୁନୁ ଓ ଇରାଙ୍କର ପିଠି ଥାପଡ଼ିଲା । ସବୁ ରାଗ ରୋଷ ମାନାଭିମାନ ମନରୁ ଅପସରିଲା । ତେଣୁ ଉଠିଲା ବ୍ୟାକୁଳତା—ଅନ୍ଧାର ରାତିରେ ବିନା ମଶାରି ଓ ଆଲୁଅରେ କିପରି ସେ ରହିଥିବେ ? ଦୁଇହାତ ଆଣି ମୁଣ୍ଡରେ ଲଗାଇ ମନେ ମନେ ଡାକ ଛାଡ଼ିଲା, ମା ଗୋ ଜଗତ୍ ଜନନୀ, ତୁମର ଚରଣତଳେ ମୁଁ ଶରଣ ପଶୁଛି । ମାଗୁଣି କରୁଛି, ତୁମର ଦୟା, ତୁମର ଶୁଭ ଦୃଷ୍ଟି ତାଙ୍କର ଉପରେ ରହୁ । ଆପଦ ବିପଦ ଆଡ଼େଇ ଯାଉ ।

ମନରେ ବଳ ଆସିଲା । ଛାତିର ସ୍ପନ୍ଦନ ସ୍ୱାଭାବିକ ହେଲା । କିନ୍ତୁ, ଡାହାଣ ଆଖିର ଭ୍ରୂଲତା ଓ ପତା ମାଡ଼ ମାଡ଼ ପଡ଼ୁଛି । ଓଠ ଉପର ଖଣ୍ଡିଆ ବ୍ରଣଟା ବେଶି ପୋଡ଼ୁଛି । ବେଶି କଟକଟ ହେଉଛି । ସ୍ନୋର ଶୀତଳତା ଆଉ ନାହିଁ ।

ଚନ୍ଦନ ଘୋରି ଲଗାଇ ଦେବ କି ? ରଙ୍ଗିଆକୁ ଡକି ଡାକ୍ତରଙ୍କ ପାଖକୁ ଖବର ପଠାଇବ ? ଏତେ ରାତିରେ ସେ ଆସିବେ ?

ରମା ଅସ୍ଥିରତା ଅନୁଭବ କଲା ।

ହାତ ବଢ଼ାଇଲେ ରମା ଘୁଞ୍ଚି ଘୁଞ୍ଚି ଯାଉଛି । ସିଧା ସଳଖ ମୁହଁକୁ ଚାହେଁ ନାହିଁ ! ନିରେଳାରେ ଭୁନ ଭୁନ କାନ୍ଦି ଆଖି ମୁହଁ ଫୁଲିଲା ପରି ଦିଶୁଛି । ସୁନ୍ଦର ସୁଠାମ ନାସିକାଟି ଲାଲ ଦିଶୁଛି । ଓଠ ପତା ଥରି ଥରି ଉଠୁଛି । ତଥାପି ସେ ନିଜକୁ ସଜାଇଛି । କେଜାଣିବା ତାର ବାନ୍ଧବୀ ଗୋମତୀ ତାକୁ ସଜାଇ ଦେଇଛି

ଥିବେ । ଗୋମତୀ ସବୁ ଜାଣନ୍ତି । ରମା ନିଜେ ନିଜର ଯତ୍ନ ନେଇ ପାରେ ନାହିଁ । ସେଇଥି ପାଇଁ ତା'ର ଚନ୍ଦ୍ରୋଦୟଅଁ ଝିଟିକିଲି ମୋହିନୀ ରୂପ ବିକଶିତ ହୁଏ ନାହିଁ । ସୁକାନ୍ତ ବିରକ୍ତ ହୁଏ ।

ଗୋମତୀଙ୍କୁ ବିବାହ କରିବାକୁ ସେ ମନା କରି ଦେଇଥିଲି । ଗୋମତୀ ସୁନ୍ଦର କି ଅସୁନ୍ଦର, ତାଙ୍କର ବିଦ୍ୟାବୁଦ୍ଧି କେତେ, ଚଳଣୀ ଢଙ୍ଗ କିପରି ଏ ସବୁ ବିଷୟ ସେ କେବେ ଭାବି ନଥିଲି । ସେତେବେଳେ ଏ ସବୁ ବିଷୟର ଚିନ୍ତା ସୁକାନ୍ତର ମନରେ ପ୍ରବେଶ କରି ନ ଥିଲି ।

ଟଙ୍କିବ ଚାଷୀ ଘରର ପିଲାଟି, ଅଭାବ ଅସୁବିଧା ଓ ପାଖଲୋକ, ନିଜଲୋକଙ୍କ ଘଟଣା ବାଧାବିଘ୍ନକୁ ଡେଇଁଡେଇଁ ଆଗେଇ ଆସିଛି । ଜୀବନ ସୁରୁଖରୁରେ କଟି ନାହିଁ । ସେ ଅଟକିଛି । ଆଗର ପ୍ରତିବନ୍ଧକ ଅଲଙ୍ଘନୀୟ ବୋଲି ମନେ ହୋଇଛି । ଧୈର୍ଯ୍ୟଧରି ପୁଣି ଦ୍ୱିଧା ସଳଖି ଚାଲିଛି ଅବା ପ୍ରତିବନ୍ଧକକୁ ଅଡ଼େଇ ଆଗେଇ ଚାଲିଛି ।

ସେ ଝୁଣ୍ଟିଛି । ତଳେ ପଡ଼ିଛି । ଖଣ୍ଡିଆ ଖାବରା ହୋଇ, ଲହୁଲୁହାଣ ହୋଇ ଅଟକିଛି ! ଦୁନିଆଁର ଲୋକେ ହସିଛନ୍ତି । ଫେରିଆ ବୋଲି ଈର୍ଷାମିଶା ସହାନୁଭୂତି ଦେଖାଇ ତାକୁ ଛାଡ଼ିଛନ୍ତି । ହାତ ବଢ଼ାଇଛନ୍ତି । ଥରିଲି ଡରିଲି ଛାତି ଆକୁଳ ବିକଳ ନିବେଦନ କରିଛି । କହୁଛି, ସେତିକି ଥାଉ, ଫେରି ଚାଲ ।

ମନର କାମନା ନିଜର ଅଜାଣତରେ ଆଗକୁ ଠେଲିଛି । ଆଗକୁ ବଢ଼ିଛି । ପଦେ ପଦେ କଣ୍ଟାଝଣ୍ଟା । ଅଡ଼େଇ ଚାଲିଲେ ମଧ ଗୋଡ଼ରେ ଭୁଙ୍କେ, ଗୋଡ଼ରେ ଛିନ୍ନ ହୁଏ ।

ଏ ଦୁନିଆଁ ଏଇଆ । ଏ ଜୀବନ ଏଇଆ । ଯେ ସହେ ସେ ରହେ । ଅଧୀର ଅସ୍ଥିର ହୋଇ, ବିଚଳିତ ବିବ୍ରତ ହୋଇ ନିଜକୁ ଯେ ଦହେ, ସେ ପଛେଇ ଯାଏ । ଅଲୋଡ଼ା ଅପୂଛା ହୋଇ ବିସ୍ମୃତିର ଅନ୍ଧାରୀ ଗୁହାରେ ସେ ସମାଧି ନିଏ ।

ଏହାହିଁ ସେ ଦେଖିଛି । ନିଜକୁ, ନିଜର ଅତୀତ ଅନ୍ଧାର ଭିତରେ ଆତଯାତ ହୋଇ ଆଗେଇ ଆସିବାର ସେ ଦେଖି ପାରୁଛି । ସବୁଘଟଣା, ସବୁ ଅନୁଭୂତି ଓ ସେ ସବୁ ସଙ୍ଗରେ ଯେଉଁ ପରିସ୍ଥିତି ଓ ଯେଉଁ ସବୁ ଲୋକଙ୍କର ସମ୍ପର୍କ ଏବଂ ପ୍ରଭାବ

ପଡ଼ୁଥିଲ, ଆଜ ତାହା ମନେ ପଡୁନାହିଁ । ଯାହା ଦେହରେ ଓ ମନରେ ଗଭୀର ଗାର ଟାଣିଥିଲ, ତାହାହିଁ ମନେ ପଡୁଛି, ଆଖିରେ ଅସ୍ପଷ୍ଟ ହୋଇ ଦେଖା ଯାଉଛି ।

(

ଦରିଦ୍ର କୃଷୀ ଘରର ପୁଅ ସେ । ପଦବୀ ମହାପାତ୍ର । ଭୁଜଙ୍ଗ ଅଂଚଳର ମୋଫସଲରେ ଘର । ଏରସମା ଥାନା ପାଖରୁ ଯେଉଁ ଚାଲିବାଟଟି ଗହିର ମଝିରେ ଦକ୍ଷିଣ-ପୂର୍ବ ଆଡ଼କୁ ପଡ଼ିଛି ସେହି ବାଟରେ ଗଲେ ତିନ ଚାରି ମାଇଲ ଦୂରରେ ତାଙ୍କର ଛୋଟ ଗ୍ରାମ ନରେନ୍ଦ୍ରପୁର ।

ଗ୍ରାମଟି ଛୋଟ ହେଲେ ମଧ୍ୟ ବହୁ ଜାତିର ଲୋକେ ସେଠାରେ ରହନ୍ତି । ଅତି ଧନୀ ରାଉଳ ବଂଶରୁ ଆରମ୍ଭ କରି ଅତି ଦରିଦ୍ର ନିତି ମୂଲିଆ ବାଉରି ବଂଶ । ଜାତି-ଆଣ ପାହାଚରେ ମହାପାତ୍ର ବଂଶର ସ୍ଥାନ ବେଶ୍ ଉଚରେ । ଜାତିର ବଡ଼େଇ ଓ ସମ୍ମାନ କେଉଁ କାଳରେ ଅବଶ୍ୟ ଥିଲ, ଏ ଯୁଗର ପେଟ ପାଇଁ ନାଟ ଅମଳରେ, ଭିକ୍ଷୁକ ବା କ ହଟବାର ଟଣାଓଟରି ବେଳେ ଜାତିଆଣପଣ ଗାଧୋଦେବତାର ଚରଣ-ତଳେ ଶରଣ ପଶିଛି । ଅନିବାର୍ଯ୍ୟ ତା'ର ମରଣ ।

କେଉଁ କାରଣରୁ କେଉଁ ପୁରୁଷରେ କେଉଁ ରାଜା ସେମାନଙ୍କର ଅତୀତ ପ୍ରପିତାମହଙ୍କୁ ମହାପାତ୍ର ଉପାଧି ଦେଇ ମୁଣ୍ଡରେ ପାଗ ବାନ୍ଧିଥିଲେ ; ହାତରେ ଲେଖନ, କି ଖଡ଼ଗ ଦେଇ ଥିବେ । ସନ୍ଦେହର ଅବକାଶ ନାହିଁ । ସେ ଘଟଣା କି ସେଇ ପ୍ରପିତାମହଙ୍କର ନାମ କାହାରି ମନେ ନାହିଁ ।

ହୁଏତ ସେ ଧନୀ ଥିଲେ । ନରେନ୍ଦ୍ରପୁର ଗହିରରେ ତାଙ୍କର ବାଟିବାଟି ଭୂମି ଥିଲ । ବାଗ ବଗିଚା ବି ଥିବ । ସାପୁଆକୁଆରିଆ ନାଲରୁ ମାଛ ଧରିବାକୁ ଖାଉଁ ଜାଲ ଓ ହୁଲଡଙ୍ଗା ଥିବ । ଘରେ କେତେ ହଳିଆ, ମୂଲିଆ କାମ କରୁଥିବେ । ଗାଈ ମଇଁଷୀ ଗୋଠ ଥିବ ।

ଯେଉଁମାନେ ଆଜ ନରେନ୍ଦ୍ରପୁରରେ ଧନୀ, ମାନୀ ଓ ଦାନୀ ହୋଇ, ଦୁଃଖୀ-ରଙ୍କୀଙ୍କ ହାନି-ଲଭରେ ଆଗେଇ ଅସୁରନ୍ତି ଦୟା ବିତରଣ କରିବାକୁ, ସେମାନଙ୍କର ପ୍ର-ପଣଅଜା ମହାପାତ୍ରଘର ଯାନିଯାତ୍ରା ବେଳେ ଦୁଆରେ ଉଭାହୋଇ କାନ୍ଦ ପାଉଥିବେ ।

ମହାପାତ୍ରବଂଶର ଉପାଧ୍ୟାୟୀ ପ୍ରତିଷ୍ଠାମହଙ୍କ ପ୍ର-ପଣଅଜା ଆଉ କଅଣ ବୋଲଉଥିବେ । ପର ଘରେ ମୂଲ ଲଗୁଥିବେ । ଗାଳିମାଡ଼ ସହ ରହୁଥିବେ ।—

ଏହାପରି ଗଡ଼ି ଆସିଥିବ ବାଟ୍ଟୁ ଲ । ହେତୁ ପାଇଲା ଦିନୁ ବାପ ନନ୍ଦ ମହାପାତ୍ରଙ୍କୁ ସେ ମୂଲ ଲଗିବାର ଦେଖିଥିଲା । ବଡ଼ଭାଇ ଆନନ୍ଦ ତାଙ୍କୁ ସାହାଯ୍ୟ କରୁଥିଲେ । ଆଗ ମାଆଙ୍କୁ ସେ ଦେଖି ନଥିଲା । ଆନନ୍ଦ ଭାଇ ଓ ରତି, ମତି ଏବଂ ସତୀ ଅପା ଆଗ ମାଆଙ୍କର ସନ୍ତାନ । ସାପ କାମୁଡ଼ାରେ ସେଇ ମା ପ୍ରାଣ ହାରିଲେ । ଘର ଅଚଳ ହେଲା ବୋଲି ବେଶୀ ବୟସରେ ବାପ ଆହୁରିଥରେ ବିବାହ କଲେ । ବର୍ଷେ ପରେ ସୁକାନ୍ତ ତାଙ୍କର ପେଟରୁ ଜନମି ଥିଲା ।

ରତି ଅପା ଓ ମତି-ଅପା କେବେ ପରଘରକୁ ଗଲେ ସୁକାନ୍ତର ମନେ ନାହିଁ । ସେ ଶୁଣିଛି । ପୈତୃକ ସମ୍ପତ୍ତି ପାଞ୍ଚମାଣ ଜମିରୁ ସେମାନଙ୍କ ବାହାଘର ପାଇଁ ଦୁଇମାଣ ଗାଉଁଲା ଘରେ ବନ୍ଧା ପଡ଼ିଥିଲା । ସୁଧ ଓ ମୂଳ ବାବଦକୁ ଗାଉଁଲା ସେତକ ହିଲମ କରିନେଲେ ।

ସତୀ ଅପା ଅତି ଭଲ । ସାନ ବୋଉଙ୍କର ଅତ୍ୟାଚାର ସହି ମଧ୍ୟ ତୁଣ୍ଡ ଖୋଲି ପଦେ ଜବାବ୍ ଦିଏ ନାହିଁ । ଦିନ ରାତି ପରିଶ୍ରମ କରୁଥାଏ । ସୁକାନ୍ତକୁ ସ୍ନେହ କରେ । ଆନନ୍ଦ ଭାଇକୁ ବାଘ ସାପ ପରି ଡରେ । ସାନ ବୋଉ ମଧ୍ୟ ଆନନ୍ଦ ଭାଇକୁ ଡରନ୍ତି । ସେ ଅତି ଦୁଷ୍ଟ ବୋଲି ଗ୍ରାମ ଲୋକେ କହନ୍ତି । ସେ ରାଗିଲେ ନିଜ ପ୍ରାଣକୁ ମୁଠାରେ ଧରିବ ପଛେ, ପଛେଇ ଆସିବ ନାହିଁ । ସୁକାନ୍ତକୁ ସେ ଗେହ୍ଲା କରେ । ପାଠ ପଢ଼ାଇବାକୁ ଚାହାଳିରେ ବସାଏ ।

ବାପ ଭଲ ଲେଖା ପଢ଼ା କରି ପାରୁଥିଲେ । ଝୁଣ୍ଟି ଝୁଣ୍ଟିକା ଗୋପୀ-ଭାଷା ବୋଲୁଥିଲେ । ଆନନ୍ଦ ଭାଇଙ୍କର ପାଠର ଦଉଡ଼ ସେତିକି ଦୂର । ପାଠରେ ତାଙ୍କର ମନ ନଥିଲା । ପଢ଼ିବାକୁ ବେଳ ନଥିଲା । ଅନୁବର ଲକ୍ଷ୍ମୀଚଟା ଜମିର ଫସଲରେ

ପାଖ ପ୍ରାଣୀ କୁଟୁମ୍ବର ପେଟକୁ ଦାନା ଓ ଦେହକୁ କନା ମିଳିବା ଅସମ୍ଭବ । ତେଣୁ ପିଲାଟି ଦିନରୁ ଗୋରୁ ଗାଈ ଚରାଇବା ଓ ପର ଘରେ ମୂଲ ଲଗିବାକୁ ତାଙ୍କୁ ପଡ଼ିଲା ।

ସତି ଅପାର ବାହାଘର ମନେ ପଡ଼ୁଛି । ଅନ୍ଧାର ମାଣେ ଜମି ବନ୍ଧକ ଘରକୁ ଲେଖିଦେଇ ପଚିଶ ଟଙ୍କା ଋଣ ଆଣିଲେ ବୋଲି ସାନ ବୋଉ ବାପାଙ୍କୁ ଗଞ୍ଜଣା ଦେଲେ । ସତି ଅପା ଘରଅ ଘରର ବୋହୂ ହୋଇ ଗଲା, କୁଜଙ୍ଗ ଗଡ଼କୁ । ତା'ର ରୂପ, ଗୁଣ ଓ ସର୍ବ-ସହଣୀ ଭଲପଣିଆର ପ୍ରଶଂସା ଶୁଣି, ତାକୁ ଆଖିରେ ଦେଖି, ବୁଢ଼ା ଚଉଧୁରି ବଡ଼ ବୋହୂ କରି ନେଲେ । ତୁଳସୀ ପତ୍ର ପାନ । ଚଉଧୁରିଙ୍କ ବଡ଼ ପୁଅକୁ ବି ଝିଅ ମିଳୁ ନଥିଲା । ପାଠୁଆ ପୁଅ ସେ, ହେଲେ, ବସନ୍ତ ରୋଗରେ ଗୋଟିଏ ଆଖି ସେ ହରାଇଥିଲେ । ଦେହ ଓ ମୁହଁରେ ଗାତୁଆ ଦାଗ, ଯୋରଷ ପକାଇବାକୁ ରାହା ନାହିଁ । କାର୍ତ୍ତିକ ତାଙ୍କର ନାମ । ଗୋରା ଢକଢକ ବଳିଷ୍ଠ ଦେହ । ବସନ୍ତ ହୋଇ ନଥିଲେ, ସେ କାର୍ତ୍ତିକ ପରି ସୁନ୍ଦର ଦିଶୁଥାନ୍ତେ ।

ଅନ୍ଧାର ମାଣେ ଜମି ଗଲା । ଘରବାରି ମାଣକ ଛାଡ଼ି ଦେଲେ ବାକି ରହିଲା ଦୁଇମାଣ ଚାଷ ଜମି । ଅବସ୍ଥା ଅଚଳ ହେଲା । ଦିନ ରାତି ଗଞ୍ଜଣା ସହି, ଆନନ୍ଦ-ଭାଇ ଗାଁ ଛାଡ଼ି କଲିକତା ଗଲେ । ଉପାସ ଭୋକରେ ବେଳ କାଟିବା ଅପେକ୍ଷା ବୋଝ ବୋହି ପେଟ ପୋଷିବା ଭଲ । ହାଡ଼ଭଙ୍ଗା ପରିଶ୍ରମ କରି ଗ୍ରାମରେ ଥାଇ ଯେଉଁ ମୂଲ ମିଳେ, ସେତକ ସାନ ବୋଉଙ୍କ ହାତକୁ ନ ଦେଲେ ସେ ବଡ଼ ଭାଇ କି ବୁଢ଼ା ବାପାଙ୍କର ଅବଗୁଣ ଗାଇ ଗର୍ଜନ କରନ୍ତି । ଗାଁ ମାଇପେ ମୁହଁ ଉପରେ ତାକୁ ରାହାବାଲୀ ବୋଲି କହନ୍ତି ।

ଆନନ୍ଦଭାଇ କଲିକତାରେ କି କାମ କଲେ ତାଙ୍କୁ ଜଣା । ଘରକୁ କେବେ ପାନ୍ଥଲଟିଏ ପଠାଇଲେ ନାହିଁ । ଅକାଳେ ସକାଳେ ଚିଠିଖଣ୍ଡେ ଦିଅନ୍ତି ନାହିଁ । ସେ ବିଦେଶ ଗଲାରୁ ଘରକାମ ଓ ପରକାମର ବୋଝ ପଡ଼ିଲା ବୁଢ଼ା ବାପାଙ୍କ ଉପରେ । ଯେତେ କାମ କଲେ ବି ବୋଉ ଚଡ଼ଚଡ଼ ହୁଏ । ବାରି କଥା କହି ଝିଙ୍ଗାସେ । କିନ୍ତୁ, ଦେହ ଖରାପ ହେଲେ ଖିଆ ପିଆ ଭୁଲି ଦିନରାତି ସେବା କରେ । ବଇଦ ଡକାଇ ଚିକିତ୍ସା କରାଏ । ଏଠାରେ ଧନ ଖରଚ କରିବାକୁ କୁଣ୍ଠିତ ହୁଏ ନାହିଁ ।

ଆନନ୍ଦଭାଇକୁ ଅଭିଶାପ ଦିଏ । ଝିଅମାନଙ୍କର ନାମ ଧରେ ନାହିଁ । ଲୋକେ ବାର ନିନ୍ଦା କରନ୍ତି । ସେଥିକି ସେ ଖାତିର କରେ ନାହିଁ ।

ସୁକାନ୍ତକୁ ଜନ୍ମ ଦେଇଛନ୍ତି, ସ୍ନେହ ଶ୍ରଦ୍ଧା ଦେବାର କଥା କିନ୍ତୁ, ଅକଥାରେ ମାଡ଼ଗାଳି ଦେବାକୁ ସେ ଭୁଲନ୍ତି ନାହିଁ । ଗ୍ରାମ ଚାଟଶାଳୀରୁ ପାଠ ଶେଷ କରି ଗାଈ ଗୋରୁ ଛେଳି ମେଣ୍ଢା ଜଗିବାରେ ସୁକାନ୍ତର ଗୋଟିଏ ବର୍ଷ କଟିଲା । ଗୋଟିଏ ଗୋରୁ ପାଇଁ ମାସକୁ ମୂଲ ଚାରିଅଣା । ଗୋଟିଏ ଛେଳି କି ମେଣ୍ଢା ପାଇଁ ଦୁଇଅଣା । ପଢ଼ିଲା ପାଠ ଧୀରେ ଧୀରେ ଭୁଲିବାକୁ ଲାଗିଲା । ପାଠର ମୂଲ୍ୟ ମୂଲିଆ ଜୀବନରେ କିଛି ନାହିଁ । ମୂଲିଆର ପୁଅ ସୁକାନ୍ତ ମୂଲିଆ ହେବ । ଏଥିରେ ସନ୍ଦେହ କରିବାର କାରଣ ନାହିଁ । ଏହାଛଡ଼ା ଯେ ସେ ଆଉ କଅଣ ହୋଇ ପାରିବ ସେପରି ଧାରଣା ନଅ ବର୍ଷର ପିଲା ସୁକାନ୍ତର ମନରେ କେବେ ଥାନ ପାଇ ନ ଥିଲା ।

ହାତ ବଢ଼ାଇଲେ ରମା ଦୁଃଖ ଘୁଞ୍ଚି ଯାଉଛି । ସୁନ୍ଦର ମୂର୍ତ୍ତିରେ ଅନୁତାପର ଅସ୍ପଷ୍ଟ କାଳିମା ପ୍ରଚ୍ଛନ୍ନ ଘୃଣାର ଅଣଅଣ୍ଟିକା ଡୋଫାନ ଓଠ ପଟା ଓ ନାକପୁଡ଼ା ଥରାଇ ଦେଉଛି । ଯେଉଁ ଇଞ୍ଜିନିୟାର ତାକୁ ବିବାହ କରିବାକୁ ପ୍ରସ୍ତାବ ପଠାଇଲେ ତାଙ୍କ ପାଖରେ ସେ କୃତଜ୍ଞ, କିନ୍ତୁ, ସେ କିଏ ତାଙ୍କର ଅତୀତ କଅଣ, ସେ କଥା ରମା ଜାଣି ନ ଥିଲା । ସେ ବିଷୟରେ ତାର ପିତା ମାତା କି ଭାଇବନ୍ଧୁ କେହି ଅନୁସନ୍ଧାନ କରିବାକୁ ଆଗ୍ରହୀ ହୋଇ ନ ଥିଲେ । ସେମାନେ ଆନନ୍ଦିତ ଓ ସନ୍ତୁଷ୍ଟ ଯେ ସେମାନଙ୍କର ଜାମାତା ଜଣେ ଇଞ୍ଜିନିୟାର । ସ୍ୱାସ୍ଥ୍ୟ ସମ୍ପନ୍ନ, ବଳିଷ୍ଠ, ସୁନ୍ଦର ପୁରୁଷ । ସେ ନିର୍ଲୋଭ, ଉଦାର, ଆଧୁନିକ । ସେମାନଙ୍କର ଅଲିଅଳି ସୁକୁମାରୀ ଝିଅଟି ସୁଖରେ ରହିବ । ଭୋଗ ଭାଗ୍ୟରେ ଥିବ ।

ରମାର ମନରେ ସେହି ଆଶା ଥିଲା । ସେହି ଆଶାରେ ସେ ନିଜକୁ ଶୁଭ କି ଅଶୁଭ ପ୍ରଥମ ରାତିରେ ସୁକାନ୍ତର ପଦତଳେ ଉତ୍ସର୍ଗ କରିଥିଲା । ହାତଧରି ତଳୁ ଉଠାଇ ପାଖକୁ ଟାଣିଲାରୁ ସେ ଘୁଞ୍ଚି ଆସିଥିଲା । ଦୂରେଇ ଯାଇ ନ ଥିଲା ।

ସୁକାନ୍ତର ଦୁଇଟି ସନ୍ତାନର ଜନନୀ ରମା । କାହିଁକି ଦୂରେଇ ଯାଉଛି ? ହାତଧରି ପାଖକୁ ଟାଣିଲେ ଦେହଟା ସ୍ୱାମୀ ଦେବତାର କ୍ଷୁଧା ମେଣ୍ଟାଇବାକୁ ଅବଶ୍ୟ ଆସିବ । ତୃତୀୟ ସନ୍ତାନର ଜନନୀ ହେବାକୁ ସେ ମନା କରିବ ନାହିଁ । କିନ୍ତୁ, ମନ ଓ ମନର ସରାଗ ରମାର ଜୀବନ୍ତ ପ୍ରତିମାକୁ ବାହାର ଦୂରେଇ ରହି ଛିଛିକାର କରୁଥିବ । ଦେଖୁଥିବ ସୁକାନ୍ତର ଅତୀତ ରୂପ । ଆରେ, ସେହି ଦେହଟା ତ, ମୂଲଅ ପୂଅ ବଢ଼ି ଉଠିଛି । ବୟସ୍କ ହୋଇଛି । ଛି, ଛିଇ—

ସୁକାନ୍ତ ହାତ ଟାଣି ଆଣିଲ । ଛି, ଛିଇ, ରମା କେଡ଼େ ଅସନା ଦିଶୁଛି, ଅତି ଅଯତ୍ନଶୀଳା । ଜାଣି ଜାଣି ସେ ଏପରି ହୋଇଛି, କାରଣ, ସେଦିନ, କେତେଦିନ ସେ ନିଜ ରୂପରେ ଆଗକୁ ଆସୁଥିଲେ । ହସ ହସ ସୁବର୍ଣ୍ଣ ପ୍ରତିମା ।

ବାହାଘର ସରିବାର କେତେଦିନ ପରେ ଭାଇ ଓ ଭାଉଜ ଗ୍ରାମକୁ ଫେରି-ଗଲେ । ଯହା ମେଉଁଠି ହାବୁଡ଼େ ପଡ଼ିଲ ସେମାନେ ସଙ୍ଗରେ ଗ୍ରାମକୁ ନେଇ ଯିବାକୁ ଟିକେ ମାତ୍ର କୁଣ୍ଠିତ ହେଲେ ନାହିଁ । ଲଜ୍ଜିତ ହେଲେ ନାହିଁ । ସେମାନେ ଘରକାମ, ବିଲବାଡ଼ିର ଯତ୍ନ ଓ ଗାଈଗୋରୁଙ୍କର ସେବା ଛାଡ଼ି ସୁକାନ୍ତକୁ ବାହା କରାଇବାକୁ କଟକ ଆସିଥିଲେ । କୋଠିଆ ପିଲ ଜମା ସବୁ ସମର୍ପି ଦେଇ ଆସି-ଥିଲେ । ରାଉଳ ବଂଶଙ୍କ ସଙ୍ଗେ ଯେପରି ଅହିନକୁଳ ସମ୍ପର୍କ, ଘରବାରି ଜୁଇ ହେବଣି । କଟକରେ ବେଶିଦିନ ବସି ରହିବା ନିରାପଦ ନୁହେଁ । ଭାଉଜ ଏହି କଥା ବାରମ୍ବାର ଆନନ୍ଦ ଭାଇଙ୍କୁ ବୁଝାଇ କହୁଥିଲେ ।

ସୁକାନ୍ତର ପିତାମାତା କେବେଠୁଁ ସଂସାର ଛାଡ଼ି ଚାଲି ଗଲେଣି । ବାହାଘରର ଖବର ପାଇ ଭଉଣୀମାନେ ସାମାନ୍ୟ କେଇଟି ଟଙ୍କା ବେଭାର ପାଇଁ ମନିଅର୍ଡ଼ର କରି ପଠାଇ ଦେଇଥିଲେ । ସେମାନେ ମଣିଥିଲେ ଏତକରେ ତାଙ୍କର କର୍ତ୍ତବ୍ୟ ସରିଲ । ଉଲୁଗୁଣା ଦେଇ ଭାଉଜ ଏ କଥା କହନ୍ତି । ସେ ଗର୍ବ କରନ୍ତି ଯେ କର୍ତ୍ତା ହୋଇ ତାଙ୍କ ଭାଇ ଯଦି କଟକ ଆସି ନ ଥାନ୍ତେ । ସୁକାନ୍ତର ବାହାଘର ହୋଇ ନ ଥାନ୍ତା କି, ରମା ଏ ଘରର ବୋହୂ ହୋଇ ଆସି ନ ଥାନ୍ତା ।

ନୂଆ ବୋହୂ ରମା ଘରର ଘରଣୀ ହୋଇ ନ ଥାଏ । ଯିଏ ଯାହା କହେ ସବୁ ସେ ମନ ଦେଇ ଶୁଣେ । ସୁକାନ୍ତର ଅତୀତ ଜୀବନ ସମ୍ବନ୍ଧରେ ଭାଉଜଙ୍କୁ

ଯେତକ ଜଣା ସବୁ ସେ ରମା ଆଗରେ ବର୍ଣ୍ଣନା କରିଥିଲେ ।

ଆରେ ! ଭଉଣୀ, ମଣିଷ ବଡ଼ ନୁହେଁ, ତା କପାଳ ବଡ଼ । କିଏ ଜାଣିଥିଲା, ମୂଲିଆ ପୁଅ, ମୂଲିଆ ମୁଣ୍ଡ ସୁକା ପୁଣି ପାଠସାଠ ପଢ଼ି ମଣିଷ ହେବ । ଏତେ ବଡ଼ ହାକିମ ହେବ । ଗୋରୁ ଗାଈ ନ ଚରାଇ ମଣିଷ ଚରାଇବ ? କିଏ ଜାଣି ଥିଲା ସେ ପୁଣି ତୋ ପରିକା ଲକ୍ଷ୍ମୀ ସରସ୍ୱତୀ ଝିଅର ହାତ ଧରିବ । ହେଲେ, ଯେଉଁ ଟୋକିବା ଭାଇ ଭାଇଙ୍କ ମେଳରେ ସେ ବଢ଼ିଛି ସେମାନଙ୍କୁ ଆଉ ଆଖିରେ ଅନାଏ ନାହିଁ । ତୁ ସେପରି ହେବୁ ନାହିଁ ଲୋ ଭଉଣୀ, ତୁଣ୍ଡରେ ଅହ୍ୱା ପଦ ରଖିଥିବୁ । ଠାକୁରେ ସବୁ ହାତେ ଦାହାର ବଡ଼ପଣ, ଠାଣ ପଣ ରଖନ୍ତି ନାହିଁ ।

ଭାଉଜଙ୍କ କଥା କେତେ ବର୍ଷ ଯାଏ ରମାର ମନରେ ଝଣି ପଡ଼ୁଥିଲା । କେବେ ସେ ଭରତିକର ସୁକାନ୍ତକୁ କହି ନଥିଲା କି ଦରକାର ନ ଥିଲା । ନୂଆ ଜୀବନର ଆନନ୍ଦ ଓ ଉତ୍ତେଜନାରେ ଆଖି ପିଛୁଳା ପରି ସମୟ କଟିଗଲା । ଇଞ୍ଜିନିୟାର କାମ । ଯାହା କହନ୍ତି, ହାଣ୍ଡିରେ କଳା ପଡ଼େ ନାହିଁ । ଛଅମାସର ବର୍ଷକ ଭିତରେ ବଦଳି ହୁଏ । ନୂଆ ସ୍ଥାନରେ ବାଜାବାନ୍ଧ ସବୁ ଖୋଲି ସାରିବା ଆଗରୁ ବଦଳି ଆଦେଶ ଆସେ । ପୁଣି ବନ୍ଧାବନ୍ଧି ଲାଗେ ।

କେତେ ଅଫିସର ବଦଳି ଆଦେଶ ପାଇଲେ ମୁହଁ ଶୁଖାନ୍ତି । ବଡ଼ ହାକିମଙ୍କ ପଛରେ ବାରକଥା କହନ୍ତି । ପ୍ରତିବାଦ କରି ଅଡ଼ି ବସନ୍ତି । ସୁକାନ୍ତ ସେପରି କେବେ କରି ନାହିଁ । କରିବାର ବେଳ ହୋଇ ନାହିଁ । ମାମୁଁ ମାଈଁ ଦୁଇ ପ୍ରାଣୀ ; ବଡ଼ ପୁଅ ଜନ୍ମ ହେଲା ପରେ ଛାତିରେ ଯାକି ଧରିଲା ପରି କୁଆ ବଳକଟେ । ଚଳିବାକୁ ଯେତିକି ପଦାର୍ଥ ଲୋଡ଼ା ତାହଠୁଁ ଅଧିକ ସେ ରଖି ନାହିଁ । ଠାକୁରଙ୍କ ଦୟାରୁ ଦେହପା କୁଶଳରେ ଅଛି । ବଦଳିକୁ ଡର କାହିଁକି ? ଖୁସାମଦ କାହିଁକି ? କାମ କରିବାକୁ ଚାକିରି । ଯହିଁ ଗଲେ ସେଠି କାମ । ସବୁଠି ମଣିଷ ଅଛନ୍ତି । ସୁଖ ଦୁଃଖରେ ସଂସାର କରୁଛନ୍ତି ! ପରକୁ ଆପଣାର କରି ଜାଣିଲେ ଯେଉଁଠିକି ଗଲେ, ସେଠି ଦେଖିବ ଭାଇ, ବନ୍ଧୁ, କୁଟୁମ୍ବ । ଯେତେ ଲୋଡ଼ିବ ସେତେ ଅଛନ୍ତି । ସ୍ନେହ ସମ୍ମାନ ଓ ସହାନୁଭୂତି ମଣିଷ ମନରେ ଅସରନ୍ତି ଭଣ୍ଡାର ପରି ଭରି ରହିଛି । ଯେତେ ବାଣ୍ଟିଲେ ସରେ ନାହିଁ । ମନର ଭଣ୍ଡାର ଊଣା ହୁଏ ନାହିଁ । ପରକୁ ଆପଣାର କରେ ।

ଆଗରେ ଅସୀମ ସାଗର । ଜଳ ଆଲୁଅରେ ଚକ୍‌ଚକ୍ ଦିଶୁଛି । ଦେଖ, ଗର୍ଜି ଗର୍ଜି ଆସୁଛି ଢେଉ ଉପରେ ଢେଉ । କୂଳରେ କଣ୍ଡ଼ ହୋଇ ପଡ଼ୁଛି । ମାଡ଼ି ଆସୁଛି, ଫେରି ଯାଉଛି । ବେଶୀବେଳ ହୋଇ ନାହିଁ ତ ରମା, ସାଢ଼େଛଟା ବାଜିବ । ଶୀତଳ ପବନ । ଶ୍ରାନ୍ତଶ୍ରାନ୍ତ କ୍ଳାନ୍ତ ହୋଇ ପଡ଼ୁଛ । ଆସ ଏଇ ବାଲିଢ଼ିପ ଉପରେ ବସିବା । ଗୋପାଳପୁରର ସମୁଦ୍ର କୂଳକୁ ମୁଁ ପସନ୍ଦ କରେ । ଲୋକ ଭିଡ଼ ନାହିଁ । ଏବେଳାରେ ବସି ସମୁଦ୍ରକୁ ଚାହିଁ ରହିବାକୁ ଖୁସି ଲାଗେ । ବଙ୍ଗଳା ଆମର ବେଶି ଦୂର ନୁହେଁ । ଏଇଠିକୁ ଆସିବାକୁ ମୁଁ ଚପରାଶିକୁ କହିଛି ।

ସୁକାନ୍ତ ଶୀତଳ ବାଲି ଉପରେ ବସିଲା । ମନରେ ଆନନ୍ଦ । ଢଙ୍ଗରେ ଫୁର୍ତ୍ତି । ନବ ପରିଣିତା ପତ୍ନୀ ସଙ୍ଗରେ ଅଛି । କାଲିପରି ଲାଗୁଛି ତ ବାହାଘର । ଦେଖୁ ଦେଖୁ ଛଅ ମାସ କଟି ଗଲାଣି । ଏ ମଧ୍ୟରେ ସେ ବ୍ରହ୍ମପୁର ବଦଳି ହୋଇ ଆସିଲାଣି । ଯୁଆଡ଼େ ବଦଳି ହେଲେ ଚିନ୍ତା ନାହିଁ । ରମା ପାଖରେ ଥିଲେ ତାଙ୍କୁ କୌଣସି ଦୁଃଖ ବାଧେ ନାହିଁ । ରମା ତାର ଘରଣୀ, ବାନ୍ଧବୀ ବନ୍ଧନୀ । ରମା ତା'ର ପ୍ରେରଣା । ଗସ୍ତରେ ବାହାରିଲେ ସେ ସଙ୍ଗରେ ଯିବାକୁ ମନ କରେ । ମୁହୂର୍ତ୍ତେ ଦୂରେଇ ରହିବାକୁ ସେ ଚାହେ ନାହିଁ । କିନ୍ତୁ, ସବୁ ସ୍ଥାନକୁ ଜିପ୍ ଯାଇ ପାରେ ନାହିଁ । ତେଣୁ, ତାର ମନ କାମନା ପୂର୍ଣ୍ଣ ହୋଇ ପାରେ ନାହିଁ ।

ବସ ରମା, ଦେଖ, କି ସୁନ୍ଦର ଦିଶୁଛି ଏ ସାଗର । ଦୂରରେ ଯେଉଁ ବଡ଼ ବଡ଼ କୋଠା ଦିଶୁଛି, ସେ ଗୁଡ଼ିକ ହୋଟେଲ । ଭିନ୍ନ ଭିନ୍ନ ସ୍ଥାନରୁ କେତେ ଲୋକ ଜଳବାୟୁ ପରିବର୍ତ୍ତନ କରିବାକୁ ଗୋପାଳପୁର ଆସନ୍ତି । ସେମାନେ ଏଇସବୁ ହୋଟେଲରେ ରହନ୍ତି । ପ୍ରକୃତିର ଏଇ ମନୋରମ ଦୃଶ୍ୟ ଦେଖି ମୁଗ୍ଧ ହୁଅନ୍ତି । ତନ୍ମୟ ହୁଅନ୍ତି । କେତେ ଆସନ୍ତି, କେତେ ଯାଆନ୍ତି । ଏଇ ସୁଷମା ଉପଭୋଗ କରନ୍ତି । ଅପସରନ୍ତି । ମନରେ ଧାରଣାଟି ନେଇ ଫେରି ଯାଆନ୍ତି । ଯାହା ଆମେ ଦେଖୁଛୁ

ଶୁଣୁଛୁ, ଅନୁଭବ କରୁଛୁ, ସବୁଚକ ଠୁଲ କରି ପେଡ଼ିରେ ରଖିପାରିବାର ଶକ୍ତି ଯଦି ଆମର ଥାଆନ୍ତା, ଆମେ କଅଣ କରନ୍ତେ ?

ରମା ପାଖରେ ବସିଲା ! ସେ ଗ୍ରୀବ ଫରଫର ଲୁଗା ପିନ୍ଧିଛି । ମୁଣ୍ଡରେ ପଣତ ନାହିଁ । ଗଭିରେ ମଲ୍ଲୀ-କଢ଼ିର ମାଳ । ମଧୁର ମହକ ଧୀର ଲହଡ଼ିଆ ପବନରେ ଭାସି ଆସୁଛି । ଓଠରେ ଲାଖିରହିଛି ସ୍ମିତ । ଉଜ୍ଜ୍ୱଳ ଆଖି ଜୋଡ଼ା । ମୁହଁରେ ଭରପୁର ଆନନ୍ଦର ଉତ୍ଫୁଲ୍ଲତା । ଲଜ ଲଜର ଛପିଲା ତରଙ୍ଗ ଖେଳୁଛି ସେଥିରେ । ରମା ବଚନ ଶୁଣେ । ଲୋଚନ କୋଣରେ ମନର ମମତା ମୋଚନ କରେ । ମୁହଁ ଖୋଲିଲେ ଅଳପ, ଯଦି ଆବଶ୍ୟକ ହୁଏ ।

ସୁକାନ୍ତ ରମାର କଅଁଳ ମାଂସଳ ଉଷୁମ ହାତଟି ଧରି ଅବୁଝା ପିଲାଟି ପରି କହିଲା, ତମ ପାଇଁ ମୁଁ ଉତ୍ତର ଦେବି । ସବୁ ସୁଷମା ଏକାଠି କରି ମୁଁ ନେଇ ଯାଆନ୍ତି ।

କେଉଁଠି ରଖନ୍ତ ?

ତମରି ଭିତରେ ।

ଗୋପାଳପୁର ଶୂନ୍ୟ ହୁଅନ୍ତା । ମୁଁ ଅନୁମାନ କରି ପାରୁଛି । କଳା ମିଚମିଚ ଅନ୍ଧାର ରାତି । ସ୍ୱର ଶବ୍ଦ ନାହିଁ । ଶୀତଳ ହେଉ କି ଉଷୁମ ହେଉ, ପବନ ନାହିଁ । ଗନ୍ଧମହକ କେଉଁଠି ହଜି ଯାଇଛି । ଲିଭି ଯାଇଛି ଆଖି ଆଗରେ ଯେଉଁ ଡେଉଁ ଡେଉଁକା ଚକ୍ ଚକିଆ ନେଳିଆ ଦରିଆ, ଆଉ ଧୂସର ବାଲି ପନ୍ତାର, ଧଳା କୋଠା ଧାଡ଼ି, ଉପରର ନେଳି ଆକାଶ, ଭାସିଲା ମେଘ, ମିଟି ମିଟି ତାରା ସବୁ ସେଇ ଅନ୍ଧାର ଭିତରେ ଛପି ଯାଆନ୍ତେ । କେଡ଼େ ଭୟଙ୍କର ଦିଶନ୍ତା ଏ ଥାନ !

ସୁକାନ୍ତ ଥକ୍କା ହୋଇ ଶୁଣିଲା । ସେ ମଧ୍ୟ ଅନୁମାନ କରି ପାରୁଛି । ନା ଅସୀମ, ଅନନ୍ତ, ସନାତନ ପ୍ରକୃତିକୁ କେହି ଧରି ପାରିବେ ନାହିଁ । ସେ ଧାରଣାତୀତ । ସେ ସମସ୍ତଙ୍କର । ସମସ୍ତେ ତାଆର । ସେ ଅତି ମନୋରମ, ଅତି ଭୟଙ୍କର । ସେ ଉଦାର । ସେ ନିର୍ଦ୍ଦୟ । ଠିକ ମଣିଷ ମନରେ ସେ ଧାରଣା ଫଗୁରେ—ସମ୍ଭବ ଓ ଅସମ୍ଭବ ! ରମା ସେଇ କଥା ସୂଚାଇ ଦେଇଛି । ରମାର ଭିତରେ ବାହାରେ ସେ ପ୍ରକୃତିର ସୁଷମାର ଉପମା ପାଇଛି । ରମାହିଁ ପ୍ରକୃତି ।

ସେଇ ଦେହ, ସେଇ ମନ, ସେଇ ଜୀବନ । ପ୍ରକୃତି ପରି ସେ ହସେ, ଗମ୍ଭୀର ହୁଏ, ଗରଜି ଉଠେ, ଭୟଙ୍କର ହସେ । ଶାନ୍ତ ହୁଏ, ବୋଲ ମାନେ, କାନ୍ଦେ । ସେ କନ୍ଦାଏ, ସେ ହସାଏ । ସେ ରୁକ୍ଷ, ଅସଂଯତ ହୁଏ । ସେ ନିଜକୁ ସଜାଏ, ହଜାଏ, ମନ ମଜାଏ । ଆଜି ଏହି ଶୀତଳ, ହସିଲ, ଲେଭଲ ପ୍ରକୃତି, ତାଳେ ତାଳେ ନାଚଲ ପ୍ରକୃତି, ସୁନ୍ଦରୀ, ମୁଖର, ଗମ୍ଭୀର ଓ ଭୟଙ୍କର । ସବୁର ସମାବେଶ ତାକୁ ଅଶେଷ ଉଲ୍ଲାସର ଉତ୍ସ କରିଛି ! ହାତ ମୁଠାରେ ତା'କୁ ସେ ଧରି ପାରିବ ନାହି । କିନ୍ତୁ, ତାଆରି ଉପମା, ତାଆରି ଅନୁକରଣ ଏଇ ରମାକୁ ସେ ଧରିବ । ନିଜର କରିବ ।

ସୁକାନ୍ତ ହାତ ବଢ଼ାଇଲା । ରମାର ହାତଟି ଧରିଲା । ପାଖକୁ ଟାଣିଲ । ରମା ପାଖେଇ ଆସୁଣୁ ଦୂରେଇ ଗଲା । ହାତର ସଂଯୋଗ ବିଚ୍ଛିନ୍ନ ହେଲା । ଭୁନ ଭୁନ କହିଲା, 'ଦେଖ, ଦୁଇ ଆଡ଼ୁ କିଏ ସବୁ ଗୃଲିଗୃଲି ଆସୁଛନ୍ତି । କଥା ଭୁଷା ହେଉଛନ୍ତି, ହସୁଛନ୍ତି ମ । ଆସ, ଫେରିଯିବା ବସାକୁ ।

ରମା ଆଗେଇ ଯାଉଛି ।

ମାଡ଼ି ଆସିଲା ଲହଡ଼ୀ । 'ବେଳା ଭୂମିରୁ ଫେରିଯାଉଛି ପଛକୁ, ସୁକାନ୍ତର ମନର ସବୁଗ ପରି ।

ରମା ଛପି ଯାଉଛି ଦୂର କୋଠାର ଛାଇ ଉହାଡ଼ରେ ।

ସୁକାନ୍ତ ଆଖି ଖୋଲିଲା । ଝଲବଲ ଅନ୍ଧାର । ତକିଆ କଡ଼ରେ ଟର୍ଚ୍ଚ ଲାଇଟ୍ ରଖା ହୋଇଛି । ହାତ ଅଣ୍ଡାଳି ଟର୍ଚ୍ଚ ଲାଇଟ୍ ଧରିଲା । ଆଲୁଅ ଟିପିଲା । ଖଟରେ ମଶାରି ଟଙ୍ଗା ଯାଇଛି । ଉଠି ବସିଲା ।

ଗୋପାଳପୁରର ଜୋଛନାଧୂଆ ବେଳାଭୂମି ଏ ନୁହେଁ । ସେତ ଅତୀତର କଥା, ଦୂରର କଥା । ରମା ବି ପାଖରେ ନାହିଁ । କେତେ ଦୂରରେ ସିଏ ହଓଟିକୁ

ପାଖରେ ରଖି ସେ ରହୁଛି । ଶୋଇ ନାହିଁ ପରା । ଆଖିରୁ ଲୁହ ଗଡ଼ାଇ କାନ୍ଦୁଛି ପରା । କହୁଛି ମନକୁ ମନ, ଯେତେ କଲେ ବି ସେ ସନ୍ତୁଷ୍ଟ ହେଉ ନାହାନ୍ତି । ସବୁବେଳେ ବିରକ୍ତ, ଫୋପଡ଼ା କଚଡ଼ା । ସେ ଭଲ ପାଉ ନାହାନ୍ତି । କାହିଁକି ? ମତେ ସେକଥା ଜଣା ଅଛି ଯେ । ସେ ଅକୃତଜ୍ଞ ! ମୁଁ ତାଙ୍କର ଅଲୋଡ଼ା । ମୋ'ର ମରଣ ଲୋଡ଼ା । ମୁଁ ନିସ୍ତାର ପାଇ ଯିବି ।

ସୁକାନ୍ତ ବ୍ୟାକୁଳ ହୋଇ ଉଠିଲେ । ଛନଛନ ମନ ଉଚ୍ଛନ୍ନ ହୋଇ କାରୁଣ୍ୟ କଲା । ସେ ବିଚଳିତ ହେଲେ । ରମା ଭୁଲେ । ଆସିଲା ବେଳେ ସଙ୍ଗରେ ଦେବାକୁ କେତେ କଥା ସେ ଭୁଲି ଯାଇଥିଲା । ଗୃହିନୀ ଗୁଡ଼ାର ବଙ୍ଗଳାରେ ପହଞ୍ଚିଲା ପରେ ସେ ବୁଝିଲେ । ରମାର ଅନ୍ୟମନସ୍କତାକୁ ଧିକାର କରି ସେ ବିରକ୍ତ ହୋଇଥିଲେ । ତା ମନରେ ବେଖାତିର ଭାବ ଓ ଅସ୍ନେହର ଆଭାସ ଆରୋପ କରି କେତେ ଅବାନ୍ତର ଚିନ୍ତା କରିଥିଲେ । ନିଜର ସ୍ୱଭାବ ଓ ଧୈର୍ଯ୍ୟର ଅଭାବକୁ ସେ ଭୁଲି ଥିଲେ ।

ଠିକ୍ ଲଇଟ୍ ମିଳୁଛି । କେଉଁ ଅଧସ୍ତନ ମଶାରିଟିଏ ଯୋଗାଡ଼ କରି ଦେଇଛନ୍ତି । ଖିଆପିଆର ଅଭାବ ହୋଇ ନାହିଁ । ଚଳି ଯାଉଛି । ଅନ୍ୟ ପାଖରେ ଋଣୀ ହେବାର ନ୍ୟୂନତା ଧାରଣା ମନକୁ ଅଳପ ନୋଇଁଛି । କିନ୍ତୁ, ଏଥିପାଇଁ ରମାକୁ ସେ ଦୋଷୀ କରି ପାରିବ ନାହିଁ । ଗସ୍ତରେ ଆସିବା ପୂର୍ବରୁ ସବୁ ସେ ନିଜେ ଯୋଗାଡ଼ କରି ଆଣି ଥାଆନ୍ତି ।

ସୁକାନ୍ତ ଖଟରୁ ଓହ୍ଲାଇଲେ । ଆଲୁଅ ବୁଲାଇଲେ ଘରର ଆଡ଼କୁ । ସବୁ ଠିକ୍ ଅଛି । ବଙ୍ଗଳାର ପୁରୁଣା ଘରଲରୁ ସାପ ଓହ୍ଲାଇ ନାହିଁ । ଫଟା କାନ୍ଥରୁ ସାପ ମୁହଁ କାଢ଼ି ନାହିଁ । କେତେ ଦୁର୍ଘଟଣା ମନେ ପଡ଼ିଲା । ସେ ସବୁ ଭାଗ୍ୟର କଥା । ଲୋକେ କହନ୍ତି, ଯାହାର ଆଇସ ପୂରେ ସେ ଯାଏ । ସୁକାନ୍ତ ଇଞ୍ଜିନିୟର, ବୈଜ୍ଞାନିକ, ଅଧିନାୟକ ! ଦୁର୍ଭାଗ୍ୟ ବା ଦୁର୍ଯୋଗ ଆସିପାରେ, ସେଥିପାଇଁ ଭାଗ୍ୟ ବା ଭଗବାନ ଦାୟୀ ହୁଅନ୍ତୁ ପଛେ, ଅସାବଧାନତା ଦାୟୀ ନ ହେଉ ।

ଆର କୋଠରୀରୁ ଘୁଙ୍ଗୁଡ଼ି ଶୁଭୁଛି । ସେମାନେ ନିଶ୍ଚିନ୍ତରେ ଶୋଇଛନ୍ତି । ବାରଣ୍ଡାରେ ମଧ୍ୟ କେତେ ଲୋକ ଶୋଇଛନ୍ତି । କିଏ ଜଣେ ବାଲବାଲ ଉଠୁଛି ;

ଉପ୍ଯୁକ୍ତଙ୍କର ସଯନ ଦେଖୁଛୁ ପରି । ବାରଣ୍ଡାରେ ଆଲୁଅ ଜଳୁଛି । କ୍ଷୀଣ ଆଲୋକ ରେଖା ଝରକାର ପରଦା କଣରେ କୋଠରୀରେ ପଶୁଛି ।

ସୁକାନ୍ତ କବାଟ ଖୋଲି ପଦାକୁ ଆସିଲା । ଆଲୁଅ ଲିଭିଲା । ବାରଣ୍ଡା ଉପରେ କେତେ ଶ୍ରମିକ ଶୋଇଛନ୍ତି । ବଧ ସାପର ଭୟରେ ଛଟପଟ ହେଉ ନାହାନ୍ତି । ସେମାନେ ଭାଗ୍ୟବାଦୀ । ଦେବା ଦେବୀଙ୍କ ଉପରେ ବିଶ୍ୱାସ ଅଛି ! ସେଇଥି ପାଇଁ ନିଶ୍ଚିନ୍ତ ।

ନାଗ ମୂଲିଆ । ଚୋରକେ ପିଇ ଦଣ୍ଡେ ଖାଆନ୍ତି । ମୂଲ ଲଗନ୍ତି ମୁଠିଏ ଆହାର ଓ ଖଣ୍ଡିଏ କନା ପାଇଁ । ସେତକ ନ ହେଲେ ମୂଲ ଲଗି ପାରବେ ନାହିଁ । ସାବ-ଧାନ ହେବାକୁ ସମ୍ବଳ ନାହିଁ । ଠାକୁରେ ଏକମାତ୍ର ଆଶା ଭରସା ।

ଶୃଙ୍ଖଳନ ଗୁଡ଼ା ଗାଁ ବାହାରେ ପାହାଡ଼ ଗଡ଼ାଣୀରେ ରହଣୀ-ବଙ୍ଗଳା । ହତାକୁ ଲାଗି ନାଗଶ୍ରୀ-ଅରଣ୍ୟ ଲମ୍ବି ଯାଇଛି ଦୂର ପାହାଡ଼ର ତଳପାଖ ଏ । ଦୂର ପାହାଡ଼କୁ ଦୁଭାଗ କରି ଝରଣାଟି ବୋହି ଆସିଛି । ବନ୍ଧବାନ୍ଧି ଝରଣାର ଜଳ ଅଟକାଇ ରଖା ହୋଇଛି । ପାହାଡ଼ ମାଳ ସେ ପାଖେ ଦୁଇ ବର୍ଗ ମାଇଲ ଅରଣ୍ୟ ଭୂଇଁରେ ପାଣି ଅଟକି ରହୁଛି ।

ଝରଣା ବନ୍ଧର ଗୋଟିଏ ପାଖରୁ ବାହାରଛି ନାଳ । ତଳ ଜମିରେ ପାଣି ମାଡ଼ୁଛି । ବଳକା ଜଳ ଖଲାସ କରିବାକୁ ଯେଉଁ ନାଳ ଖୋଲା ହୋଇଥିଲା ସେଥିରେ ମଧ୍ୟ ପାଣି ଗଳୁଛି । ଖଣ୍ଡେ ଦୂର ନେଇ ସେଇ ଝରଣାରେ ପାଣି ଛାଡ଼ ଦିଆ ହେଉଛି ।

ବାକିଆ କାମ ଶେଷ କରିବାକୁ ସୁକାନ୍ତ ଧାଇଁ ଆସିଛି । ଅଧିକ ବର୍ଷା ହେଲେ ଖଲାସୀ-ନାଳରେ ସବୁ ବଳକା ପାଣି ଯାଇ ନ ପାରିଲେ ଝରଣାର ଆଣ୍ଠୁକାଟ ଡେଇଁ ପାଣି ଯିବ । ବନ୍ଧ ଭାଙ୍ଗିବ । କେତେ ଖର୍ଚ୍ଚ ନଷ୍ଟ ହେବ । ଦୁର୍ନାମ ହେବ । ସବୁ ପରିଶ୍ରମ ପଣ୍ଡ ହେବ ।

ନଈ ଗର୍ଜୁଛି । ଅରଣ୍ୟ ମଝିରୁ, କେଜାଣି କେତେ ଦୂରରୁ, ମହାବଳର ପବନ ଘଣ୍ଟା ହେଣ୍ଟାଲ କ୍ଷୀଣ ହୋଇ ଶୁଣା ଯାଉଛି । ଝରଣା ଜଳର କଲକଲ

ରବ କାନରେ ପଡ଼ୁଛି । କେତେ ଜାତି ଶବ୍ଦର ମିଶାମିଶି । ଆକାଶରେ ଘୋଟି ରହିଛି ମେଘ । ଗୋଟିଏ ସୁଦ୍ଧା ନକ୍ଷତ୍ରର ଆଭାସ ମିଳୁ ନାହିଁ । ଅତି ଭୟଙ୍କର ରଜନୀ !

ବଙ୍ଗଳାର ହତା ଭିତରେ ଓ ବାହାରେ, ପତ୍ର କୁଡ଼ିଆ ମାଲ ମାନଙ୍କରେ ପ୍ରାୟ ଶହେ ମୂଲିଆ ଓ ମୂଲିଆଣୀ ପିଲାଛୁଆ ନେଇ ନିଶ୍ଚିନ୍ତରେ ଶୋଇଛନ୍ତି । ସୁକାନ୍ତର ମନ ଦକ ଦକ, ଅଧିକ ଜଳ ଆସିଲେ କି ? ରାତି ଅଧରେ ଆନିକଟ୍ ଭାଙ୍ଗିବ ? ଏତେ ପରିଶ୍ରମ ବୃଥା ହେବ ?

ଥରେ ଯାଇ ଜଳର ପତନ ଦେଖି ଆସିବାକୁ ମନ ହେଲା । ଅଧସ୍ତନ ମାନେ ଚାଲନ୍ ଗୁଡ଼ାକୁ ଚାଲି ଯାଇଛନ୍ତି । କାନ୍ତ୍ରାକ୍ଟରଙ୍କ ରହଣୀ ସେଇଠି । ଶୋଇଲା ମୂଲିଆଙ୍କୁ ଉଠାଇବା ଉଚିତ ନୁହେଁ । ଦିନ ସାରା ହାଡ଼ ଭଙ୍ଗା ପରିଶ୍ରମ କରିଛନ୍ତି । ସ୍ତ୍ରୀ ଓ ପିଲାଙ୍କ ସାହାଯ୍ୟରେ ମାଟି ପଥର ଗାଡ଼ିଛନ୍ତି । ମୁଣ୍ଡରେ ବୋହି ବନ୍ଧରେ ପକାଇଛନ୍ତି । ସେମାନେ ଅତି କ୍ଳାନ୍ତ । ବିଶ୍ରାମ ନ ନେଲେ ରାତି ପାହିଲେ ହାତ ଗୋଡ଼ ଚଳିବ ନାହିଁ । କାମ କରି ପାରିବେ ନାହିଁ । ନିଶ୍ଚିନ୍ତରେ ସେମାନେ ଶୋଉନ୍ତୁ । ଯାହା ହେବାର ହେବ । ବର୍ଷା ଆଉ ନ ହେଲେ ରକ୍ଷା । ତାଆର ଦୟା । ମଣିଷର ଚାରା ନାହିଁ । କୌଣସି ଇଞ୍ଜିନିୟର ଅଟକାଇ ପାରିବ ନାହିଁ ।

ସୁକାନ୍ତ କୋଠରୀ ଭିତରକୁ ଆସିଲା । ଟର୍ଚ୍ଚ ଟିପି ପ୍ରକୋଷ୍ଠର ଚାରିଆଡ଼ ପରଖି ନେଲା । ଆପଦ ବିପଦ ନାହିଁ ବୋଲି ତାର ବିଶ୍ୱାସ ହେଲା । ସେ ମଶାରି ଭିତରେ ପଶି ଆଖି ବୁଜି ଶୋଇବାକୁ ଚେଷ୍ଟା କଲା ।

ମନରେ ପଶିଲା ଭାବନା । ବଡ଼ ଘରର ଝିଅ ବୋହୂ ରମା, ଗୋମତୀ, ଜୟଶ୍ରୀ, ଇନ୍ଦିରା । ଅଗ ଗୋଡ଼ରେ କଣ୍ଟା ବାଜି ନାହିଁ । ନିଜପାଇଁ କୂଅରୁ ପାଣି ଲୋଟାଏ

କାଢ଼ିଥିବେ କି ନାହିଁ ସନ୍ଦେହ । ସେମାନଙ୍କ ପାଇଁ ପ୍ରତି ଅନ୍ଧାରିଆ କୋଣରେ ଭୂତ ପ୍ରେତ ଆଁ କରି ଅନାଇଁ ବସିଛନ୍ତି । ଏକା ଗଲେ ଝାମ୍ପିକରି ଗିଳି ଦେବେ । କେଉଁଠି ହଲିଲା ପାଣିକୁ ହାତ ବଢ଼ାଇଲେ କୁମ୍ଭୀର ଟାଣି ନେବ । ପାଦରେ ଚପଲ ନ ଥିଲେ ସାପ କି କଙ୍କଡ଼ା ବିଛା ଦଂଶିବ । ମାଟି କାଦୁଅ ଲଗିଲେ ଗୋଡ଼ର ଅଳତା ନେସି ହୋଇଯିବ । ଖରା ତେଜରେ ମୁହଁ ମଉଳିବ । ଗମଗମ ଘର୍ମରେ ମୁହଁର ପାଉଡର, ଆଖିର କଜଳ ବୋହି ଆସିବ । କନକ କମନ ଆନନ ଅସନା ମଳିନ ହେବ ।

ସୁକାନ୍ତର ମନ ମହଲରେ ଖିଲି ଖିଲି ହସ ।

କେତେ ହସ କାନରେ ବାଜି ଯାଉଛି । ମନ କନ କନ ହେଉଛି । କର୍ମି ଉପରୁ ଭାବନା ଓଟାରି ହୋଇ ଆସୁଛି । ଆଖି ଧୀରେ ଧୀରେ ବୁଲି ଯାଉଛି । ସେମାନେ କାମ କରୁଛନ୍ତି । ସାତ ପାଞ୍ଚ ଏକା ଧାଡ଼ିରେ ଛତ ଉପରେ ବସି ନୂଆ ଛତର କଂକ୍ରିଟ୍ ପିଟୁଛନ୍ତି । ସମ ସ୍ୱରରେ ରହି ରହି କା ଗୀତ । ପିଟୁଣି ଗୁଡ଼ିକର ସମତାଳ । ଚୂନ ଛିଟିକା ମୁହଁରେ ଚନ୍ଦନ ଟୋପା ପରି ଏଠି ସେଠି ଲାଗିଛି ।

ସେମାନେ ରାସ୍ତା ଉପରେ ଗୋଡ଼ି ଛାଣୁଛନ୍ତି । ରୋଲର ଗଡ଼ୁଛି । ପାଣି ଛାଣୁଛନ୍ତି । ମୁଣ୍ଡରେ ଖୋସିଛନ୍ତି ଜାତି ଜାତିକା ଫୁଲ । ଗଛତଳ ଛାଇରେ ଶ୍ରାନ୍ତି ହରିବାକୁ କେତେ ଝିଅ ବୋହୂ ବସିଛନ୍ତି । ଲହଉଁଆ ସ୍ୱର ଛୁଟାଇ ଦେଇଛନ୍ତି ।

ଏମାନେ ମାଟି ବୋହି ବନ୍ଧରେ ପକାଉଛନ୍ତି । ଚକ୍ ଚକ୍ ଦିଶୁଛି ତେଲି ବୋଳା ମୁହଁଟି ମାନ । ଖୋସାରେ ଫୁଲ । ଟିକକ ଘଣ୍ଟାରେ ହସର ତୋଫାନ ଛୁଟେ । ସହସା ଥମେ । ଛୁଟେ, ଧଇଁସଇଁ ଲୁଟେ । କାଷ୍ଠିବ୍ୟର ଅଟଳ ଅଚଳ ଭେଟି ଆପେ ଲେଉଟେ ।

ସେମାନେ ଭଲ ଭଲକା । ଦେହରେ ସ୍ୱାସ୍ଥ୍ୟ ଓ ଶକ୍ତି ଭରପୁର । ଉଚ୍ଛଳିତ ଯୌବନ ମନ ଉଦ୍ବେଳିତ କରେ । ବିଚଳିତ କରେ ଭାବନା । ଆଖି ଲାଖି ରହେ ନାହିଁ, ଓଲେଇ ହୁଏ । ଭ୍ରମି ଆସେ । ଆପେ ଆପେ ଗୋଡ଼ ହଓଟି ଦେହକୁ ଟାଣି ନିଏ ପାଖକୁ । କେତେ କର୍ମୀ ତତ୍ପର ହୋଇ ଉଠିଲେଣି ଉପରିସ୍ଥ କାମ ଦେଖୁଛନ୍ତି । ଟିକିଏ ଖଇତ୍ରୁ ହେଲେ ବିରକ୍ତ ହେବେ ।

ବେଗି ବେଗି କାମ କର୍‌ରେ ଝୋଙ୍କଏ, ଧୀରେ ଧୀରେ ପାହୁଣ୍ଡ ଚାଲିଲେ କାମ ସରିବ ନାହିଁ, ଖରା ମାଡ଼ି ଆସିବ ।

ଅଭ୍ୟାସ ହୋଇଛି । ଆଖି ସହା ମନସହା ହୋଇଛି ।

ମଣିଷ ପ୍ରକୃତି ଅଛନ୍ତି—ନର ଓ ନାରୀ, ଶିଶୁ, କିଶୋର କିଶୋରୀ, ଯୁବକ ଯୁବତୀ, ବୃଦ୍ଧ ଓ ବୃଦ୍ଧା । ତିନି କାଳର ସମ୍ବଳ । ଥିଲେ, ଅଛନ୍ତି ଓ ଥିବେ ।

ମନ ମନର ଅଜଣା ଅଦେଖା ଝଣା ଓଝରୀ । ସୃଷ୍ଟିର ଉତ୍ସଳ ଢୋଡ଼କୁ ନୟୂନ୍ତଛି ମଣିଷ ଜାତିର ଯୁଗ ଯୁଗର ଉଠାପଡ଼ା ଅତ୍ତଳ୍ପଣା ଗଢ଼ା କୃଷ୍ଟି । ଜନମିଛି ପ୍ରେମ । ଯେନା ଯେନର ପଲ୍ଲବିତ କୁସୁମିତ ପେଲବ ଲତିକା, ବେଢ଼ାଇ ରଖିଛି କାହ୍ନୁଁ ଆସି ଯୋଡ଼ିହୋଇ ହିଁକଲ ହଓଟି ଭେଜିଲ ମନ । ଦୁଇଟି ଦେହ ପାଖେଇ ଆସେ, ଦୂରେଇ ଯାଏ, ପାଖେଇ ଆସେ ଦୁରେଇ ଯାଏ । ଜୀବନ ସାଗରର ଲହଡ଼ି । କିନ୍ତୁ, ଦୁଇଟି ମନକୁ ଯେନାଯେନର ପେଲବ ଲତିକା ବାନ୍ଧି ରଖିଥାଏ । ଦେହ ଦେହ ପର ମନ ମନର ସ୍ବୈରିଣୀ ଭାବନା କେତେ କୁଆଡ଼େ ଉଡ଼ି ଉଡ଼ି ବୁଲେ, ଘୁସୁରିଙ୍କ କପୋତ ପର । ପୁଣି, ନିଜେ ନିଜେ ବାହୁଡ଼ି ଆସେ ଯୋଡ଼ିଲ-ନୀଡ଼କୁ ।

ଆଦ୍ୟ ମାର୍ଗଶିର ।

କୃଷ୍ଣ ପକ୍ଷର କଳାଘୁମର ଶୀତଳ ନିଥର ନୀରବ ରାତି । ତପ୍ତପାଣି ଘାଟି ଉପର ନିବିଡ଼ ଅରଣ୍ୟ ଘେରା ବିମାନଆ ପାହାଡ଼ ମାଳକୁ ଆଚ୍ଛାଦ କରିଛି । ଆକାଶ ଛାତରେ ଲକ୍ଷ କୋଟି ଫୁଟିଲ ତାରା-କୁସୁମ ଗୋଟି ଗୋଟି ହସି ହସିକା ଲେଖି ପଡ଼ୁଛନ୍ତି । କେତେ ପୁଣି ଝରି ପଡ଼ି ବିଜୁଳି ବେଗରେ ଛୁଟି ଅଧ ଆକାଶରେ ମିଳାଇ ଯାଉଛନ୍ତି । ତପ୍ତପାଣି ବଙ୍ଗଳାର ଅଧା ଖୋଲ ଝରକା ବାଟେ ସେ ପାଖର

ଅରଣ୍ୟର ମଥା ଉପରେ ଟେନାଏଁ ଦଶୁଛି । ସେଇ ଫାଙ୍କ ବାଟେ ଦେଖାଯାଉ ଗୋଲାପ ଫୁଲର ଗନ୍ଧ ପଶୁଛି କୋଠରୀ ଭିତରେ । ତପ୍ତ-ପ୍ରସ୍ରବଣର ତଳକୁ ଗଡ଼ିଲା ପାଣିର କ୍ଷୀଣ ଶବ୍ଦ କାନରେ ବାଜୁଛି ।

ଟେବୁଲ୍ ଉପରେ ଜମା ହୋଇ ରଖା ହୋଇଛି ନାଲିଟେଣ । ପଲଙ୍କ ଉପରେ ମଶାରି ତଳେ ପାଖା ପାଖି ହୋଇଛନ୍ତି ମଣିଷ । ନରମିଲା ନଇଁଲା ମନ, ବୋଲକରା ମନ ଛନ୍ଦାଛନ୍ଦି । ଟେକେଇ ତଳେ ହୋଇଛନ୍ତି ଉଷୁମ ଦେହ ଲଗାଲଗି । ଗୋଲାପ ଫୁଲର ମଧୁର ମହକ ରକତ ଭେଦିଛି, ଖେଦିଛି ସାରାଦିନର ଲହଡ଼ିଆ ପାହାଡ଼ ଚଢ଼ାର ଖେଦ, ତେଜଉଛି ମନମହଲରେ ପ୍ରଜ୍ୱଳିତ ଅନୁରାଗର ଆଲୁଅ ।

ଥିରଥିର ରମା ପଚାରିଲା, ସେମାନଙ୍କୁ ଲଜ ମାଡ଼େ ନାହିଁ ? ଦେହ ମୁଣ୍ଡ ଫୁଙ୍ଗୁଳା କରି କପଡ଼ ବଲବଲ କରି ମୁହଁକୁ ଅନାଇଁ ହସି ହସି ନାଚୁଥାନ୍ତି ହୁଅନ୍ତି ସେ ।

ସୁକାନ୍ତ କହିଲା, ପାହାଡ଼ ମାଳର, ଝରଣା କୂଳର ଛନ୍ଦାଛନ୍ଦି ଅରଣ୍ୟ ତଳର, ସରଳ କଳ୍ପ ଘରର ଝିଅ ବୋହୂ ସେମାନେ । ଲଜ ସରମର ବିଷ ପଶିନାହିଁ ତାଙ୍କ ମନରେ । ଦେହ ପରି ମନ ବି ତାଙ୍କର ଫୁଙ୍ଗୁଳା ; ଜାତି ଜାତିକା ଫୁଲପରି ସୁନ୍ଦର ଓ ସୁବାସ । ସେମାନେ ବି ସତେକି ଏଇ ଅରଣ୍ୟ ରାଇଜର ଫୁଲ ଗୁଡ଼ିଏ । ସଭ୍ୟତାର ଧାସ ଧୀରେ ଧୀରେ ପଶୁଛି । ସେମାନେ ବି ଦିନେ ଆମରି ପରି ଭଦ୍ର ହେବେ । ଆଭରଣ ତଳେ ଅନଳ ଲୁଚେଇ ରଖିବେ । ହସ ଓ ଚାହାଣୀରେ ବିଷ ମିଶାଇବେ ।

ରମା ନୀରବ ହେଲା । ମନରେ ଆସିଲା ଅଭିମାନ । ସୁକାନ୍ତର କଥାରେ ଛପିଲା ଆକ୍ଷେପ । ରମା ହସିଲା । କହିଲା, ତମର ଅରଣା ଅସନା ବାସନା ତମ ମନକୁ ଏପରି ଧାରଣା ଆଣିଛି । ବସନ-ବିହୀନ ଦେହକୁ ଯେପରି ତମର ଲୋଭିଲା ନୟନ ବେଷ୍ଟନ କରେ, ତାଆଁଣା କାମନା ଲେହନ କରେ ବସନ ଆବୃତ୍ତ ଦେହକୁ ତମର ଅଶୁଭ ଲୋଭ ବିବସନ କରିବାକୁ ଆଗ୍ରହୀ ହୁଏ ।

ମୁଁ ଜାଣେ ଯେ, ରମା ପୁଣି କହିଲା, ଲଜ ସରମ ଆମର ଧରମ । ସେଥିରେ ବିଷ ନ ଥାଏ । ତମରି ମାନଙ୍କ ଚାହାଣୀ ଯେ ସାପର ଫଣା । ତେଣେ ଦଂଶିବାକୁ

ଧାଅ , ବିଷ ଚହଟାଇବାକୁ ଚାହିଁ । ଆମର କଣୁଆଁ ଚାହାଣୀ ତୁମ ମାନଙ୍କୁ କେବଳ ଆମନ୍ତ୍ରଣ ଜଣାଏ ନାହିଁ, ତିରସ୍କାର କରେ, ଘଉଡ଼ି ଦିଏ । ଆମର ହସ ଖାଲି ତମ ଅଳୁହା ଉଦ୍ଦେଶ୍ୟକୁ ଅନୁମୋଦନ କରେ ନାହିଁ, କି ଆସ ଆସ ବୋଲି ଡାକ ଛାଡ଼େ ନାହିଁ, ତମ ମାନଙ୍କୁ ଅବଜ୍ଞା କରେ, ତଡ଼େ । ତେମେ ପଡ଼, ଆଣ୍ଠୁଗଣ୍ଠି ଛିଣ୍ଡେ, ଭୂଇଁରେ ଗଡ଼, ବ୍ୟଥା ପାଇ ରଡ଼ି । ଅମେ ଆନନ୍ଦରେ ହସୁଁ ।

ସୂକାନ୍ତ ଅବାକ୍ ହୋଇ ଶୁଣିଲା । ରମା ନିର୍ବୋଧ ନୁହେଁ । ସବୁ ସେ ଦେଖିଛି, କଳନା କରିଛି ମଣିଷ ମନର ଦୁର୍ବଳତା ।

ଚଇତ ମାସର ବଡ଼ ସକାଳ ।

ଋଷିକୁଲ୍ୟା ନଦୀକୂଳର ତାରାତାରିଣୀ ପାହାଡ଼ । ଗୁଲ୍ମ ଆଚ୍ଛାଦିତ ପାହାଡ଼ ଉପରେ ଦେବୀଙ୍କର ଶ୍ରେଷ୍ଠ ମନ୍ଦିର । ମନ୍ଦିର ପାଖେଟେର କେତେ ଗୁଡ଼ାଏ ବଡ଼ ବଡ଼ ଗଛ ଅଛି । ନଦୀକୂଳରୁ ଦୂରରୁ ଦେଖାଯାଉଛି । କେଉଁ ଉଦାର ବ୍ୟକ୍ତି ପାହାଡ଼ ତଳୁ ପାହାଡ଼ ଉପର ମନ୍ଦିର ଯାଏ ପାହାଚ କରାଇ ଦେଇଛନ୍ତି । ତଥାପି ଉପରକୁ ଚଢ଼ି ଦେବୀ ଦର୍ଶନ କରି ଓହ୍ଲାଇ ଆସିଲେ ଗୋଡ଼ ଥକି ଯାଏ ।

ପବିତ୍ର ସ୍ଥାନ । ପାଖରେ ପ୍ରବାହିତ ପୁଣ୍ୟତୋୟା ଋଷ୍ୟଶୃଙ୍ଗ ନନ୍ଦିନୀ ଋଷି-କୁଲ୍ୟା ମଧ୍ୟ ତୀର୍ଥସ୍ଥଳ । ଅତି ଆଗ୍ରହରେ ରମା ଆସିଛି ଦେବୀଙ୍କର ଦର୍ଶନ କରିବ । ସଙ୍ଗରେ ବୟସ୍କା ଦାସୀଟିଏ ମଧ୍ୟ ଆସିଛି । ନଦୀ ତଟରେ ଧୀରେ ଧୀରେ ପ୍ରବାହିତ ଜଳ କୂଳରେ ଶାଢ଼ୀ ଧରି ଅପେକ୍ଷା କରିଛି । କେତେ ଅପରିଚିତ ଝିଅ ବୋହୂ ଶିଶୁ ଓ ପୁରୁଷ ଆଣ୍ଠୁଏ ପାଣିରେ ସ୍ନାନ କରୁଛନ୍ତି । ଦେହ ଓ ମନ ପବିତ୍ର କରି ଦେବୀଙ୍କର ଦର୍ଶନ କରିବାକୁ ଯିବେ । ନଦୀ-ଖଣ୍ଡି ଉପରେ ଅପରିଚିତ କେତେ ଭଦ୍ରଲୋକ ଅପେକ୍ଷା କରି ରହିଛନ୍ତି । କଣେଇଁ ଚାହୁଁଛନ୍ତି ପୁଣ୍ୟ-ତୋୟାକୁ । ଡେରି ହେଲେ ଖରା ମାଡ଼ି ଆସିବ । ପାହାଡ଼ ଉପରୁ ଓହ୍ଲାଇବାକୁ କଷ୍ଟ ହେବ ।

ବ୍ରହ୍ମପୁର ବସାକୁ ଫେରିବାକୁ ଡେରି ହେଲା । ଅନଭ୍ୟସ୍ତ ରମା ଅଧିକ କ୍ଳାନ୍ତ ହୋଇ ପଡ଼ିଥିଲା । ତଥାପି, ମନରେ ଆନନ୍ଦ ଓ ଫୁର୍ତ୍ତି । ସତେକି, ସେ ହିମାଳୟ ଅତିକ୍ରମି ଫେରି ଆସିଛି ।

ଭଞ୍ଜକବିଙ୍କର ବାଗ୍‌ଦେବୀ ମନ୍ଦିରକୁ ସେ ଦିନେ ଦୂରରୁ ଅନାଇଁ ଦୀର୍ଘ ଶ୍ୱାସ ଛାଡ଼ିଥିଲା । କୁଲଡ଼ ଦୁର୍ଗର ଭଗ୍ନାବଶେଷ ଦେଖି ସେ ମୁଗ୍‌ଧ ହୋଇଥିଲା । ବ୍ୟାଘ୍ର ଦେବୀଙ୍କୁ ଦର୍ଶନ କରିଥିଲା । ପାହାଡ଼ ମାଳର ନିବିଡ଼ ଅରଣ୍ୟର ସବୁଜିମା ଦେଖି ଆତ୍ମହରା ହୋଇଥିଲା । ମନୋରମ । ପାଖ ପର୍ବତରେ ମଥାନ ତଳକୁ, ନିବିଡ଼ ଅରଣ୍ୟ ଘେରା ଗହ୍ୱର ଆଡ଼କୁ, ମୁଗ୍‌ଧ ଚକ୍ଷୁରେ ଚାହିଁ ହାତଯୋଡ଼ି ନମସ୍କାର କରିଥିଲା ।

ସେଇଠି ରମା, ସେଇଠି, ମହାକବି ଉପେନ୍ଦ୍ର ରାମତାରକ ମନ୍ତ୍ର ସିଦ୍ଧ ହୋଇ-ଥିଲେ । ଦେଖିବାକୁ ଆଗ୍ରହ ହେଉଛି କି ?

ଆଗ୍ରହ ହେଉଛି ତ କିନ୍ତୁ ପାହାଡ଼ ଉପରକୁ ଉଠି ହେବ ନାହିଁ । ଗଛ, ଲଟା, କଣ୍ଟା, ପଥର, ତୀଖ ଉଠାଣି ଦେଖି ସାହସ ହେଉ ନାହିଁ । ଏଇଠି ନମସ୍କାର କରୁଛି । ବୁଦ୍ଧ ଖୋଲ ଦେଖାଇ ବାକୁ ନେଇ ମତେ ଯେଉଁ ହଇରାଣ କରିଥିଲ—

ଅନୁତାପ କରୁଛ ?

ନାଇଁମ । କଷ୍ଟ ନ କଲେ କୃଷ୍ଣ ମିଳନ୍ତି ନାହିଁ । ଗତ ଘଟଣା ମନେ ପଡ଼ିଲେ ଖୁସିଲାଗେ । ପରି ଶ୍ରମ, କଷ୍ଟ, କ୍ଳାନ୍ତି, ଆପଦ ବିପଦ, ଭୟ, ସବୁ ମିଶି ମନରେ ଗର୍ବ ଓ ଆନନ୍ଦ ଆଣେ ପରି ଜୀବନରେ । ତୁମେ ମୋ'ର ହାତ ଧରି ନେଉଥିଲ ।

ଧୀରେ ଧୀରେ ପାଦ ଚିପି ଚିପି ଆସ ରମା, ତୀଖ ପଥର । ତାହାଣକୁ ଚାହିଁ । ସେଇ ଛୋଟ ଜଳପ୍ରପାତଟିକୁ । ତଳେ ବସି ଗାଧୋଇବାକୁ ମନ ହେଉଛି କି ? ନା, ଅବେଳ ହେଲଣି । ସୂର୍ଯ୍ୟ ମୁଣ୍ଡ ଉପରୁ ତଳକୁ ଖସିଲେଣି । ଗଛ ଗହଳ ବୋଲି ଜାଣି ପାରୁ ନାହିଁ । ବୁଗୁଡ଼ା ବଙ୍ଗଳା କେତେ ଦୂରରେ ରହିଲଣି । ବିରଞ୍ଚି ନାରା-ୟଣଙ୍କ ଦେଉଳ ତିନ ମାଇଲ ଦୂରରେ । ଦେଖାଯାଉ ନାହିଁ । କହନ୍ତି, କୋଣାର୍କ ଦେଉଳ ଅପ୍ରତିଷ୍ଠା ରହିଲା ବୋଲି ସୂର୍ଯ୍ୟ ମୂର୍ତ୍ତିଙ୍କୁ ଆଣି ଏଇ ବୁଗୁଡ଼ାରେ ରଖି-ଥିଲେ । ସେଇ ସେ ବିରଞ୍ଚି ନାରାୟଣ । ଦେଖିଲତ —

ଦେଖିଲ, ଚକ୍ଷୁ ପ୍ରତିଷ୍ଠା କଲ । ଏହାର ନାମ ବୁଦ୍ଧଖୋଲ କାହିଁକ ହୋଇଛି ? ଏଇ ଅନ୍ଧାରିଆ ଗହ୍ୱର-ସୁଡ଼ଙ୍ଗ କେତେ ଦୂର ଯାଇଛି ? ବାଘ, ଭାଲୁ, ସାପ ଏହା ଭିତରେ ବାସ କରିଥିବେ ତ ।

ଅସମ୍ଭବ ନୁହେଁ ରମା, ଫେରି ଚାଲ । ଖଣ୍ଡଗିରି ଧଉଳଗିରିର ଗୁମ୍ଫା ସବୁ ପରି ଏ ଗୁମ୍ଫା । ନା, ଗହ୍ୱର ତୈଳ ହୋଇ ନାହିଁ । ଆପେ ଆପେ ହୋଇଛି । ଲୋକେ କହନ୍ତି ବୌଦ୍ଧ-ସନ୍ନ୍ୟାସୀ ମାନେ ପୂର୍ବକାଳରେ ଏହି ନିର୍ଜନ ସ୍ଥାନରେ ବାସ କରୁଥିଲେ । ଗଞ୍ଜାମ ନଗରର ଭଙ୍ଗାନନ୍ଦରର ସୁଡ଼ଙ୍ଗ କଥା ମନେ ପଡ଼ୁଛି କି ?

କି ଅନ୍ଧାର । ଦୁଇଦୁଇଟା ଟର୍ଚ୍ଚ ଅଲୁଅ ଦେଲ ବି ପହରେ ଜାଳଲେ ବି ଡର ଲାଗୁଛି । କିଏ କାହିଁକି ଏ ସୁଡ଼ଙ୍ଗ ଖୋଳାଇଥିଲେ ? କେତେଦୂର ଯାଇଛି ?

ଗଞ୍ଜାମର ରାଜନନ୍ଦର ଭିତରୁ କୁଳ କାମିନୀ ମାନେ ଏହି ସୁଡ଼ଙ୍ଗ ବାଟେ ଋଷିକୁଲ୍ୟା ନଦୀକୁ ସ୍ନାନ କରିବାକୁ ଯାଉଥିଲେ । ରାଜ ପ୍ରାସାଦ ଉପରେ ଶତ୍ରୁ ଆକ୍ରମଣ କଲେ, ବିଜୟର ସମ୍ଭାବନା ନଥିଲେ ଏଇ ଗୁପ୍ତ-ସୁଡ଼ଙ୍ଗ ପଥରେ ଅନ୍ତଃପୁର ବାସୀ ଋଷି-କୁଲ୍ୟାକୁ ଆସି ସେଠାରୁ ବୋଇତ ମାନଙ୍କରେ ଅନ୍ୟତ୍ର ପଳାଇ ଯାଆନ୍ତି । ସବୁ ଭଙ୍ଗିରୁଜି ଏବେ ଶ୍ମଶାନ ହୋଇଛି । ବିରାଟ ଗଞ୍ଜାମ ସହର ତ ଦୈବୀ ଦୁର୍ବିପାକରୁ ଧ୍ୱଂସହେଲ । ଗଞ୍ଜାମଗ୍ରାମଟି ସେହି ବିଖ୍ୟାତ ନଗରୀର ଅଂଶ ।

କି ସୁନ୍ଦର ଏଇ ବୁଦ୍ଧ ଖୋଲର ଝରଣାଟି ମ, ସନ୍ନ୍ୟାସୀମାନେ ଏଇ ଝରଣାରୁ ପାଣି ପିଉଥିବେ ।

ରମା ମୁଣ୍ଡରେ ପାଣି ଛିଞ୍ଚିଲା । ପୁଣି କହିଲା, ଖଲ୍ଲିକୋଟର ନିର୍ମଳ ଝର ବି ଏହିପରି ସୁନ୍ଦର । ପାହାଡ଼ ଭିତରୁ ବାହାରିଛି । ମନ୍ଦିରପାଖ ଅଗଣା ଭିତର ପକ୍କା-କୁଣ୍ଡଟିକୁ ପୂର୍ଣ୍ଣକରି ନାଳବାଟେ ରାସ୍ତା ସେପାଖକୁ ବହି ଯାଉଛି । ମତେ ଭାରି ଭଲ ଲାଗେ । ସେ ସ୍ଥାନ ଛାଡ଼ି ଚାଲି ଆସିବାକୁ ମନ ହୁଏ ନାହିଁ ।

ମନ୍ଦିରର କାନ୍ଥ ଓ ଖମ୍ବ ଗୁଡ଼ିକରେ ଯେଉଁ ଅଶ୍ଳୀଳ ମୂର୍ତ୍ତି ଗୁଡ଼ିକ ଖୋଦିତ ହୋଇଛି ସେ ଗୁଡ଼ିକ ଦେଖିବାକୁ ମନ ହୁଏକି ?

ନିର୍ଲଜ ! ତେମେ ଖାଲି ସେଇଆ ଦେଖୁଥାଅଛ ବୁଲି ବୁଲିକା ? ତମ ମନ ଅତି ଅସନା ।

ମୁଁ କଳା ଦେଖୁ ଥାଏ । କୋଣାର୍କ ମନ୍ଦିର, ଜଗନ୍ନାଥ ମନ୍ଦିର, ଭୁବନେଶ୍ୱରର ରାଜାରାଣୀ ମନ୍ଦିର । ସବୁଠି ଅଛି ସେ ଅଦ୍ଭୁତ କଳ୍ପନା । ସେ ଯୁଗର କଳା ।

ତାରାତାରିଣୀ ମନ୍ଦିର-ପାହାଡ଼ ପାଖ ଋଷିକୁଲ୍ୟା କୂଳରେ ଠିଆ ହୋଇ ସ୍ନାନରତା କୁଳକାମିନୀଙ୍କ ଅଙ୍ଗକୁ ନିର୍ଲଜ ଆଖିରେ କଣେଇ ଚାହୁଁଥିଲ କାହିଁକି ? କେଉଁ କଳା କି ଧଳା ଦେଖୁଥିଲ ମ ?

ତମର ଅସାବଧାନତାକୁ ଅନ୍ୟ ମାନେ ଲକ୍ଷ୍ୟ କରୁଥିବାର ଦେଖି ମୋ'ର ଦୃଷ୍ଟିରେ ତମକୁ ଆବୃତ କରୁଥିଲି ।

ତମର ସଲଖ ମୁହଁ ମୁଁ ଦେଖିଛି କିନ୍ତୁ ଦୃଷ୍ଟି ଦେଖି ନାହିଁ । ସେ ଦୃଷ୍ଟି ଅନ୍ୟ କେଉଁଠି କଅଣ ଉଣ୍ଡୁ ଥିଲ । ଅନ୍ୟମାନଙ୍କର ବାଙ୍କିଲି ମୁହଁର ତେରଛା ଗ୍ରାସିଲ ଦୃଷ୍ଟି ମୁଁ ଦେଖିଛି । ସେ ଦୃଷ୍ଟି ଯେପରି ଅନୁନୟ କରି କହୁଛି, ଆହୁରି ଟିକେ ଅସାବଧାନ ହୁଅ । ସମସ୍ତେ ତେମେ ବେହିଆ । ତେମେ ଯାହା ଅନ୍ୟ ପାଖରୁ ଆଶାକର, ନିଜେ ସେତକ ଦେବାକୁ ଚାହ ନାହିଁ । ଛି — ।

ରମା କଡ଼ ବୁଲାଇଲ । ଗୋଲପର ଗନ୍ଧ ନାକରେ ବାଜୁଛି । ଝରକା ବାଟେ ତପ୍ତପାଣି ଘାଟି ଉପର ବଙ୍ଗଳାର କୋଠରୀ ଭିତରକୁ ଅଧରାତିର ହେମାଳ ପଶି ଆସୁଛି । ସୁକାନ୍ତ ଅଭିମାନିନୀ ରମାର ଦେହରେ ହାତ ପକାଇଲ ।

ସେ ନାହିଁ ହାତକୁ ଲାଗୁ ନାହିଁ । ରେଜେଇ ଭିତରୁ ପଦାକୁ ବାହାରି ଗଲଣି ।

କଇଁ କଇଁ ଶୁଙ୍ଖୁଛି । କାନ୍ଦୁଛି ପରା ! ମଶାରି ବାହାରେ ଠିଆ ହେଲଣି । କୋହ ଉଠୁଛି ।

ତୁମେ ମତେ ଭଲ ପାଅ ନାହିଁ । ତମର ପିଲ ହଉଛନ୍ତି, ତେମେ ରଖ । ତାଙ୍କ କଥା ତମକୁ ଲାଗିଲ । ମୁଁ ଯାଉଛି । ଯେତେ ଯାହା କଲେ ମୋ କାମ ତମ ମନକୁ ଆସୁନାହିଁ । ମୋ ରୂପ, ଢଙ୍ଗ, ବେଶ, କଥା ସବୁଥିରେ ତମର ନାକ ଟେକା ।

ବୁଇଟି ପିଲର ମା ମୁଁ । ତାଙ୍କୁ ଗଢ଼ି, ରକତ ଦେଇ ବଢ଼ାଇଲି ତାଙ୍କର ଜଞ୍ଜାଳରେ ନିଜକୁ ଭୁଲିଲି । ତମର ପିଲି ସେମାନେ, ଯାହାଙ୍କୁ ତୁମେ ଗଳା ମାଳି କରିଥାଅ । ତାଙ୍କ ଦେହରେ ମଇଳା ଟିକେ ଦେଖିଲେ, ତାଙ୍କ ନାକରୁ ପାଣି ଟିକେ ଗଡ଼ିଲେ ତୁମେ ମତେ ଝିଙ୍ଗାସ ।

ତମର ସ୍ନେହ ଓ ପ୍ରେମର ପ୍ରତିମା ଦିଓଟି । ତମର ଆନନ୍ଦ ପାଇଁ ତାଙ୍କର ମୁ ଯତ୍ନ ନିଏ । ତାଙ୍କର ସେବାକରି ତମ ସେବାର ତୃପ୍ତି ଲଭେ । ତାଙ୍କର ଭିତରେ ତମକୁ ଦେଖେ । ତମ ଭିତରେ ସେମାନଙ୍କୁ ଉପଲବ୍ଧି କରେ । ତୁମର ପାଇ ତୁମକୁ ମୁଁ ଭୁଲେ । ତୁମେ ମତେ କ୍ଷମା କଲ ନାହିଁ । ମୁଁ ତମର ଅଲୋଡ଼ା ।

କବାଟ ଖୋଲି ରମା ଚାଲି ଯାଉଛି ।

ପାଗଳ ହେଲ କି ରମା ? ତୁମର ପାଇଁ ମୁଁ ତୁମକୁ ଶାସନ କରେ । ରହ, ଶୁଣ — ।

ସୁକାନ୍ତ ବିଚଳିତ ହୋଇ ଉଠିଲି । ଆଖି ଖୋଲିଲି । ଅନ୍ଧାର ଘୋଟି ରହିଛି । ଝିପି ଝିପି ବରଷାର ଶବଦ ଶୁଭୁଛି । ଉଠି ବସିଲି । ଆଲୁଅ ଜାଳିଲି । କବାଟ ଖୋଲି ପଦାକୁ ଆସିଲି ।

ଦୂର ଆକାଶ କୋଣରେ, ପାହାଡ଼ ମାଳ ଉପର ପାତଳ ବାଦଲ ଘେର ଅରଣ୍ୟର ମଥା ଉପରେ ଅତି କ୍ଷୀଣ ଅସ୍ପଷ୍ଟ ଆଲୋକର ଆଭା ରାତି ସର ଆସୁଛି ।

କର୍ମୀମାନେ ଏବେବି ନିଶ୍ଚିନ୍ତରେ ଶୋଇଛନ୍ତି । ସେମାନେ ଭାଗ୍ୟବାନ୍ । ଏକା ସେ ହତଭାଗ୍ୟ । ରମା ନାହିଁ । ତା’ ପ୍ରତି ସେ ବୃଥାରେ କଠୋର ହୋଇଛି ।

ରମା କାନ୍ଦୁଛି ।

ସୁକାନ୍ତର ମନ ବାହୁନି ଉଠିଲି । ରମାର ଲୁହଝର ମୁହଁ, ଫୁରୁଫୁରୁ ଅଲସ କେଶ, ଅସଂଯତ ବେଶ ଆଖିରେ ବସିଲି । ମନ ହେଲି, ସେ ଧାଇଁ ଯିବ । ହସି ହସି

ସେଇ ଶୁଖିଲ ମୁହଁରେ ଗେଲ କରବ । ଫୁରୁଫୁରୁ କେଶକୁ ଆଙ୍ଗୁଠିରେ ସଜାଡ଼ି କହିବ, ତମ ସଙ୍ଗେ ଝୁର୍ ଖେଲବ ଲଗାଇବାକୁ ମତେ ଭଲ ଲଗେ । ତେମେ ବ ତ ସେଇଆ କର । ତମକୁ ମୁଁ ସବୁ ରୂପରେ ଦେଖିବାକୁ ଚାହେଁ । ବୁଝି ପାରୁନ ?

ଚାଲାନ ଗୁଡ଼ା ନାଳର ପାଣି ବାହୁନ ଉଠୁଛି । କର୍ତ୍ତବ୍ୟ ଡାକ ପଡ଼ୁଛି ।

ବହକା ଜଳ ନିଷ୍କାସନୀ ନାଳର କାମ ଶେଷ ହୋଇଛି । ଜଳ-ଅଟକା ଅସ୍ଥାୟୀ ବନ୍ଧ ଖୋଲ ହୋଇଛି । ଆନିକଟର ଦୁଇଟି ଫୁକାରର କବାଟ ଅଧା ବନ୍ଦ କରା ଯାଇଛି । ଡାହାଣପାଖ ବଡ଼ ନାଳର ସ୍ଲୁସ୍‌କବାଟ ଖୋଲ ଯାଇଛି । ଅବାଧ ଗିରିଝରଣାକୁ ଆୟତ୍ତ କରା ହୋଇଛି । ସେ ପୋଷା ମାନଛି । ତଥାପି, ସେ ଗର୍ଜୁଛି । ଛଟପଟ ହେଉଛି । ଖଲ୍ଲସୀ-ନାଳର ସ୍ପିଲ୍ ବନ୍ଧ ଡେଇ ଆରପାଖେ କଚାଡ଼ ହୋଇ ପଡ଼ୁଛି । ସେଇଠୁ ସୁଧର ହୋଇ ଦୁଇକୂଳ ମାଡ଼ି କଲକଲ ହୋଇ ବହି ଚାଲିଛି । ଅଧମାଇଲ ପରେ ପୁଣି ପୁରୁଣା ଝରଣାରେ ମିଶି ଯାଉଛି । ପଥୁରିଆ ଝରଣାର ସେହି ପୁରୁଣା ଅରଣା ଶଯ୍ୟାରେ ଗଡ଼ଗଡ଼ ବହି ଯାଉଛି ତଳକୁ । ପୁଣି ତାର ଅବାଧ ଗତି । ମନଫୁଲ କଲକଲ ଗୀତ । ଫେନିଲ ହସ । କିନ୍ତୁ, ଦେହଟି ଶୀର୍ଣ୍ଣ ।

ସୁକାନ୍ତ ତନ୍ମୟ ହୋଇ ଚାହିଁ ରହିଲା । ପାଖରେ କେତେ ସହକର୍ମୀ ଠିଆ ହୋଇଛନ୍ତି । ସେମାନେ ମଧ ଝରଣାକୁ ଅନାଇଁ ରହିଛନ୍ତି । ମନ ଦେଖୁଛି ଏହି ଯୁବକ ଇଞ୍ଜିନୀୟରଙ୍କୁ । କପର ଲୋକ ସେ ? ତାଙ୍କୁ କଅଣ ଭୋକ ଶୋଷ ହୁଏ ନାହିଁକି ? ସକାଳୁ ଆସି କର୍ମ-କ୍ଷେତ୍ରରେ ଉଭା । ସେ ସେନାପତି । କାନ୍ତିବାବୁ ଓ ଅନ୍ୟାନ୍ୟ ସହକର୍ମୀ ମାନେ ତାଙ୍କର ଲେଫ୍‌ଟେନାଣ୍ଟ । ଶ୍ରମିକ ମାନେ ତାଙ୍କର ସୈନ୍ୟ—ପୁରୁଷ, ନାରୀ ଓ ଶିଶୁ । କୋଡ଼, କାଙ୍କ, ଶାବଲ, ଟୋକେଇ, ଗାଣ୍ଡି ଆ ତାଙ୍କର ବନ୍ଧୁକ କମାଣ ଓ ସଂଗ୍ରାମର ଉପକରଣ । ପ୍ରକୃତିର ଏହି ଅବାଧ ଝରଣାକୁ ସେ ଜୟ କରିଛନ୍ତି । ପୋଷା ମନାଇଁଛନ୍ତି । ମଣିଷର ମଙ୍ଗଳ ପାଇଁ ତାକୁ

ସେ ନିୟନ୍ତ୍ରଣ କରୁଛନ୍ତି । ଆଦେଶ ଦେଇ ସେ ନିଶ୍ଚିନ୍ତ ରହୁ ନାହାନ୍ତି  ଆବଶ୍ୟକ ସ୍ଥଳେ ନିଜେ ସେ ହାତରେ ଧରୁଛନ୍ତି କୋଡ଼ି କାଙ୍କ । ମୂଲିଆ ମୁଣ୍ଡରୁ ମାଟିର ବୋଝ ଟେକି ଦେଉଛନ୍ତି ।

ଶ୍ରେଷ୍ଠ ପାହାଡ଼ ତଳ ଝରଣାକୂଳ, ମହୁଲ ଗଛତଳେ ଧବଳ ଉପଳ ଉପରେ ବସି ମନ ଖୁସିରେ ପେଜ୍ ପିଉଛନ୍ତି ଶ୍ରମିକମାନଙ୍କ ସଙ୍ଗରେ । ଶ୍ରମିକ ଘରଣୀ, କନ୍ୟା ରୂପିଣୀ ଗାଦବା ରମଣୀ ସଙ୍କୋଚ, ସ୍ନେହ ଓ ଆଗ୍ରହଭରା ଉଜ୍ଜ୍ୱଳ ଦୃଷ୍ଟିରେ କଣେଇ ଅନାଇ ପରେ ଠୁଙ୍ଗାରେ ନାଉ ତୁମ୍ବାରୁ ପେଜ୍ ଢାଳି ଦେଉଛି । ମାଣ୍ଡିଆ ଚୂନା, ଖୁଦ ଓ ଲବଣ ମିଶା ପେଜ୍ । ତୃଣ୍ଡକୁ ଅମୃତ ପାରଣା ପରି ଲାଗିଲା ବୋଲି ସେ କହୁଛନ୍ତି ।

ତମର ପାଇଁ ଏଇ ଝରଣାର ପାଣି ଅଟକ କରା ହୋଇଛି ମା । ସେ ପାଖ ନାଳରେ ପାଣି ଯିବ । ଜଙ୍ଗଲ କଟା ହୋଇଛି । ଆହୁରି ଜଙ୍ଗଲ କଟା ହେବ । ନୂଆ ଜମି ବାହାରିବ । ସେ ଜମିରେ ପାଣି ମାଡ଼ିବ । ଧାନ, ମୁଗ, କାନ୍ଦୁଲ, ଆଉ କେତେ ଜାତର ଫସଲ ଉଠି ହେବ । ମୋର ଏଇ ଛିଡ଼ା ଛିଡ଼ା ଭାଇ ଭଉଣୀ ମାନେ ବଳରେ କାମ କରିବେ । ନିଜ ଜମିରୁ ନିଜେ ଫସଲ କାଟିବେ । ସୁଖ ଆନନ୍ଦରେ ରହିବେ । ଆମେ କାମ ଅଧା ରଖିବା ନାହିଁ, ଶେଷ କରିବା । ଚାଲ— ।

ଉତ୍ସାହ ଓ ଆନନ୍ଦରେ ସମସ୍ତେ କାମ କରୁଛନ୍ତି । ବେଳ ବୁଡ଼ି ବୁଡ଼ି ଆସୁଛି । କ୍ଳାନ୍ତ ସୁକାନ୍ତ ଅନକଟ ପାଖକୁ ଆସିଲେ । ଡାକି ଦେଖିଲେ । ଫୁଟାର ଗୁଡ଼ିକର କବାଟ ଅଧ ଖୋଲା ହୋଇଛି । ଝରଣାର ଜଳ କବାଟ ଡେଇଁ ଝରଣାର ତଳ ପାଖ ପାହାଚଆ ସିମେଣ୍ଟ ଚଟାଣ ଉପରେ ପଡ଼ି ଡେଇଁ ଡେଇଁକା ପ୍ରବଳ ବେଗରେ ତଳକୁ ବୋହି ଯାଉଛି ।

ପଛକୁ ମୁହଁ ଫେରାଇଲେ । ଝରଣାର ଅସ୍ତିତ୍ୱ ହଜୁଛି ଅଟକଲ ଚଉକାର ଜଳ ରାଶିରେ । ଦୁଇ ପାଖର ମାଟିବନ୍ଧ ଦୂରରେ ଦୁଇ ପାହାଡ଼ର ଗଣ୍ଡିରେ ମିଶିଛି । ପାଣି ଅଟକିଛି । ଦୁଇ ଆଡ଼ର ପାହାଡ଼ ମାଳର ତଳପା ଯାଏ ବୁଡ଼ି ରହିଛି । ମଝିରେ ମଝିରେ ମୁଣ୍ଡଟେକି ଠିଆ ହୋଇଛନ୍ତି କେତେ ଜାତର ଗଛ । ସୁନ୍ଦର ଦିଶୁଛି । ଧ୍ୟାନ ମଗ୍ନ ଋଷିଟି ମାନେ ସତେକି ।

ମନେ ପଡ଼ୁଛି ଅଦୂର ଅତୀତର କଥା । ଦେଖୀ ନଦୀର ବଢ଼ି ।

ସବୁ ପରିଶ୍ରମ ବିଫଳ ହୋଇଛି । ଦିନରାତି ଜଗି ବନ୍ଧରେ ମାଟି ପକାଉଛନ୍ତି ସାତ ଶ ଲୋକ । ଦେଖୀ ନଦୀ ବେଳକୁ ବେଳ ଫୁଲି ଉଠୁଛି । ଏପାଖି ବନ୍ଧ ଉପରେ ଠିଆ ହୋଇ ସେ ପାଖକୁ ଚାହିଁଲେ ଦେଖା ଯାଉଛି କେବଳ ଗୋଳିଆ ଜଳ ରାଶି । ପ୍ରଖର ସ୍ରୋତରେ ନଦୀ ମଝିରେ କେତେ ବଡ଼ ବଡ଼ ଗଛ ଭାସି ଯାଉଛନ୍ତି । ବର୍ଷା ଲୁଚୁଛି । ଦଲକା ଛାଡ଼ୁଛି । ନଦୀ ବନ୍ଧକୁ ଅଧେ ଖାଇ ଗଲଣି । ସହସ୍ର ସହସ୍ର ବାଲି ବସ୍ତା ପାଣି ଭିତରକୁ ପକାଇ ବନ୍ଧକୁ ରକ୍ଷା କରିବାକୁ ଚେଷ୍ଟା କରୁଛନ୍ତି । ଘାସକୁଦ ବନ୍ଧର ସବୁ ଫାଙ୍କାର ଖୋଲ ହୋଇଛି । ପାଣି ଅଧିକ ବଢ଼ିବ । ଲୋକେ ସତର୍କ ହୋଇ ଉଚ୍ଚ ସ୍ଥାନକୁ ଚାଲି ଯିବାକୁ ଚେଷ୍ଟା କଲେଣି । ମଣିଷ ଉଦ୍ୟମ କରୁଛି । ଫଳାଫଳ ତା ହାତରେ ନାହିଁ ।

ଉଦ୍ୟମ ସଫଳ ହେଲ ନାହିଁ । ରାତି ଅଧରେ ବନ୍ଧ ଭାଙ୍ଗିଲ । ପର୍ବତ ପ୍ରମାଣେ ଜଳରାଶି ଗର୍ଜି ଗର୍ଜି ଛୁଟିଲ ଗହୀର ମାଳକୁ । ଅନ୍ଧାର ରାତି । ହାହାକାର ଛୁଟିଲ ଅନ୍ତରୀକ୍ଷକୁ । କଟକ ସଦର ଥାନାର କେତେ ଗ୍ରାମ ଜଳାର୍ଣ୍ଣବ ହେଲ ।

ମଣିଷ ହାରିଲ ।

ପ୍ରକୃତି ଜିତିଲ । ପ୍ରକୃତି ହସିଲ ।

ଯୁଆଡ଼େ ଚାହିଁଲେ ଦିଶେ ସୀମାହୀନ ଜଳରାଶି । ଚଳକା । ଛୋଟ ଛୋଟ ଦ୍ୱୀପ ପରି ଦୂର ପାଖ ଗ୍ରାମମାନଙ୍କର ଅନ୍ଧାରିଆ ଅବସ୍ଥିତି ।

ଚାରା ନାହିଁ ବୋଲି ମଣିଷ ହଟି ରହି ନାହିଁ । ଉପାସ ଭୋକ ସହୁଛି । ରୋଗ ବଇରାଗରେ ଛଟପଟ ହୋଇଛି । ବଞ୍ଚି ରହିବାକୁ ଚେଷ୍ଟା କରୁଛି । ସାମାନ୍ୟ କେତେଜଣ ପ୍ରାଣ ହରାଇଛନ୍ତି ସତ, ମଣିଷ ବଂଚିଛି । ପରସ୍ପର ପ୍ରତି ସହାନୁଭୂତି,

ସ୍ୱାର୍ଥତ୍ୟାଗ, ନିଜର ଜୀବନକୁ ବିପନ୍ନ କରି ଅପରକୁ ଉଦ୍ଧାର କରିବାର ପ୍ରବୃତ୍ତି ମଣିଷକୁ ବଂଚାଇଛି ।

ଇଞ୍ଜିନିୟର ସୁକାନ୍ତର ବିଫଳ ଉଦ୍ୟମ ତାକୁ ବିବ୍ରତ କରି ନାହିଁ । ଡରକୁ ଓଟାରି ନାହିଁ । ତା ଭିତର ମଣିଷ ପଣିଆଁ ତାକୁ ଆଗକୁ ଠେଲିଛି ।

ନବପରିଣୀତା ପତ୍ନୀ ରମା ଅତୁଳ ବିକଳ ହୋଇ ବାଟକୁ ଅନାଇଁ ବସିଥିବ । ଦିଶି ଯାଉଛି ତାର ଲୁହ ଛଳଛଳ ଆଖି ।

ଦିଶି ଯାଉଛି—ଦୂର ଗାଆଁର ଭାସିଲା ମଥାନ ଉପରେ ନବବଧୂଟିଏ । ବଞ୍ଚି ରହିବାକୁ ଭାସିଲା ଖୁଲକୁ ଧରିଥିଲା । ଓହୋ ସରସର । ବଢ଼ି ପାଣିର ସୋଡ଼ରେ ଭାସି ଯାଉଛି । କାହାନ୍ତି ତାର ସ୍ୱାମୀ, ଶଶୁର, ଶାଶୁ ଓ ଦିଅର ନଣନ୍ଦ ମାନେ ?

ଗଛ ଡାଳରେ ଆଶ୍ରା ନେଇଛନ୍ତି କେତୋଟି ଲୋକ, ଶିଶୁ ଦିଓଟି । ହୋଇ, ଦିଶି ଯାଉଛି । ଖୋଳେ ଗଛଟି । ପାଣି ଫୁଲି ଉଠୁଛି । ଗଛ ବୁଡ଼ିବ । କଅଣ କରିବେ ସେମାନେ ?

କାଠ ଖଣ୍ଡେ ଧରି ଉବେଇ ଡୁବେଇ ହୋଇ ଭାସି ଯାଉଛନ୍ତି ସ୍ନେହମୟୀ ଜନନୀ ।

ମାଟି ହାଣ୍ଡିଟିରେ ଦେଢ଼ ବର୍ଷର ଶିଶୁ । ତରଙ୍ଗର ତାଲେ ତାଲେ ନାଚିନାଚି ମରଣ ମୁହଁକୁ ଆଗେଇ ଯାଉଛି । ଭୟରେ ଚିତ୍କାର କରୁଛି ।

ମାରିବ ସେ ? ନାହିଁ, ନାହିଁ ।

ସୁକାନ୍ତ ତାର କର୍ତ୍ତବ୍ୟ କରିଛି । ଇଞ୍ଜିନିୟର ପଣ ହାରିଛି, ମଣିଷ ପଣିଆଁ ଜିତିଛି ।

ସେବକ ସୁକାନ୍ତ ବିଜୟ କେତନ ଧରି ଫେରି ଆସିଛି । ଖବର କାଗଜ ପ୍ରଚାର କଲା—ଇଞ୍ଜିନିୟର ଓ ଆଉ କେତେ କର୍ମୀ ଭାସି ଗଲେ । ପତ୍ତା ମିଳୁ ନାହିଁ । ଖବର କାଗଜ ଘୋଷଣା କଲା, ଇଞ୍ଜିନିୟର ସୁକାନ୍ତ ଉଦ୍ଧାର କାର୍ଯ୍ୟରେ ମନପ୍ରାଣ

ଛାଳ ଦେଇଛନ୍ତି । ଖାଦ୍ୟ, ବସ୍ତ୍ର, ଔଷଧ, ସ୍ୱେଚ୍ଛାସେବକ ଗ୍ରାମେ ଗ୍ରାମେ ଉପସ୍ଥିତ ହେଲେଣି ।

ମୁଁ ଫେରି ଆସିଛି ରମା, ଗୋଟିଏ ଜୀବନ ଧରି ଫେରି ଆସି ନାହିଁ, କେତେ ଜୀବନ ରକ୍ଷା କରି ପାରିଛି । ସେମାନଙ୍କ ଭିତରେ ତେମେ ମଧ୍ୟ ଥିଲ । ଜାଣୁଛ ନାହିଁଛି ?

ସତେ, ମୋର ମନ ପ୍ରାଣ ଉଡ଼ି ଯାଇଥିଲା । ଦେହଟା ଛଟ ପଟ ହେଉଥିଲା । ଖବର କାଗଜ ପ୍ରଚାର କଲା ତୁମେ ହଜିଛ, ତୁମେ ଭାସି ଯାଇଛ । ବାଇଆଣୀ ପରି କହକର ଯେତେ ଦେବା ଦେବୀ ଅଛନ୍ତି ସମସ୍ତଙ୍କ ପାଖକୁ ଧାଇଁଲି । ଆଖି ଲୁହଛାଳ ଗୁହାରି କଲି । ଖବର କାଗଜ ପ୍ରଚାରିଲା, ତୁମେ ଉଦ୍ଧାର କାର୍ଯ୍ୟରେ ଲାଗିଛ । ପିଣ୍ଡରେ ମୋର ପ୍ରାଣ ପଶିଲା । ଦେବା ଦେବୀଙ୍କ ପାଖରେ ମୋର ପ୍ରାର୍ଥନା ବ୍ୟର୍ଥ ହୋଇ ନାହିଁ । ଆହୁରି ପ୍ର ର୍ଥନା କଲି ।

ଆହୁରି ପ୍ରାର୍ଥନା କରି ରମା, ମନରେ ଶକ୍ତି ଆସିବ । ସବୁ ଦେବାଦେବୀଙ୍କର ସ୍ୱରୂପ, ପ୍ରତାପ ଓ କରୁଣା ତମରି ମନ ମନ୍ଦିରରେ ଜାଗିବ । ଶାନ୍ତି ଓ ସାନ୍ତ୍ୱନା ଲଭିବ । ମୁଁ ପ୍ର ର୍ଥନା କରିଥିଲି । ମନରେ ଶକ୍ତି ସଞ୍ଚରି ଥିଲା ।

ପାଣିର ପାରିବାରରେ ସହକର୍ମୀଙ୍କ ସଙ୍ଗରେ ବସି ନୌକା ଭସାଇ ଉଦ୍ଧାର କାର୍ଯ୍ୟରେ ଲାଗିଥିଲି । ଯେଉଁମାନେ ଦୁଃଖ ଦୁର୍ଦ୍ଦଶା ଭୋଗିଲେ, ପ୍ରାଣ ହାରିଲେ, ସେମାନେ ମଧ୍ୟ ପ୍ର ର୍ଥନା କରିଥିଲେ । ପ୍ରକୃତି ଅଟ୍ଟହାସ୍ୟ କରିଥିଲା । ମୁଁ ମଧ୍ୟ ଅଟ୍ଟ-ହାସ୍ୟ କରିଥିଲି ।

ମନ କହୁଥିଲା, ସତେ, ଏତେ ହସୁଛୁ ? ମୁଁ ଏ ଯୁଗର ଇଞ୍ଜିନିୟର । ଏଥରକ ତୁ ଜିତିଲୁ ଲେ ଛଇଳା ଛଟକୀ । ତୁ ବଡ଼ ପାରଙ୍ଗମ । ଏକଥା ଆମେ ଜାଣୁ । କିନ୍ତୁ, ତତେ ଆମେ ବାନ୍ଧିବୁ, ବୋଲ ମନାଇବୁ, ଆମ କାମରେ ଲଗାଇବୁ । ତତେ ଆମେ ସଜାଇବୁ, ସୁନ୍ଦର କରିବୁ ।

ବାଇଆ ହେଲକି, କଅଣ ଏଣୁ ତେଣୁ ବକୁଛ ?

ସତେଉ, ତୁମକୁ ମୁଁ ଗେଲ କରି ନାହିଁ ।

ଷ୍ଟେପର୍ । ଉହ ମ । ଜାମା ଯୋଢା ପାଲ୍ଟ ।

ଚାଲନ୍ ଗୁଡ଼ାର ନାଳ ବନ୍ଧା ହୋଇଛି । ଦୁଇ ପର୍ବତ ଧାଡ଼ିର ଉପତ୍ୟକାରେ ପାଣି ଜମା ହେ ଇଛି । ସଞ୍ଚିତ ମହାଜଳଷ୍ଟାଇ ମାଡ଼ି ଆସୁଛି । ଦୂରର ପାହାଡ଼ ଉପର ଗଛଗହଳ ଅନ୍ଧାରିଆ ଦିଶି ଆସିଲଣି । ଆକାଶର ଶୂନ୍ୟଆ ଉପରେ ଭାସିଲ ବାଦଲ ପାଉଳ କଳା ।

ନୂଆ ନାଳର ବନ୍ଧ ଉପରେ ସୁକାନ୍ତ ଚାଲିଛି । ପଛେ ପଛେ ସହକର୍ମୀମାନେ ସହସ୍ର ଶ୍ରମିକଙ୍କର ହାତର ଯନ୍ତ୍ର କଟୁଣାର ଅମୃତ ଧାର୍ ନାଳରେ ନାଚ ନାଚ ଚାଲିଛି । ତଳର ଗହିର ମାଳରେ ପାଣି ମାଡ଼ୁଥିବ । ଅନାବାଦୀ ଜଙ୍ଗଲ ଭୂଇଁ ପରିଷ୍କାର ହେଉଛି । ନୂଆ ଜମି ବାହାରୁଛି, ଆହୁରି ବାହାରିବ । ନୂଆ ଗ୍ରାମ ବସିବ । ପାହାଡ଼ ଉପରୁ ଓହ୍ଲାଇ ଆସିବେ କନ୍ଧ, ଗାଦବା ଓ ଶବରମାନେ । ନୂଆଗ୍ରାମରେ ରହିବେ । ଚାଷ ବାସ କରି ସୁଖରେ ବଂଚିବେ । ମଣିଷ ପରି ମଣିଷ ହେବେ ।

ହଁ, ଅବଶ୍ୟ ହେବେ ।

କିପରି ହେଲ ଏ କାମ, ଏହିପରି ସହସ୍ର କାମ ? ଟଙ୍କା ଖରଚ ହୋଇଛୁ ? ଟଙ୍କାର ତ ଗୋଡ଼ ହାତ ନାହିଁ, ଟଙ୍କା କାମ କରେ ନାହିଁ, କାମ କରାଏ । କୁହୁକ ନହେ, ସତ୍ୟ ବାସ୍ତବ । ଟଙ୍କା ଛପା ଯାଏ । ଯେଉଁ ହାତ ଅଳସ ରହିଥାନ୍ତା ସେଇ ହାତ କାମରେ ଲଗିଲ, କେତେ କାମ ହେଲ । କେତେ କାମ ହେବ ।

ଟଙ୍କା ବେଶି ହେବାରୁ ପଦାର୍ଥର ମୂଲ୍ୟ ବଢ଼ୁଛି, ଫଚଲ ଧନର ମୂଲ୍ୟ କମୁଛି । କମୁ । ଫଚଲ ଧନ ନଥିଲ ସଙ୍ଗେ ସମାନ । ଉପାସିଆ ଲୋକେ ଖାଇବାକୁ ପାଉଛନ୍ତି । ଫାଙ୍ଗଲା ଦେହରେ ବସନ ବେଢ଼ା ହେଉଛି । ଯେଉଁମାନଙ୍କର ରୋଜ-ଗାର ସ୍ଥିର ସେମାନଙ୍କର ଚଳନର ମାନ କମୁଛି । ସେତିକି ଅସୁବିଧା ।

ତଥାପି, ଅଳସ ହାତ କାମରେ ଲଗୁଛି । ନୂଆ ନୂଆ ଲୋକ ଉପକାରୀ କାମ ମୁଣ୍ଡଟେକ ଠିଆ ହେଉଛି ।

ଗୁଲନ୍‌ଗୁଡ଼ା ନାଳ ପୋଷା ମାନୁଛି । ଉପରିକମାନେ ଆସି ଦେଖିବେ । ଖୁସି ହେବେ । ପ୍ରଶଂସା କରିବେ । କିନ୍ତୁ, ନିନ୍ଦା ବା ପ୍ରଶଂସାରୁ ମିଳିବ କଅଣ ? ମନପ୍ରାଣ ଓ ଲକ୍ଷ୍ୟ ଲିହ ଢାଳି ସେ କାମ କରିଛି । କାମ କରାଇଛି । ପରିଶ୍ରମ ତାର ସାର୍ଥକ ହୋଇଛି । ଆଶୀର୍ବାଦର ପ୍ରସ୍ରବଣ ପେନ୍ନ ମନ ଖୁସିରେ ନୂଆ ନାଳରେ ପାଣି ପ୍ରବାହିତ ହେଉଛି । ଏତିକି ସୁକାନ୍ତର ପୁରସ୍କାର, ତା'ର ଆନନ୍ଦ ।

ଆରଥର ଆସିଲା ବେଳକୁ ସେ ନିଶ୍ଚୟ ରମାକୁ ସଙ୍ଗରେ ଆଣିବ । ପିଲା ଦିହେଁ ଆସିବେ । ସମସ୍ତଙ୍କୁ ସାଥିରେ ଧରି ସେ ବୁଲିବ । ରମାକୁ କହିବ, ବୁଝିଲ ତ ଏବେ, କାହିଁକି ସେଦିନ ମୁଁ ଅସ୍ଥିର ହୋଇ ପଡ଼ିଲି ? ତମ ଉପରେ ମୁଁ ବିରକ୍ତ ହୋଇ ନ ଥିଲି । କେଉଁଠା ଲୁଣିଆ, କେଉଁଠା ଅଲୁଣା ସେ କଥା ମୋ ଭୁଣ୍ଡ ଚାଖି ଥିଲା, ମନ ପେନ୍ନ ନ ଥିଲା ।

ମନ ସେଠାରେ ନଥିଲା ରମା, ମନ ଭ୍ରମୁଥିଲା ଏଇଠି, ଏଇ ଅରଣ୍ୟପିନ୍ଧା ପାହାଡ଼ ମାଳ ଉପରେ, ସନ୍ତସନ୍ତିଆ ଉପତ୍ୟକା ଓ ଅତି ଗହୀରା ଖୋଲମାନଙ୍କରେ, ଗୁଲନଗୁଡ଼ାର ଅମାନିଆ ଝରଣାର କୂଳରେ । ମନ କଥା କହୁଥିଲା ଏଇଠି କାମ-କରୁଥିବା ଶହଶହ ଶ୍ରମିକଙ୍କ ସଙ୍ଗରେ । ମନର ଭୋକ ଦେହର ଭୋକକୁ ଗ୍ରାସ କରିଥିଲା । ଦାୟିତ୍ୱର ଧାରଣା ଉତ୍ତେଜନାର ଅଚ୍ଛଣ୍ଡା- ରଙ୍ଗରେ ମୋଟେ ଟାଣୁଥିଲା ।

ଅଧ-ଲଙ୍ଗୁଳୀ ଅଲଜୁକୀ ଅସହୀ ଗଦବା ଘରଣୀ ଲଡ଼ୁଭମ୍ବାକୁ ପଚର ଠୁଙ୍ଗାରେ ଯେଉଁ ପେଜ ଢାଳିଦେଲା, ଅମୃତ ପାରଣା କହି ସେତକ ଉଦରସ୍ଥ କଲି କିପରି ? ଦେହର ଭୋକ ମନର ଭୋକକୁ ଗ୍ରାସ କରିଥିଲା କି ?

ଭାବନା ଭିତରେ ରମା ହସୁଛି । ସେ ହସ ସତେକି ଉପହାସ କରୁଛି । କହୁଛି, କାରଣ ମତେ ଅଜଣା ନାହିଁ । ନାଳର ପାଣି କଳ କଳ ହୋଇ ବହି ଯାଉଛି । ହସୁଛି । ସେ ନିସ୍ପନ୍ଦିତ ହୋଇଛି । ଗଡ଼ି ଯାଉଛି ତଳକୁ । କଥା କହୁଛି, ଭୂଇଁ ପାଖର ନୂଆ ବନ୍ଧରେ ଯେଉଁଠି ମିଳିବ ଫାଙ୍କ, ସେଇଠେ ମୁଁ ପଶିବି । ଘଇଲା

କରିବ । ବନ୍ଧ ଭାଙ୍ଗିବ । ମନଖୁସିରେ ସ୍ୱାଧୀନ ହୋଇ ମାଡ଼ି ଚାଲିବ । ଅବାଧ୍ୟ ଉଦ୍ଦାମ ମନ ଓ ତାର ପ୍ରବାହ ଉତ୍ତେଜନା ପରି, ସେ ସବୁକୁ ଯେପରି ଯୁଗଯୁଗର କୃଷ୍ଟି ମାଟିବନ୍ଧ ଦେଇ ନିୟନ୍ତ୍ରଣ କରିଛି ।

ସଞ୍ଜ ହୋଇ ଆସିଲା ଆଜ୍ଞା, ଆଉ କେତେଦୂର ଯିବା ? ବଣ ପାହାଡ଼ର ଦେଶ । କେତେବେଳେ କେଉଁଠି କନ୍ତୁଠାଏ ବାହାରି ପଡ଼ିବ । ଆକାଶରେ ମେଘ ଘୋଟି ଆସିଲଣି । ଆସନ୍ତୁ ଫେରିଯିବା ।

ସାହସ କରି କାନ୍ତରାଟି ସୁବୁଦ୍ଧି କହିଲେ ।

ସୁକାନ୍ତ ନିଜ ଭିତରକୁ ଫେରି ଆସିଲା । କହିଲା, ହଁ, ଏଥର ଫେରିବା । ବନ୍ଧର ଅନେକ ସ୍ଥାନରେ ମାଟି ଭଲ ହୋଇ ପିଟା ହୋଇ ନାହିଁ । ବନ୍ଧ-ଉପର ସମତୁଲ ହୋଇ ନାହିଁ । ଏ ସବୁ ବାକିଥିବା କାମ ପ୍ରତି ଶୀଘ୍ର ନଜର ଦେବ ସୁବୁଦ୍ଧି ବାବୁ । କାଲି-ଠୁଁ ଏଇ ବନ୍ଧ କାମରେ ଲୋକ ଲଗାଅ !

ଆଜ୍ଞା, ହଁ ।

ସମସ୍ତେ ଫେରିଲେ । ଆନିକଟ୍ ପାଖରେ ସୁକାନ୍ତ କହିଲା, ମୂଲିଆମାନେ ସମସ୍ତେ ଚାଲିଗଲେ ଯେ । ଫୁକାର ଗୁଡ଼ିକରୁ ଆହୁରି ପଟା କବାଟ ଟେକି ଦିଅ । ନଦୀରେ ଅଧିକ ପାଣି ଛାଡ଼ିଦିଅ । ନାଳ ଫୁକାର ଓ ଖେଲସୀ-ନାଳର ଫୁକାରମାନଙ୍କରେ ଦୁଇଟିକରି ଫୁଟିକିଆ କବାଟ-ପଟା ଲଗାଅ ! ଅଧିକ ପାଣି ଛାଡ଼ିବ ନାହିଁ ।

ସୁବୁଦ୍ଧି କହିଲେ, କରାଇ ଦେବି ଆଜ୍ଞା । ଆଜି ଆମ ଗ୍ରାମରେ କର୍ମୀମାନଙ୍କର ଭୋଜି ହେଉଛି । ନାଟ ହେବ । ମୂଲିଆମାନେ ଯିବେ ।

ସୁକାନ୍ତ ଉତ୍ତର ନ ଦେଇ ଆଗକୁ ଚାଲିଲା । ସେ ଜାଣେ, ସୁବୁଦ୍ଧି ତାକୁ ନିମନ୍ତ୍ରଣ କରୁଛନ୍ତି । ସୁବୁଦ୍ଧି ବେପାରୀ ଘରର ପିଲା । ବାପ ଅଜା ମଦ ବେପାର

ଧରି ବନ୍ଧକ ଧନ ସମ୍ପତ୍ତି କରି ଯାଇଛନ୍ତି । ଅଶିକ୍ଷିତ ଆଦିବାସୀଙ୍କର ସୁବିଧା ସ୍ନେହର ସୁଯୋଗ ନେଇ ସେମାନେ ପାଖକୁ ପଶଣ କରି ମଦ୍ୟପମାନଙ୍କର ଭୂସମ୍ପତ୍ତି ଝୋଣି ନେଇ ହଜର କରି ସାରିଛନ୍ତି । ଯେଉଁମାନଙ୍କର ସେ ସବୁ ଭୂମି ଥିଲ ସେମାନଙ୍କର ପୁଅନାତି ସବୁଦ୍ଧିଙ୍କର ଗୋତି ହୋଇ ସେହି ସବୁ ଜମି ଚାଷ କରୁଛନ୍ତି ସତ, ଫସଲ ଯାଉଛି ସୁବୁଦ୍ଧିଙ୍କ ଅମାରକୁ । ଗୃଲନଗୁଡ଼ା ଗହିରର ସବୁ ଭଲ ଜମି ସୁବୁଦ୍ଧି ବଂଶର । ନାଲ ପାଣି ଆଗ ମାଡ଼ିବ ସେହି ସବୁ ଜମିରେ । ସୁବୁଦ୍ଧିତ କାନ୍ତ୍ରାଷ୍ଟି । ମନ ପ୍ରାଣ ଦେଇ କାମ କରାଇଛନ୍ତି । ତାଙ୍କର ଗୋତିମାନେ ମଧ କାମ କରିଛନ୍ତି ।

ସୁବୁଦ୍ଧିଙ୍କର ବୟସ ହେବ ତିରିଶି । ଗୋରା ତକ ତକ ବଳିଷ୍ଠ ଦେହ । ବଡ଼ ମଣିଷ । ସୁନ୍ଦର ଦେହ । ଖ୍ଳେଷ୍ଟ ଖ୍ଳେଷ୍ଟ ଜଣ । ଦଶମ ଶ୍ରେଣୀ ଯାକେ ପାଠ ପଢ଼ିଛନ୍ତି । ଇଂରେଜି, ଓଡ଼ିଆ, କନ୍ଧ, ପରଜା ଓ ସଉରା ଭାଷା ଜାଣନ୍ତି । ଭାଷା-ଜ୍ଞାନ ତାଙ୍କୁ ବଡ଼ ଲୋକ କରିଛି । ଯେଉଁ ବିଭାଗର ଯେଉଁ ଅଧିକାରୀ ଗୃଲନ-ଗୁଡ଼ାରେ ପଦଧୂଳି ପକାନ୍ତି । ସମସ୍ତଙ୍କର ସେ ତତ୍ତ୍ୱ ନଅନ୍ତି । ସମସ୍ତଙ୍କୁ ସେ ଆପ୍ୟାୟିତ କରନ୍ତି ।

ସୁକାନ୍ତକୁ ସେ ପୋଷା ମଣାଇ ପାରି ନାହାନ୍ତି । ସୁକାନ୍ତ ଅଡ଼ୁଆ ଲୋକ । ଆଦର୍ଶ ପଛରେ ଗୋଡ଼ାଇ ଥାଏ । କଡ଼ା ହାକିମ । ନକ୍ତେ ତ କାମରେ ହାତ ଦିଏ । ମୋହବତ୍ତି କଣ ଜାଣେ ନାହିଁ । ନାଚ ତାମସା ଦେଖିବାକୁ ଗଲେ ପାଞ୍ଚଦଶ ମିନିଟ୍ ରହି ଗୃଲି ଆସେ ।

ସୁବୁଦ୍ଧି ନାଚ କରାଉଛନ୍ତି । ଛେଳ ମେଣ୍ଢା ହଣା ହେବେ । ମଦର ସୁଅ ଛୁଟିବ । ନାଲ କାମ ଶେଷ ହୋଇଛି । କର୍ମୀମାନେ ଓ ଗ୍ରାମବାସୀମାନେ ଆନନ୍ଦ କରିବେ । ଦଲ ଦଲ ହୋଇ ଧାଙ୍ଗଡ଼ା ଧାଙ୍ଗଡ଼ୀ ନାଚ କରିବେ । ନିଜ ନିଜ ଭାଷାରେ ଗୀତ ବୋଲିବେ ।

ଏକା ପରିକା ସେ ସ୍ୱର, ଏକା ପରି ସେ ନାଚ । ଦେଖି ଦେଖି ଶୁଣି ଶୁଣି ଅଭ୍ୟାସ ହୋଇ ଗଲଣି । ଭଲ ଲଗେ ନାହିଁ । ତଥାପି ନାଚ ପାଖକୁ ଯିବାକୁ, ଠିଆ ହୋଇ ଦେଖିବାକୁ ଅଗ୍ରହ ହୁଏ । ଗୀତ ତ ବୁଝି ହୁଏ ନାହିଁ, ସମବେତ ସ୍ୱର ଓ ବାଦ୍ୟର ଉଠପଡ଼ ମୂର୍ଚ୍ଛନା ଭଲ ଲଗେ ପରା ।

ବାହୁଡ଼ା ଦଶମୀ ସଞ୍ଜ । ଆକାଶ ମେଘାଚ୍ଛନ୍ନ, ତଥାପି ଜୟପୁର ଦାଣ୍ଡରେ ଲୋକଭିଡ଼ । ମୋଫସଲ ଅଞ୍ଚଳରୁ ପାହାଡ଼ ମାଳ ସେପାଖରୁ, କୋରାପୁଟ ଘାଟି ପାହାଡ଼ ମାଳ ଅନ୍ଧକନ୍ଦରୁ ସ୍ତ୍ରୀ ଓ ପୁରୁଷ ଶହ ଶହ ଆସିଛନ୍ତି । ଦଶହରା, ଦେବାଳୀ, ରଥଯାତ୍ରା ପର୍ବ- ମାନଙ୍କରେ ଏହିପରି ଭିଡ଼ ହୁଏ ।

ଦେଅ ଦର୍ଶନ ସାରି ସୁକାନ୍ତ ବାବୁ ମଠ ମାଉସୀ ଘର ମନ୍ଦିରରୁ ଫେରୁଛନ୍ତି । ସଙ୍ଗରେ ଅଛି ରମା । ପିଲା ଦିଓଟିଙ୍କୁ ଘରେ ଛାଡ଼ି ଆସିଛନ୍ତି । ବିଜୁଳି ଆଲୁଅରେ ଜୟପୁର ଦାଣ୍ଡ ଉଜ୍ଜ୍ୱଳ ଦିଶୁଛି । ଠାଏ ଠାଏ ମୋଫସଲରୁ ଆସିଥିବା ଝିଅମାନେ ଅଣ୍ଟାଧରାଧରି ହୋଇ ଗୀତ ବୋଲି ନାଚୁଛନ୍ତି । ବାଇଦ ବାଜୁଛି । ସେଇଠି ଲୋକ ଭିଡ଼ ।

ଦେଖ ରମା ।

ରମା ଦେଖିଲା । କହିଲା, ଆସନ୍ତୁ, ଲୋକ ଭିଡ଼ । ଠେଲା ପେଲା ହେଉଛନ୍ତି ।

ସୁକାନ୍ତ ଆଗେଇ ଗଲେ । ପାଖେ ପାଖେ ରମା । ଆଉରି ଠାଏ, ସେଇ ନାଚ । ସୁକାନ୍ତ ଅଟକିଲେ । ଦେଖିଲେ ।

ରମା କହିଲା, ଗଲନ୍ତୁ, କଅଣ ଏତେ ଦେଖୁଛ ? ସବୁତ ଏକା ପରିକା । ପିଲାଏ ଖୋଜୁଥିବେ ।

ହଉ ଗଲି । ନାଚ ଓ ଗୀତ ସିନା ଏକା ପରିକା ସ୍ଥାନ ଓ ଲୋକ ଭିନେ ଭିନେ ।

ତୁମେ ସ୍ଥାନ ଦେଖ ବା ଲୋକ ଦେଖ, ବା ନାଚ ଦେଖ, ମତେ ଆଗ କହ ତ ?

ସୁକାନ୍ତ ଭାବିବାକୁ ଲାଗିଲା । ଏ ବିଷୟରେ କେବେ ସେ ମୁଣ୍ଡ ଖେଳାଇ ନାହିଁ । ଦେଖିବାକୁ ଆଗ୍ରହ ହୁଏ । ସେ ଝାଣି ହୋଇ ଯାଏ । ଦେଖେ, ଶୁଣେ, ଭୁଲେ ।

ମୁଁ ଏ ସବୁର ସମାବେଶ ଦେଖେ ।

ରମା ହସି ଉଠିଲା । ଆଉ କିଛି ପଚାରିଲା ନାହିଁ । ତାର ସେହି ଧୀର ଓ ଅଳପା ହସରୁ ସୁକାନ୍ତ ବୁଝିଲା ଉତ୍ତରଟା ଠିକ୍ ତା ମନକୁ ପାଇଲା ନାହିଁ । ସତେକି ତାର ହସ ସ୍ପଷ୍ଟ ଭାବରେ କହିଲା, ମୋ ପ୍ରଶ୍ନର ଉତ୍ତର ତୁମେ ଭଲକରି ଜାଣ କିନ୍ତୁ ମନ ଖୋଲି କହିବ ନାହିଁ । ତୁମେ ସ୍ଥାନ, ଲେକ କି ନାଚ ଦେଖ ନାହିଁ, ଗୀତ କି ବାଦ୍ୟ ଶୁଣ ନାହିଁ । ଆଉ ଆଉ ପୁରୁଷମାନଙ୍କ ପରି ତୁମେ ବି ଦେଖ ସୃଜନ ସ୍ରୋତର ପ୍ରବାହ । ଉଠୁପଡ଼ ଲହରୀ ମାଳ । ଶୁଣ ତାର କଳକଳ ରାଗିଣୀ ।

ସୁକାନ୍ତ ମୁହଁ ବୁଲାଇ ଚାଲନଗୁଡ଼ାର କଳକଳ ନାଦନୀ ତରଙ୍ଗମାଳନୀ ଝରଣା ଆଡ଼କୁ ଚାହିଁଲା । ଆଖି ଫେରାଇଲା ନୂଆ ନାଳରେ ପ୍ରବାହିତ ଜଳକୁ ନୀରବ ଓ ନିୟନ୍ତ୍ରିତ ସରଳ ଗତି ଦାମ୍ପତ୍ୟ ଜୀବନର ପ୍ରବାହ ପରି । ପ୍ରେମର ଉଚ୍ଛନ୍ନ ଉଚ୍ଛଳ ତରଙ୍ଗକୁ ବିବାହ ବିଧାନ ନିୟନ୍ତ୍ରଣ କରେ । ଦୁଇ କୂଳର ମଝିରେ ଚାଲେ ଅନାବିଳ କଳକଳ ଜୀବନ ସ୍ରୋତ ।

ସୁବୁଦ୍ଧିଙ୍କର ଅନୁରୋଧ ସେ ରଖି ପାରି ନାହିଁ । ଲେଖାପଢ଼ା କାମର ଆଳରେ ସେ ଚାଲନଗୁଡ଼ା ଗ୍ରାମକୁ ଯାଇ ପାରି ନାହିଁ । ଅନ୍ୟମାନଙ୍କ ଯିବାରେ ବାଧା ଦେଇ ନାହିଁ । ଡ୍ରାଇଭର ପୁନାମ ସିଂ ଚାଲି ଯାଇଛି । ଆଜି ସେ ଆକଣ୍ଠ ପାନ କରିବ । ଯେତେ ବୁଝାସୁଝା କଲେ କି ଧମକାଇଲେ ସେ ମାନେ ନାହିଁ । ସୁବିଧା ପାଇଲେ ଅଟକି ରହେ ନାହିଁ । ସୁରା ସାଗର ସନ୍ତରଣ କରେ । ସୁକାନ୍ତ ସୁବୁଦ୍ଧିଙ୍କୁ ସାବଧାନ କରି ଦେଇଛି ।

ନିଶାନିବାରଣ ନୀତି ଏ ଜିଲ୍ଲାରେ କାର୍ଯ୍ୟକାରୀ ହେଲା । ମଦଭାଟି ଓ ମଦ ଦୋକାନ ସବୁ ଉଠାଇ ଦିଆ ହୋଇଛି । ଅବକାରୀ ଆୟ ବାର୍ଷିକ ଦଶବାର ଲକ୍ଷ ଟଙ୍କାର ମୋହ ସରକାର ଛାଡ଼ି ଦେଇଛନ୍ତି ! ସମ୍ବିଧାନ-ସମ୍ମତ ନିଶାନିବାରଣ ପାଇଁ ବଳିଷ୍ଠ-ପଦକ୍ଷେପ । ସାଧୁ ଉଦ୍ୟମ ।

ଅରଣ୍ୟ ମଝି ଝୋଲ ଓ ଝରଣା ସନ୍ଧିରେ ପାହାଡ଼ ମାଳ ତଳେ ଅବାଧରେ ମଦରନ୍ଧା ହେଉଛି । ଆବାଳ ବୃଦ୍ଧ ବନିତା ଆଶା ମେଣ୍ଟାଉଛନ୍ତି । ଆଦିବାସୀ କୁଟୁମ୍ବରେ ପିଲାଟିଏର ଜନ୍ମ, ନାମ କରଣ, ଘେନାଘେନି, ବିବାହ, ମରଣ, ଶ୍ରାଦ୍ଧ ଓ ଅନ୍ୟାନ୍ୟ ସବୁ ପର୍ବପର୍ବାଣିର ପ୍ରଧାନ ଉପକରଣ ମଦ୍ୟ !

ଶିକ୍ଷା ପ୍ରସରିବ, ଆର୍ଥିକ ଅବସ୍ଥା ସୁଧୁରିବ, ସାମାଜିକ ପ୍ରଥା ଓ ଚଳଣି ବଦଳିବ, ଅନ୍ଧବିଶ୍ବାସ ଅପସରିବ, ଧର୍ମକର୍ମର ଧାରଣା ମାର୍ଜିତ ହେବ, ତେବେ ଯାଇଁ ସୁରା-ରାକ୍ଷସର କବଳରୁ ମରଣ ପଥ ଯାତ୍ରୀ ଆଦିବାସୀ ରକ୍ଷା ପାଇବ । କେବେ ଆସିବ ସେ ସୁଦିନ, ସୁକାନ୍ତ ବୁଝି ପାରେ ନାହିଁ ।

ସେ ଏତିକି ଜାଣେ ଯେ ସେ ଇଞ୍ଜିନିୟର । ଯହିଁ ଯିବ ସେଠାରେ ସେ ମନ-ପ୍ରାଣ ଦେଇ କାମ କରିବ । ନାଳ ବାନ୍ଧି ଭୂମିରେ ପାଣି ମଡ଼ାଇ ଦେଶର ଉତ୍ପନ୍ନ ବଢ଼ାଇବ, ନୂଆନୂଆ କୋଠା ବାଡ଼ି ତୋଳିବ । ରାସ୍ତା ପିଟାଇ ଯାତାୟାତର ସୁବିଧା କରିବ । ଜଳପ୍ରପାତରୁ ବିଜୁଳି କାଢ଼ି ତାର ଖଞ୍ଜି ସହର ଓ ମୋଫସଲକୁ ଶକ୍ତି ଯୋଗାଇବ । ସେ ଇଞ୍ଜିନିୟର ଦେଶର ଗଠକ, ଗଠନର ରକ୍ଷକ । ସେ ଅଗ୍ରଗାମୀ । ସେ ପୁରୋହିତ । ପୂରର ହିତ ସାଧକ । ସେ ଏତିକି ଜାଣେ, ଏତିକି ବୁଝେ । ଏହି ଉଦ୍ଦେଶ୍ୟରେ ସେ କର୍ମରେ ବ୍ରତୀ ହୁଏ ! ଗୃଲନ୍‌ଗୁଡ଼ା ନାଳର ପାଣି କାହା ଜମିରେ ମାଡ଼ିବ, କାହାର ଧନ ବଢ଼ାଇବ, ସେ କଥା ସେ ଭାବିବ ନାହିଁ ।

ସୁକାନ୍ତ କାଗଜ ଉପରୁ ଦୃଷ୍ଟି ଟେକିଲା । ରିଷ୍ଟ-ଓ୍ୱାଚକୁ ଗୃହିଁଲା । ରାତି ନଅଟା ହେବ । ଉଚ୍ଚ ଟୁଲ୍ ଉପରେ ପେଟ୍ରୋମାକ୍ସ ଜଳୁଛି । ଖୋଲା ଦରଜା ବାଟେ ବାହାରର ଅନ୍ଧାରିଆ ଅରଣ୍ୟ ଭିତରୁ ଶହଶହ ବିଭିନ୍ନ ଜାତିର ପତଙ୍ଗ ଆସି ଆଲୁଅକୁ ପରିକ୍ରମା କରୁଛନ୍ତି । କେତେ ଆସି ଟେବୁଲ୍ ଉପରେ ପଡ଼ୁଛନ୍ତି । କେତେ

ବସିଛନ୍ତି ସଫେଦ୍ କାନ୍ଥ ଉପରେ । ଡଜନ ଗୃହଗୋଧି ଝିଟିପିଟି ହୁରେଇ ହୁରେଇ କାନ୍ଥରେ ଲାଗି ରହିଛନ୍ତି । ସୁବିଧା ଦେଖି ଧାଇଁଆସି ପତଙ୍ଗମାନଙ୍କୁ ଧରି ଗିଳି ଦେଉଛନ୍ତି । ପୁଣି, କିଛି ନ ଜାଣିଲା ପରି ଶାନ୍ତ ହୋଇ ଠିକ ରହୁଛନ୍ତି । ଦେଖୁଛନ୍ତି ପତଙ୍ଗ ପଲର ନାଚ । ତନ୍ମୟ ଭାବ । ଦୃଷ୍ଟିରେ ସାବାସ୍ ସାବାସ୍ ସଙ୍କେତ ।

ଶାଳନ୍ଗୁଡ଼ା ଆଡ଼ୁ ଧାଙ୍ଗଡ଼ୀମାନଙ୍କର ଲହଡ଼ୀଆ ଲମ୍ବିଲା ସ୍ୱର ରାତିର ଶୀତୁଳିଆ ପବନରେ ଭାସି ଆସୁଛି । ଧାଙ୍ଗଡ଼ାମାନଙ୍କର ବାଦ୍ୟ ବାଇଦର ସ୍ୱର ମିଶିଛି ସେଥିରେ ।

ସେମାନେ ବି ପତଙ୍ଗ ପରି । ସୁବୁଦ୍ଧି ଓ କେତେ ବାବୁ ଭାଗ୍ୟା ଝିଟିପିଟି ପରି ଠାକ ବସିଥିବେ । ଠାକୁ କରି ଗିଳିବାକୁ ମନ କରୁଥିବେ । ଓଠ ଚାଟୁଥିବେ ।

ବୁଢ଼ା ପିଅନ ଅଗାଧୁ ଯିବାକୁ ଛଟପଟ ହେଉଥିଲା । ଭରସି କରି ସୁକାନ୍ତର ଅନୁମତି ସେ ମାଗିଲା ନାହିଁ । ରୋଷାଇ କରିବ କିଏ ? ସେ ତା'ର କର୍ତ୍ତବ୍ୟ ବୁଝେ । କେତେ ଥର ଆସି ଅନାଇ ଗଲାଣି । ବାବୁ କାମରେ ମନ ଦେଇଛନ୍ତି । ଅବାଗିଆ ଲୋକ ବୋଲି ତାର ଡର ।

ଚଉକିଦାରର ଯୁବତୀ ଝିଅ ସଙ୍ଗେ ସେ କଥାଭାଷା ହେଉଛି । ଅଗାଧୁର ପାଟି ଶୁଭୁ ନାହିଁ । ଝିଅଟିର ଖିଲ୍ ଖିଲ୍ ହସ ଶୁଭୁଛି । ଚୌକିଦାର ବାରଣ୍ଡାରେ ବସି ଢୁଳାଉଛି । ଜମ ଲୋକ । ଅଳପ ପିଇଛି ! ତାର ଘରଣୀ ସାନସାନ ପିଲାଙ୍କୁ ଧରି କୁଡ଼ିଆ ଭିତରେ ଅଛି ।

ସୁକାନ୍ତକୁ ସବୁ ଜଣା । ସୁବୁଦ୍ଧି ବୁଦ୍ଧିର ଜାଲ ଖେଳାଇଛନ୍ତି ? ସୁକାନ୍ତ ମନେ ମନେ ହସିଲା । ଉଠିଲା । ନଥି ପତ୍ର ଓ ନକ୍ସା ବାନ୍ଧି ଟେବୁଲ୍ର ଗୋଟିଏ ପାଖରେ ରଖିଲା । ଆଉ କେତେ କାମ ବାକି ଅଛି । ବୋଧହୁଏ ଦୁଇଦିନ ଲାଗିବ । ବର୍ଷା ଭଲ ସମ୍ଭାଳିଛି । ଏହାପରେ ଶୁଖିଲା ପାଗ ହେଲେ ହୁରୁଖୁରୁରେ ସବୁ କାମ ସରିବ । ସେ ନିଶ୍ଚିନ୍ତ ହୋଇ ଫେରିବ

ସୁକାନ୍ତ ଅଗାଧୁକୁ ଡାକିଲା । ତା' ପଛେ ପଛେ ଆସିଲା ଶୋଭାବତୀ, ଚଉକି-ଦାରର ଝିଅ । ତିନିବର୍ଷ ଶାଶୁଘରେ ଖଟିଲାଣି । ମଦୁଆ ବର କଥା ଅକଥାରେ

ମାଡ଼ ଦିଏ ବୋଲି ବାରମ୍ବାର ସେ ବାପଘରକୁ ପଳାଇ ଆସେ । ବାପ ବୁଝା ସୁଝା କରି ପୁଣି ଜୋଇଁ ସଙ୍ଗରେ ପଠାଇ ଦିଏ । ଆଉ ଥର ସେ ଶୁଦ୍ଧାରି କରି ସବୁକଥା ସୁକାନ୍ତ ଆଗରେ କହୁଥିଲା । ପରାମର୍ଶ ମାଗୁଥିଲା ।

ଉତ୍ତର ପାଇଲା, ଦୁହିଁଙ୍କର ମନ ନ ମିଳୁଛି ତ ତୋ ଝିଅକୁ ଆଉ କେଉଁଠି ଭଲ ପାତ୍ର ଦେଖି ଉଠାଇ ଦେ । ତମ କୁଳରେ ତ ଚଳେ । ବାହାର ଲୋକେ ଏଥିରେ କିଛି କରି ପାରିବେ ନାହିଁ ।

ଶୋଭାବତୀ ବୋଧହୁଏ କଳିଆ କରି ପୁଣି ଆଜି ଚାଲି ଆସିଛି । କାଲିତ ସେ ନଥିଲା ?

ଉଣେଇଶି କୋଡ଼ିଏ ବର୍ଷର କଳା ମିଟମିଟ ଅଲପ ମୋଟାଳିଆ ବାଙ୍ଗର ଝିଅଟି । ଧଳା ଶାଢ଼ୀଟିଏ ପିନ୍ଧିଛି । ଦେହରେ ନାଲି ଛିଟର ବ୍ଲାଉଜ । ମୋଟାଳିଆ ଅଂକୁ ଆଣ୍ଟିକରି ଗୁଡ଼ାଇ ଧରିଛି । ଗୋଲ ଓ ମାଉଁସିଆ କଜଳ କଳା ମୁହଁ ଜଡ଼ାତେଲ ମାଲିସ୍ ହୋଇ କୁନ୍ଦାଳ ପରି ଦିଶୁଛି । କଳା ବାଳର ଖୋସାରେ ଗୁଡ଼ା ହୋଇଛି, ବଣରୁ ତୋଳା ଧଳା ଓ ମହକ ଫୁଲମାଳ ।

ଶୋଭାବତୀ ଘରବାହାରେ ଠିଆ ହୋଇ ଭିତରକୁ କଣେଇଁ ଚାହୁଁଛି । ମୋଟା ମୋଟା ଓଠ ଦଫାଳରୁ ଧୋବଳ ଝରିବ ହସ ଖସି ପଡ଼ୁଛି ।

ଅଗଧୁ କହିଲା, ଢେ଼ର ହେଲଣି ଆଜ୍ଞା, ଆଜି ସେତକ କାମ କରି ଥାଉନ୍ତୁ । ଦିନ ସାରା ପରିଶ୍ରମ କଲେ, ଉପାସ ରହିଲେ, ରାତି ଅଧ ହେଲା, ଆଉ କଅଣ ?'

ଆଚ୍ଛା, ଏଥର ଭାତ ବାଢ଼ । ଏ ଅଲୁଅ ପଦାକୁ ନେଇ ନଲ୍ଠନଟା ବାରଣ୍ଡାରୁ ଆଣି ରଖ । କେତେ ପୋକ ଦେଖୁଛୁ ତ ? ଘର ଭିତର ଭଲକରି ଓଳାଇ ଦିଅ । ଚଉକିଦାର କୁଆଡ଼େ ଗଲା ?

କାନ୍ଥକୁ ଆଉଜି ଠେଙ୍ଗା ଧରି ଜଗି ବସିଥିଲା । ଆଜି ସେ ପେଟେ ପିଇ ହୋଇଛି । ବାରଣ୍ଡା ଉପରେ ଠେଳ ପଡ଼ିଲଣି । ଠେଙ୍ଗାଟାକୁ କିନ୍ତୁ ଜାବୁଡ଼ି ଧରିଛି । ଶ୍ବୈରଠେସ୍କର କି ବଣଜନ୍ତୁ ଆସିଲେ ଯେଇ ଠେଙ୍ଗାକୁ ଦେଖି ଡରି ପଳାଇବେ ।

ଅଗାଧ୍ ହସିଲା । ସୁକାନ୍ତ ହସିଲା । ବାରଣ୍ଡା ଉପରେ କବାଟକୁ ଆଉଜି ଠିଆ ହୋଇଥିବା ଶୋଭାବତୀ ହାତ ଟେକିଲା । ଅଳସ ଭାଙ୍ଗିଲା ଭାବରେ ଉଡ଼ମୋଡ଼ ହେଲା । ଅଣ୍ଟା ପାଖରୁ ପଛ ଆଡ଼କୁ ଅଳପ ବଙ୍କେଇ ହୁଇ ପାଟି ଧୋବ ଦାନ୍ତ ଦେଖାଇ ହୁଁ ହୁଁ କରି ହସି ଉଠିଲା ।

ସୁକାନ୍ତର ମନରେ ଭାବନା ଆସିଲା, ମଦୁଆ ଚଉକିଦାର୍‌ଟାକୁ ବର୍‌ଖାସ୍ତ କରି ଆଉ ଗୋଟିଏ ଭଲ ଚଉକିଦାର୍ ନିଯୁକ୍ତ କରିବ । ବଙ୍ଗଳାଘରେ ସରକାରୀ ଟେବୁଲ୍, ଚଉକି, କୋଡ଼ି, କାଙ୍କ ଇତ୍ୟାଦି କେତେ ପଦାର୍ଥ ରଖା ହୋଇଛି । ମଦୁଆଟାର ଦାୟିତ୍ୱରେ ଛାଡ଼ି ଓଭରସିଅର ବାବୁ ନିଶ୍ଚିନ୍ତ ରହିଛନ୍ତି କିପରି ?

ଓଭରସିଅର ଅମ୍ବିକା ଚରଣ ପ୍ରୌଢ଼ । ପିଲପିଲି ଧରି ସେ ଚାଲନ୍‌ଗୁଡ଼ାରେ ରହନ୍ତି । ସାତଟି ସନ୍ତାନ । ସବୁ ଗୁଡ଼ିକ ପୁଅ ବୋଲି ଲୋକେ ତାଙ୍କୁ ଭାଗ୍ୟବାନ୍ ବୋଲି କହନ୍ତି । ବଡ଼ ତିନି ପୁଅ ସମ୍ବଲପୁରରେ ପଢ଼ନ୍ତି । ଘରେ ବୁଢ଼ା ବାପଙ୍କ ପାଖରେ ରହନ୍ତି । ସେମାନଙ୍କ ତଳେ ଜନମିଲା ପୁଅ ଦିଓଟି ମାମୁଘରେ ସୁନ୍ଦର-ଗଡ଼ରେ ରହି ପଢ଼ନ୍ତି । ସାନ ଦିଓଟି ତାଙ୍କ ପାଖରେ । ସେ ଧର୍ମୀ ଘରର ପୁଅ । କାର୍ଯ୍ୟଦକ୍ଷ, ସଚ୍ଚୋଟ ଓ ସ୍ନେହୀ । ଭଗବତ୍ ଗୀତା କଣ୍ଠସ୍ଥ କରିଛନ୍ତି । ସବୁବେଳେ ଆବୃତ୍ତି କରି ଶୁଣାଇବାକୁ ବ୍ୟଗ୍ର । ମନରେ ଦୟାଭାବ ଥାଏ । ତେଣୁ, ମଦୁଆ ଚଉକିଦାର୍‌ଟାକୁ କାର୍ଯ୍ୟରୁ ଅନ୍ତର କରିବାକୁ ଚାହାନ୍ତି ନାହିଁ ।

ଦୋଷ ତା'ର ଥାଇପାରେ ଅଛି, ଦୋଷ ତ ତା'ର ପିଲାକୁଟୁମ୍ବଙ୍କର ନୁହେଁ । ସେମାନେ ଖାଇବାକୁ ନପାଇ ମରି ଯିବେ । ଏ ଲୋକଟା ଚାକିରିରୁ ଗଲେ ଚୋରି କରିବ । ଆଉ, ମୁଁ ତା'କୁ ବାଗେଇ ଦେବି ।

ମଦୁଆଟା ଉପରେ ନିର୍ଭର କରିବା ଉଚିତ କି ?

କେତେ ମଦୁଆ ତ କେତେ ବଡ଼ବଡ଼ କାମର ଦାୟିତ୍ୱ ମୁଣ୍ଡରେ ବୋହି ଚାଲିଛନ୍ତି ଅଛି । ଉଡ଼ାଜାହାଜରେ ଉଡ଼ି ଲୋକଙ୍କ ଭାଗ୍ୟ ନିୟନ୍ତ୍ରଣ କରୁଛନ୍ତି । ଏଇଟା ତ ଛାର ଚଉକିଦାରଟା । ଆଉ ।

ଶୋଭାବତୀର ହେବ, ଭଙ୍ଗୀ, ଚାହାଣୀ ଓ ହସ କି କହୁଛି, ସେ ମୋ ବାପା, ସେ ରହୁ ।

ଶୋଭାବତୀ ନଠେଇ ନଠେଇ ଘର ସଫା କରୁଛି । ବିଛଣା ଝାଡ଼ୁଛି । ମନକୁ ମନ ଗୁଣ୍ ଗୁଣ୍ ହୋଇ ଗୀତ ବୋଲୁଛି । ଘର ଭିତରେ ଫୁଲର ମହକ ଭରୁଛି ! ହସର ରଜତ ଲହଡ଼ି ଛୁଟାଉଛି । ଯୌବନ ଢଳଢଳ ଉଚ୍ଛଳ ଅଙ୍ଗର ଭଙ୍ଗୀମା ଚାଳୁଛି । ରହି ରହି ହୋଇ ପଦାକୁ ଯାଇ ଅପେକ୍ଷା କରୁଛି ।

ଅଗାଧୁ ଭାତ, ଡାଲି, ତଅଣ, ଖଟା ଟେବୁଲ୍ ଉପରେ ବାଢ଼ି ଦେଇଛି । ନୀରବରେ ସୁକାନ୍ତ ସବୁ ଉଦରସ୍ଥ କରୁଛି । କେଉଁଟା ଅଲଣା, ଲୁଣିଆଁ, ସୁଗୁଆ, ହଉ ପିଝା କ ହଉ ପୋଡ଼ା ସେ ଜାଣି ପାରୁ ନାହିଁ । ଶୋଭାବତୀର ଉପସ୍ଥିତି, ମନ ଭିତରେ ତା'ର ଚଳନ, ସବୁ ସୁଆଦ କରୁଛି । ସେ ଶାନ୍ତିରେ ମୁଠିଏ ଖାଉଛି ।

ସୁକାନ୍ତ ପଚାରିଲା, ଏତେ ରାତିରେ ନାଟ ଦେଖିବାକୁ ତୁମେ ଗୋଲନ୍‌ଗୁଡ଼ା ଯିବାକୁ ମନ କରୁଛ କି, ଅଗାଧୁ ? ଅନ୍ଧାର ରାତି । ଜଙ୍ଗଲିଆ ବାଟ, ଯିବ ଯଦି ଲାଲଟେନ୍ ନେଇ ଯାଅ । ନୋହିଲେ, ମୋ'ର ଟର୍ଚ୍ଚଟା ନେଇ ଯାଅ । ଠେଙ୍ଗାଟିଏ ବି ହାତରେ ଧର । ଆଉ କାହାକୁ ସଙ୍ଗରେ ନେଇ ଯିବ । ଫେରିଲା ବେଳକୁ ଅନେକ ସାଙ୍ଗ ମିଳିବେ ।

ସୁକାନ୍ତ ହାତ ଧୋଇବାକୁ ପଦାକୁ ଆସିଲା । ଶୋଭାବତୀର କଡ଼ ଦେଇ ବାରଣ୍ଡା ଧାରକୁ ଗଲା । କଣେଇଁ ଚାହିଁଲା । ବାରଣ୍ଡାରେ ପେଟ୍ରୋମାକ୍ସ ଜଳୁଛି । କାନ୍ଥପାଖରେ ଚଉକିଦାର ଶୋଇଛି । ଠେଙ୍ଗାଟି ହାତରୁ ଖସି ପଡ଼ିଲାଣି ।

ଶୋଭାବତୀ ପୁଣି ଘର ଭିତରେ ପଶିଲାଣି । ଟେବୁଲ୍ ଉପରୁ ଅଇଠା ବାସନ ଉଠାଉଛି । କହୁଛି, ପାଖରେ ଆଲୁଅ ଓ ହାତରେ ଠେଙ୍ଗା ଥିଲେ ବଣ ଜନ୍ତୁ ପାଖକୁ ଆସନ୍ତି ନାହିଁ । ଧାଙ୍ଗଡ଼ୀ ନାଚ ଦେଖିବାକୁ ମନ ହେଉଛି ତ ଯାଉ ନ ଥରେ ବୁଲି ଆସିବ ।

- ତୁ ଯିବୁକି ମୋ ସଙ୍ଗରେ ?

ଯାଇଥିଲେ ସଞ୍ଜରେ ଯାଇ ଥାଆନ୍ତି । ବାଘଭାଲୁଙ୍କୁ ମୋ ର ଡର ନାହିଁ ଯେ, ଡର ସେଇ ମଦୁଆଙ୍କୁ । ନାଚ ଦେଖିବାକୁ ଆସିଥିବ ତ । ମଦେ ଦେଖିଲେ କଜିଆ କରିବ । ମୁ ଯିବ ନାହିଁ । ତେମେ ଯାଅ ବାବୁ, ଡର ନାହିଁ ।

ଶୋଭାବତୀ ବାସନ ଆଣି ପଦାରେ ରଖିଲା । ଅଗାଧୁ ପଲଙ୍କ ଉପରେ ମଶାରି ପକାଇଲା । ସୁକାନ୍ତ ଘରଁ ଭିତରକୁ ଆସିଲା । ମନ ପ୍ରଶ୍ନ ପଗ୍ଚରିଲା, ଯିବକି ? ଶୋଭା-ବତୀର ସାନ୍ନିଧ ମନକୁ ଉତ୍ସୁକେଇଲା, କହିମ, ଯାଅ ଅଗାଧୁ, ଡରୁଛ କାହିଁକି ? ବାଘଭାଲୁ ଆଲୁଅ ଦେଖିଲେ ପାଖକୁ ଆସିବେ ନାହିଁ ।

ସୁକାନ୍ତର ତୁଣ୍ଡରୁ ଭାଷା ବାହାରିଲା ନାହିଁ ।

ଅଗାଧୁ ଉତ୍ତର ଦେଲା, ନାଚ ଦେଖି ଦେଖି ବୁଢ଼ା ହେଲଣି ଲେ ଟୋକା, ଆଉ ଦେଖିବାକୁ ମୋ'ର ମନ ନାହିଁ । ଫିଷ୍ଟ ହେବ ବୋଲି ସୁବୁଦ୍ଧି ଡାକୁଥିଲେ । ରନ୍ଧାରନ୍ଧିରେ ସାହାଯ୍ୟ କରି ଥାଆନ୍ତି । ସେ କାମ ସରିବଣି । ଯିବ ନାହିଁ ।

ଖିଆପିଆ ସରି ନଥିବ ମ । ଶୋଭାବତୀ କହିଲା ।

ମୋ ହାକିମଙ୍କଠୁଁ ମୁଁ ବଡ଼ ନୁହେ । ଅଳ୍ପ-ବାଇଗଣ ଝୋଳତ ଆମର ଫିଷ୍ଟ । ବାଟରେ ଯଦି ବାଘ ଝାମ୍ପି ନଏ, ସୁବୁଦ୍ଧି କି ଆଉ କେହି ମୋର ତିନପୁଅ ଦୁଇ ଝିଅ ଆଉ ରୋଗଣା ଘରଣୀ ତୁଣ୍ଡରେ ବାସୀ ତୋରାଣି ମନ୍ଦାଏ ଦେବାକୁ ଯିବେ ନାହିଁ । ମାଗିବାକୁ ଗଲେ ମାରି ଗୋଡ଼ାଇବେ । ଏ ମଲା ଗଲା ସଂସାରରେ କେହି କାହାର ନୁହେ ।

ସତ କହିଲ ଅଗାଧୁ !

ସୁକାନ୍ତର ଆଖି ଆଗରେ ଘର ବାହାରେ ଦ୍ୱାରବନ୍ଧ ସେ ପାଖେ ଶୋଭାବତୀ ଠିଆ ହୋଇଛି । ପେଟ୍ରୋମାକ୍ସର ଉଜ୍ଜ୍ୱଳ ଆଲୁଅ ତା'ର କଜଳକଳା ଚକ୍ ଚକ୍ ମୁହଁ ଓ ଦ'ପାଟି ମୁକୁତା ଧବଳ ଦାନ୍ତକୁ ଝଟକାଉଛି । ଆଖିର ତେଜ ଝଲସି ଉଠୁଛି । ଛିଟଘେର ପବଂତଆ ବକ୍ଷ ଉପରଂ ଅଧାବସନର ଧବଳଆ ଉଜ୍ଜ୍ୱଳ ଆଲୋକରେ ବଢ଼ିମା ପ୍ରକାଶୁଛି । ସଗର୍ବ ସମାବେଶ ।

ବୁଧାର ଗ୍ରାମ ପାଖର ଦେଓମାଳ ପର୍ବତରେ ଯୁଗଳ ଶୃଙ୍ଗ ପରି । କେବଳ କୋରାପୁଟ ଜିଲ୍ଲାର ନୁହେ, ସାରା ଉତ୍କଳର ଉଚ୍ଚତମ ଶୃଙ୍ଗ ଦେଓଟି ୫୫୦୦ ଫୁଟ ଉଚ୍ଚ । ପୂର୍ବଘାଟ ପର୍ବତମାଳାର ଉନ୍ନତ ଯୁଗ୍ମ ବକ୍ଷ । କୋରାପୁଟ ସହରର କେଉଁ ଉଚ୍ଚ ପାହାଡ଼ ଉପରେ ଠିଆହୋଇ ଉତ୍ତର-ପୂର୍ବ ଦିଗକୁ ଚାହିଁଲେ ଦୃଷ୍ଟିରେ ପଡ଼େ ।

ଦେଖ ରମା, କହିତ କିପରି ଦିଶୁଛି ?

ବଜାର ପଛ ଉଚ୍ଚ ଲମ୍ବା ପାହାଡ଼ ଉପରେ ସୁକାନ୍ତର ହାତ ଧରି ଠିଆ ହୋଇଛି ରମା । ଜ୍ୟେଷ୍ଠର ଶେଷଭାଗ । ସଞ୍ଜର ଶୀତଳ ପାତଳ ଧବଳିମା ଧୀରେ-ଧୀରେ ମଳିନ ହୋଇ ଆସୁଛି । ବୁଧାର ପାହାଡ଼ର ଶୃଙ୍ଗ ଦୁଇଟିକୁ ବେଷ୍ଟନ କରିଛି ଈଷତ୍ ରଜତ ରଙ୍ଗର ପାତଳ ବଉଦଟିଏ । ପାହାଡ଼-ମାଳଟି ଦୂରରୁ ଦିଶୁଛି ଚିତ୍ ହୋଇ ଶୋଇଥିବା ତରୁଣୀଟି ପରି ମୁକୁଳା କେଶ, ଉନ୍ନତ ସ୍ତନ । ଗୋଡ଼ ଲମ୍ବିଛି ।

ସୁନ୍ଦର ଦିଶୁଛି ମ ସତେ । ଶୋଭାର ଭଣ୍ଡାର ଏ ରାଇଜ । ଯୁଆଡ଼େ ଚାହିଁଲେ ଆଖି ଲାଖି ରହେ ।

ଶୋଇଥିବା ନାରୀ ପରି ଦିଶୁନାହିଁ କି ?

ଅନୁମାନ କଲେ ସବୁ ପରି ଦିଶିବ । ଆକାଶ ଛାତରେ ରଙ୍ଗରଙ୍ଗର କାୟା ବଦଳାଇ ଚାଲିଥିବା ମେଘମାଳ ପରି ! ମଣିଷ, ବାଉନ୍ନ ପଶୁ, ପର୍ବତମାଳ, ନଦୀ, ବାଲି ପନ୍ତାର । ରଥ, ମନ୍ଦିର, ସମୁଦ୍ର — ।

ସତେ ରମା ।

ହଁ, ମ । ମଣିଷ ମନର ଭାବନା ତା ଆଖିରେ ରୂପ ଗଢ଼େ । ଆଶାରେ ଭେଲିକି ଲଗାଏ । ଚାଲ, ଫେରିଯିବା କୁନୁ ମୋ'ର ଖୋଜୁଥିବ । ଅଝଟ ଲଗାଇ ଥିବ । କାନ୍ଦୁଥିବ କି କଅଣ !

ଶୋଭାବତୀ ଅଇଁଠା ବାସନ ଧରି ଠିଆ ହୋଇଛି । ରହ ରହ ହେଉଛି । ମୁହଁରେ ଆଉ ହସ ନାହିଁ ।

ସୁକାନ୍ତ ଦୃଷ୍ଟି ଫେରାଇଲା । କୋଠରୀ ଭିତରେ ପଶି କବାଟ ବନ୍ଦକଲା । ଟେବୁଲ୍ ପାଖକୁ ଆସି ଥକ୍କା ହୋଇ ଠିଆ ହେଲା । ଅନୁଭବ କଲା, ଦେହ ଥରୁଛି । ମନରେ ତାରୁଣ୍ୟର ତରଙ୍ଗ ଛୁଟିଛି । ଅନୁଭବ କଲା, ସତେକି ଫୁଲର ମହକ ପ୍ରକୋଷ୍ଠକୁ ସୁବାସିତ କରୁଛି, ଯୌବନର ତରଙ୍ଗ ଛୁଟିଛି । ନୀରବ ହସରେ ଫେନାୟିତ ମାନ । ମନରେ ଉଚ୍ଛ୍ୱାସ ଭାବ ।

ପାଖରେ ଶୋଭାବତୀ ନାହିଁ, ଅଛି ରମା- ଫୁରୁଫୁରୁ କେଶ, ସଜଳ ଆଖି, ମଳିନ ମୁହଁ, ଥରିଲା ଓଠ ।

ସେ ଟେବୁଲ୍ ଡ୍ରଅର୍ ଟାଣିଲା । ମନିବ୍ୟାଗ୍‌ଟି କାଢ଼ି ଖୋଲିଲା । ନୋଟ୍‌ଗୁଡ଼ିକ ଅଛି । ଚଲାଣ ମଧ୍ୟ ଅଛି । ରମାର ଛୋଟ ଫଟୋଟି ନାହିଁ । ଭଲକରି ଖୋଜିଲା । ନାହିଁ ତ । ଗଲା କୁଆଡ଼େ ? କେଉଁଠି ହଜିଲା ? ହଜିବ କିପରି ? କିଏ ଆଉ ନେଇ ଗଲା ? ଏଡ଼େ ସାହସ ହେବ କାହାର ?

ବୁଝିଲା । ଅଭିମାନିନୀ ରମା ନିଜେ କାଢ଼ି ରଖିଛି । ମନକୁ ମନ କହୁ ହୋଇଥିବେ, ବଞ୍ଚିଲିତ, ନ ଖାଇ ନ ପିଇ ଫୋପଡ଼ା କଚଡ଼ା କରି ଚାଲିଗଲି, ବେହିଆ ପଣ କରି ମୋ ଫଟୋଟା ସଙ୍ଗରେ ଯେମିତି ବୁଲିବ କାହିଁକି ? ଜାଣି ନ-ଜାଣିଲା ପରି ଅନ୍ୟମାନଙ୍କୁ ଦେଖାଇବାର ସୁବିଧା ହେବ । ପଚାରିଲେ କହିବ ଏ ମୋ'ର ସ୍ତ୍ରୀ । ସେତିକି ଆଉ ତମରି ଯୋଗ । ମୁଁ ରହିଲି । ମୋ ଫଟୋବ ରହିବ ।

ସୁକାନ୍ତ ବ୍ୟାଗ୍‌ଟି ଟେବୁଲ୍ ଉପରେ ରଖିଲା । ମନକୁ ମନ ହସି କହିଲା ରମାର ସ୍ମୃତିକୁ, ଫଟୋଟା ସିନା ନେଲ ନିଜକୁ ନେଇ ପାରିବ କି ମୋ ମନରୁ ?

ଆଖିରୁ ନିଦ ଅାସୁନାହିଁ । ମନ ଚଞ୍ଚଳ ହୋଇ ଉଠିଛି । ଆଖି ବୁଜି ସେ ଶୋଇବାକୁ ଚେଷ୍ଟା କରୁଛି । ଅସଂଲଗ୍ନ ବାରମ୍ବାରିଆ ଭାବନା କେତେ ଘଟଣାର କେତେ ଅଂଶ ରୂପାୟନ କରୁଛି ମନର ପୁରୁଣା ପରଦା ଉପରେ ।

ଚଉବିଶ ବର୍ଷର ସେ ଯୁବକ । କେତେ ଅଭିଜ୍ଞତା—ସୁଖ ଦୁଃଖ, ହସକାନ୍ଦ, ଆଶା ଦୁରାଶା, ସାଫଲ୍ୟର ଉତ୍ତେଜନା ଓ ବିଫଳତାର ଛାତିଥିବା ନୈରାଶ୍ୟ, ଦେହ ଓ ମନରେ ଭେଦିଛି ।

ସେଇ ଦେହଟା ଅଛି । ବଢ଼ି ଉଠିଛି, ଗଢ଼ି ଉଠିଛି । ସମୟ ତାକୁ ଅାଉଁସି ଅାଉଁସି ବଳିଷ୍ଠ କରିଛି ।

ସେଇ ମନଟା । କାହିଁ ତା'ର ପୂର୍ବ ରୂପ ? ଅଭିଜ୍ଞତାର ଅଜଣା ସୁଅେ ବୋଳି ହୋଇ ସେ ଏକାଥରେ ବଦଳି ଯାଇଛି । ବଦଳୁଛି ନିତି । ଯଦି ତାର ଆକାର ପ୍ରକାର ରଙ୍ଗ-ରସ ଥାଆନ୍ତା । ଯଦି ସେ ଦେହରୁ ବାହାରି, ନିଜରୂପଧରି, ସବୁ ଅଭିଜ୍ଞତାର ପୋଷାକ ପିନ୍ଧି, ଆଗରେ ଠିଆ ହୋଇ ପାରୁ ଥାଆନ୍ତା, ଅନ୍ୟ କାହା କଥା ପଚାରେ କିଏ, ନିଜେ ସୁକାନ୍ତର ମୁଁ ଆଜିକା ମନକୁ କାଲି ଚିହ୍ନି ଠାବ କରି ପାରନ୍ତା ନାହିଁ । କାହିଁ କାହିଁ ବୋଲି ହାଇଁପାଇଁ ହୋଇ ଦୁନିଆଁ ଭ୍ରମନ୍ତା । ସେ ନାହିଁ, ସେ ନାହିଁ ବୋଲି ଭ୍ରମରେ ପଡ଼ନ୍ତା ।

ଚଉବିଶ ବର୍ଷର ଯୁବକ ସେ, ଛେଚାପିଟା ମଣିଷ । ତାଆର ଅତୀତ ସଙ୍ଗେ ଯେଉଁ ସ୍ଥାନ କାଳ ପାତ୍ର ମାନେ ଅଳ୍ପେ ବହୁତେ ଜଡ଼ିତ ଥିଲେ, ମନ ଓ ଚଳନ ଉପରେ ବିବିଧ ପ୍ରଭାବ ପକାଇ ତାକୁ ବଦଳାଇ ଥିଲେ, ସେମାନେ ଅତୀତର ଅନ୍ଧାର ଭିତରେ କାହିଁ କେତେ ଦୂରରେ ରହିଲେଣି । ସ୍ମୃତିର ଅଲଗା ଗୁଡ଼ିକ ମିଛ ମିଛ ହେଉଛନ୍ତି । କେତେ ଲିଭି ସାରିଲେଣି, ହଜି ସାରିଲେଣି । କେତେ ଅସ୍ପଷ୍ଟ ହେଲେଣି, ଅସ୍ପଷ୍ଟ ହୋଇ ଆସିଲେଣି । ଆଉ କେତେ ଏବେ ବି ଉଜ୍ଜ୍ୱଳ

ବଶୁଛନ୍ତି । ସେ ସବୁ ସମସ୍ୟାର ବ୍ୟବଧାନ ଉପରେ ନିର୍ଭର କରୁ ନାହିଁ । ସମ୍ପର୍କ, ଓ ଜୀବନ ଏବଂ ମନ ଉପରେ ସେମାନଙ୍କର ପକାଇଲା ପ୍ରଭାବର ଦୃଢ଼ତା ଓ ଘନିଷ୍ଠତା ଉପରେ ନିର୍ଭର କରୁଛି ।

ଶୋଭାବତୀ ସୁନ୍ଦରୀ ନୁହେ । ସେ ବିବାହିତା । ଦୁଇଟି ଅପତ୍ୟାଶ୍ରିତା । ସେ ଦରିଦ୍ର । ରୂପବତୀ ନାରୀର ସ୍ୱାମୀ ସେ ସୁକାନ୍ତ, ଦୁଇଟି ସନ୍ତାନର ଜନକ । ତଥାପି; ତାଆର ତାରୁଣ୍ୟ ଶୋଭାବତୀର ଅରପିଲା ଅଇଁଠା ଦେହକୁ ସ୍ନେହ କରି ସାଉଁଟି ନେବାକୁ କାରୁଣ୍ୟ କରିଥିଲା । ଅପବିତ୍ର କାମନାକୁ ଶାସନ କରି କିଏ ସେହି ତରଳି ଥରିଲା କାମନାର ଫଣାକୁ ନୁଆଁଇ, ପୋଷା ମନାଇଁ, ମନର ପେଡ଼ିରେ ସୁଧାରି ହୋଇ ଶୋଇବାକୁ ବାଧ୍ୟ କରିଥିଲା ?

ଅନୁଗତ ଅଗାଧୁ ପିଅନ । ସେ ଆଗରେ । ସ୍ନେହମୟୀ ରମାର ସ୍ମୃତି । ସେ ପଛରେ, କେଉଁଠି ଦୂରରେ । ସେମାନେ ଶୃଙ୍ଖଳ ରହିଛନ୍ତି ।

କୃଷ୍ଟିର ଜଗୁଆଳ । ସମାଜର କା । ସେମାନେ ଠେଲାଇ ଦେବାକୁ, ବଢାଇ ଦେବାକୁ, ଅନ୍ୟାୟ, ଅନୀତି ଓ ଅବିବେକୀ କର୍ମକୁ ପଛେଇ ଆଣିବାକୁ ସର୍ବଦା ଓ ସର୍ବଦା ଜାଗ୍ରତ ରହିଛନ୍ତି । ସେହି ଅଗାଧୁମାନଙ୍କ ସତର୍କତା ପାଇଁ ସୁକାନ୍ତ ଚରିତ୍ରବାନ୍ ଆଦର୍ଶ ସାମାଜିକ ମଣିଷ ହୋଇ ପାରିଛି ।

ମୁଣ୍ଡଟେକି ବଡ଼ପଣିଆ ଦେଖାଇ ସୁକାନ୍ତ ଦୁନିଆ ଦାଣ୍ଡରେ ଦୃଢ଼ ପଦକ୍ଷେପ କରି ଚାଲି ପାରିଛି । କେଉଁଠି ଶୋଭାବତୀ କେବେ କେଉଁଠି ଜୀବନ ପଥରେ ଉଭା ହୋଇଛନ୍ତି । କେହି କେହି ମନ ମନ୍ଦିର ଭିତରକୁ ଉଙ୍କି ମାରିଛନ୍ତି । ସୁକାନ୍ତର କାମନା ଓଟାର ହୋଇ ଯାଇଛି । କେଉଁଠୁ ନିଜେ ନିଜେ ସେ ଟିକେ ଅଟକିଛି । କେଉଁଠି ଠେଣି ହୋଇ ଚାହିଁରହିଛି । ଝାଣିଛି ନୀତିର ବଳିଷ୍ଠ ଧାରଣା । ଝାଣିଛି ରମା ପ୍ରତି ପ୍ରଗାଢ଼ ସ୍ନେହ ଓ କର୍ତ୍ତବ୍ୟର ଧାରଣା ।

ମନହିଁ ଜାଣେ, ଦୁନିଆଁ ଜାଣେନା । ଯାହାଙ୍କୁ ଘରର ଘରଣୀ କରି ଆଣିଛି, ଯାହାର ପାଖରେ ନିଜକୁ ସେ ସମର୍ପି ଦେଇଛି, ତନୁ, ଜୀବନ, ମନ, ଧନ ଓ ସର୍ବସ୍ୱ, ସେ ବା ଜଣେ କିଏ ? ସେଇ ସେ ପ୍ରେମମୟୀ ଭଲମନ୍ଦ ସୁଖଦୁଃଖର ଭାଗୀ ରମା । ହାତ ଧରି ପାଖକୁ ଆଣିଛି ଓ ମଣିଛି ଏଇ ମଣିଷଟିର ଦେହ,

ଜୀବନ, ମନ, ଚଳନ, ସବୁ ମୋର ହୋଇଛି । ସବୁତ ସେ ସମର୍ପି ଦେଇଛି । ସେଇ ମଣିଷଟିର ମଧ ଅଜ୍ଞାତ ଥିଲ । ଛୋଟ ବଡ଼ କେତେ ଘଟଣାର ପ୍ରଭାବ ପଡ଼ିଥିବ ତ ଦିନ ଦିନକର ଜୀବନ ଉପରେ । ମନ ତରଙ୍ଗାୟିତ ହୋଇ ଥିବ । ସବୁ ଘଟଣା ସୁକାନ୍ତର ଅଗୋଚର ।

ଆଖିରୁ ଜଳଜଳ ହୋଇ ଦିଶିଲ ପରି ମନେ ହେଉଛି ଯେଉଁ ବର୍ତ୍ତମାନ, କହିବ କି ସାତଟି ବର୍ଷର ବିବାହିତ ନୂତନ ଜୀବନ, ତାଆର କ୍ଷଣ କ୍ଷଣର ଚିନ୍ତା ଓ ଚଳନ, ଯୋଡ଼ି ହୋଇ ଏକାକାର ହୋଇଥିବା ସ୍ୱାର୍ଥର ବନ୍ଧନକୁ ପୁଣି ପୁଣି ବେଷ୍ଟନ କରୁଥିଲେ ମଧ ପରିଭ୍ରମଣର ପରିସର ଅଳ୍ପ । ପାଖା ପାଖି ଆପଣାର ହେଲ ଦୁଇଟି ଦେହ ଭିତରେ ପାଖା ପାଖି ପ୍ରବାହିତ ଦୁଇଟି ମନ-ଝରଣାରେ ବିଭିନ୍ନ ଢେଉ ଉଠେ ଓ ପଡ଼େ, ଶବଦ କରେ, ଆଗେଇ ଚାଲେ ।

ସୁକାନ୍ତ ଓ ରମାର ମୁଁ ଦୁଇଟି ଯେତିକି ପ୍ରକାଶ କରି ପାରେ, ଯେତିକି ସେହି ତରଙ୍ଗ ମାଳରୁ ପ୍ରକାଶ କରିବାକୁ ଆଗ୍ରହୀ ହୁଏ, ସେତିକି ସେହି ମୁଁ-ଦୁଇଟି ଗ୍ରହଣ କରନ୍ତି ଓ ପରସ୍ପରର ମନର ପ୍ରବାହକୁ ଚିହ୍ନିବାକୁ, ଜାଣିବାକୁ ଓ ନଜର କରିବାକୁ ଚେଷ୍ଟା କରନ୍ତି । ସେହି ଚେଷ୍ଟା ଓ ପରସ୍ପରର ପାଖରେ ନିଜକୁ ସମର୍ପି ଦେବାର ଆଗ୍ରହ ଦୁଇଟି ସହଯାତ୍ରୀଙ୍କର ଜୀବନ ପଥକୁ ସହଜ, ସୁନ୍ଦର ଓ ଉପଭୋଗ୍ୟ କରେ ।

କେତେ ସେ ପ୍ରକାଶ କରେ ଓ କେତେ ସେ ରଖେ ଗୋପନ ?

ପରସ୍ପରକୁ ଚିହ୍ନିବା ଓ ଜାଣିବାର ଆଗ୍ରହ ପାଇଁ ଅତୀତକୁ ସେ ଧୀରେଧୀରେ ଖୋଲେ, ଡରି ଡରିକା । କି ପ୍ରଭାବ ସେ ପକାଉଛି ଦେଖିବାକୁ ଅପେକ୍ଷା କରେ । ମନର ତରାଜୁରେ ତାଆର ମୁଁ ତଉଲେ, ନିଜ ଜୀବନର କଷଟି ପଥରରେ ଯହିଁରେ କେତେ ଅତୀତ ଅଭିଜ୍ଞତାର ଗାର ଗଢ଼ିଛି—ରଙ୍ଗରଙ୍ଗର, କେଉଁଟି ଉଜ୍ଜ୍ୱଳ, ଚକ୍-ଚକ୍, କେଉଁଟି ନିଷ୍ପ୍ରଭ, ଅସ୍ପଷ୍ଟ, ତା'ର ପାଖରେ ପ୍ରିୟତମ କି ପ୍ରିୟତମର ଗତ ଜୀବନର ପ୍ରକାଶିତ ଘଟଣାର ଗାର ପକାଇ କଷୋଟି କରେ । ନିଜର କରିବାକୁ ଚେଷ୍ଟା କରେ ।

ଛନ୍ଦାଛନ୍ଦ ଦୁଇଟି ଜୀବନ ଆଗେଇ ଚାଲେ, ତରଙ୍ଗାୟିତ ମନର ପ୍ରବାହ

ଛୁଟେ ତ ପାଖାପାଖି. କେବେ ମିଶି ଏକାକାର ହୁଏ, କେବେ ପୁଣି ଛାଡ଼ ଯାଏ । ଦୁଇ ଦଗରେ ଧାଏଁ । ଓଲଟି ଆସି ମୁହାଁମୁହଁ ହୁଏ । ସଂଘର୍ଷ, ରାଗଦ୍ୱେଷ, ଗରଜ ଉଠେ । ମିଶି ହୁଏ ଏକାକାର । ସତ୍ତା ହଜାଏ । ବହିଗଲେ ଛନ୍ଦାଛନ୍ଦ ଦିଓଟି ଜୀବନର ଦୁଇ କୂଳ ମଝିରେ ।

ସେହିପରି ତ ରମା ଓ ସୁକାନ୍ତଙ୍କର ଛନ୍ଦାଛନ୍ଦ ଦିଓଟି ଜୀବନ । ଦିଓଟି ଅଲଗା ଦେହରେ ପାଖାପାଖି ପ୍ରବାହିତ ଦିଓଟି ମନ । କେବେ ମିଶେ । କେବେ ଅଲଗା ହୁଏ, କେବେ ମୁହାଁମୁହିଁ ହୋଇ ଗୋଟିକୁ ଆରକ ନିଜ ଭିତରେ ସତ୍ତା ହଜାଇବାକୁ ଲହଡ଼ି ତୋଳେ । ଟିକଏ ସଂଘାତ, ଅଳ୍ପ ଯୁଦ୍ଧ ପରି । ଟିକଏ ଶବଦ । ସେ ଶବଦ ହୁଏ ସଂଗୀତ ଯେବେ ଦୁଇ ଆଡ଼ର ଦୁଇଟି ଲହଡ଼ି ମଥା ନୋଇଁ ପରସ୍ପରକୁ ଆଲିଙ୍ଗନ କରନ୍ତି. ମିଶି ହୁଅନ୍ତି ଏକାକାର !

ରମା ମନେ ପଡ଼ୁଛି । ଶୋଭାବତୀ ମନେ ପକାଇ ଦେଇଛି । ରମା ଜାଣୁଛି କି ? ପିଲାଦିଓଟି ଦୁଇପାଖେ ନିଘୋଡ଼ ନିଦରେ ଶୋଇଥିବେ । ନିଶା ଗର୍ଜୁଥିବ । ରମା ଆଖି ଖୋଲି ଶୋଇ ଏଣୁ ତେଣୁ ଭାବୁଥିବ । ଲୋତକ ଧାର ଗଡ଼ ପଡ଼ୁଥିବ ।

ତୁମେ ନିର୍ଦ୍ଦୟ, ତୁମେ ଅନୁଦାର, ତୁମେ ସୁଖର ସାଥୀ । ତୁମେ ମତେ ଭଲ ପାଅ ନାହିଁ । ଦେଖାଇ ହେଉଛ କାହିଁକି ? ମୋ'ଓର ରୂପ ଯୌବନ ମଉଳି ଆସିଲଣି । ନିଜର ଯେତିକି ଅଛି ସେତିକର ଯତ୍ନ ନେଇ ନିଜକୁ ସଜାଇ ପରୀ ହୋଇ ତୁମ ଆଗରେ ଠିଆ ହୋଇ ପାରୁ ନାହିଁ । ତୁମେ ତ କେବଳ ସେତିକି ଚାହଁ ।

ତୁମର ଦୁଇଟି ସନ୍ତାନଙ୍କୁ ମୁଁ ଆଣିଛି ସଂସାରକୁ । ରକ୍ତ ମାଂସ ଦେଇ ଗଢ଼ିଛି । ମରଣ ସଙ୍ଗେ ରଣ କରିଛି, ଜିତିଛି । ସେ ଦିଓଟିଙ୍କୁ ମୁଁ ମନପ୍ରାଣ ଦେଇ ଗଢ଼ୁଛି । ନିଜକୁ ଭୁଲିଛି । ଭୁଲ୍‌ଭ୍ରାନ୍ତି ଟିକେ ସହିଲ ନାହିଁ । ମୋ'ର ଆନୁଗତ୍ୟର କି ପୁରସ୍କାର ଦେଲ ? ମୋର ପତ୍ନୀତ୍ୱ, ମାତୃତ୍ୱ ଓ ନାରୀତ୍ୱକୁ ଅପମାନ ଦେଲ ? କାହିଁକି ମୁଁ ବଂଚି ରହିବ ?

ଏ କି କଥା କହୁଛ ରମା ?

ମନର କଥା ଖୋଲି କହୁଛି । କପଟ କରୁ ନାହିଁ । ତମ ଘରେ ଯିଏ ବାସନ ମାଜୁଛି ତମର ଗୃହକର୍ମୀ ପାର୍ବତୀ, ସେ ଦରିଦ୍ର, ନିରକ୍ଷର, ନିଃସହାୟ ହୋଇ ପାରେ, ତାଆର ରୂପ କି ଯୌବନ ନଥାଇ ପାରେ, ତାଆର ସ୍ୱାଧୀନତା ଅଛି । ତେମେ ନାଲି ଆଖି ଦେଖାଇଲେ କି ପଦେ ଟାଣ କଥା କହିଲେ ସେ ସହିବ ନାହିଁ । ଜବାବ୍ ଦେବ । ସେ ଚାଲି ଯିବ ।

ମୁଁ ତୁମର ଗୃହକର୍ମୀ ଠାରୁ ହୀନ । ସକାଳୁ ଉଠି ରାତି ଅଧଯାଏ କାମ କରେ । ତମର ଓ ତମ ପିଲାଙ୍କର ସେବା ଯତ୍ନ କରେ । ତମ ପଦାର୍ଥ ଗୁଡ଼ିକ ସାଇତି ରଖେ, ସଜାଇ ରଖେ । ତମର ଧନର ବ୍ୟାଙ୍କ୍ ବହି, ଗହଣା ଗଣ୍ଠି, ଟଙ୍କା ପଇସା ଟ୍ରଙ୍କ୍‌ରେ ରଖି ତାଲା ପକାଏ । ଲୁଗା କାନିରେ ଚାବି ପେନ୍ଥି କି ବାନ୍ଧି ଅଣ୍ଟାରେ ଖୋସେ । ବିନିମୟରେ ତୁମେ ମତେ ଦିଅ କ'ଣ ? ତମର ତିରସ୍କାର । ଅପମାନ । ଅସ୍ନେହ ।

ଭୁଲ ବୁଝ ରମା, ଭୁଲ ବୁଝ କହୁଛି । ତୁମର ଅଭିମାନିଆଁ କଥା ତୀକ୍ଷ୍ଣ ତୀର ପରି ମୋର ଦେହରେ ମନରେ ଭେଦୁଛି । ସହି ପାରୁ ନାହିଁ । ମୁଁ ମୋ'ର ସର୍ବସ୍ୱ ତୁମରି ପାଖରେ ସମର୍ପି ଦେଇଛି । ନିଜକୁ ମଧ । ତଥାପି, ତଥାପି ତେମେ—

ରମା ଅଟ୍ଟହାସ୍ୟ କରୁଛି ରମା ଉଠି ବସୁଛି । ସେହି ବିଦ୍ରୂପର ହସ ଲାଗି ରହିଛି ତାଆର ଲେଡକ ଝଙ୍ଗ ଲପନରେ । ସେ ପୁଣି ଗମ୍ଭୀର ହୋଉଛି । କଟମଟ କରି ଚାହୁଁଛି । ମୁଣ୍ଡ ହଲାଇ ଛଲାଇ କହୁଛି, ସତେ ? ସର୍ବସ୍ୱ ସମର୍ପି ଦେଇଛ ? କପଟୀ, ମିଥ୍ୟାବାଦୀ । ତେମେ ଲୁଚକାଲି ଖେଳୁଛ । ସବୁ ମୁଁ ଦେଖିଛି । ସବୁ ମୁଁ ଶୁଣିଛି । ଯାହାକୁ ତୁମେ ଘୃଣା କର ବୋଲି ବଢ଼ାଇ କହ ତା'କୁ, ସେହି ଶୋଭାବତୀକୁ ତୁମେ ତୁମର ସମର୍ପିତ-ମନ ବଢ଼ାଇ ଦେଇ ଥିଲ । ଦେହଟା ବଢ଼ାଇ ଦେବାକୁ ସଜ ହୋଇଥିଲ ।

ମୁଁ ତୁମକୁ ଅଟକାଇ ପାରୁ ନାହିଁ । ଅଟକାଇଲା ଅଗାଧୁ, କର୍ତ୍ତବ୍ୟର ଠେଙ୍ଗା ! ସମାଜର ପ୍ରତୀକ । ଆର୍ଯ୍ୟ ସଭ୍ୟତାର ବଜାୟ କେତନ, ସନାତନ ।

ସୁକାନ୍ତ ଉଠି ବସିଲ ।

ଅନ୍ଧାର କଥା କହୁଛ । ରମା ନାହିଁ । ସେ ନିଶ୍ଚିନ୍ତରେ ଶୋଇ ପଡ଼ିଥିବ । ଶ୍ରେଷ୍ଠ ଘଟଣାଟି ମନରୁ ପୋଛି ଦେଇ ସାରିବଣି । ସର୍ବ ସହଣୀ ସେ, ଧୈର୍ଯ୍ୟର ଅବତାର । ମୂର୍ତ୍ତିମତୀ କ୍ଷମା । ମନର ଅଭିମାନ ଦୁଇଧାର ଲୁହରେ ସେ ତଳକୁ ଗଡ଼ାଇ ପକାଏ । ରାଗରୋଷର ଅନଳକୁ ନିର୍ବାପିତ କରେ ।

ବଡ଼ ଘରର ଅଲିଅଳ ଝିଅ, ସମସ୍ତଙ୍କର ଆଦର ସ୍ନେହ, ଶ୍ରଦ୍ଧା ପାଇ ସେ ବଢ଼ିଛି । ବଡ଼ ପଣିଆଁ ନାହିଁ । ଦେଖାଇ ହେବାର ଢଙ୍ଗ ନାହିଁ । ମନରେ ଅବିଶ୍ୱାସର ଛାୟା ପାତ ହୁଏ ନାହିଁ ।

ସୁକାନ୍ତ ପୁଣି ଶୋଇଲ । ଆଖିକୁ ନିଦ ଆସୁନାହିଁ । ଛଟ ପଟ ଲଗୁଛି ।

ହସି ହସିକା ରମା ପଚାରୁଛି, କହନ୍ତ, ମହର୍ଷି ପରାଶର କଅଣ କଲେ ? ତାଙ୍କ କଥା ଆରମ୍ଭ କରି ନିଜ ଜୀବନର ଗତ କଥା ଗୁଡ଼ା କାହିଁକି କହୁଛ ? ପୁରୁଷର ଭାଗ୍ୟତ ପତର ତଳେ । ଆମ ଭାଗ୍ୟ ସିନା ପଥର ତଳେ । ଗତ ଜୀବନର ଦୁଃଖ କଷ୍ଟ କଥା ଭାବି ମନରେ ଦୁଃଖ ଆଣ ନାହିଁ ।

କେବେ ସିନା ନଅବର୍ଷର ପିଲଟିଏ ହୋଇ ପାଠ ଛାଡ଼ି ପେଟ ପାଇଁ ଗାଈ-ଗୋରୁ ଜଗିଥିଲ ଗୋଟିଏ ବର୍ଷ, ଏବେ ତୁମେ ବଡ଼ ହୋଇଛ । ଇଞ୍ଜିନିୟର ହୋଇଛ । ପାଞ୍ଚଣ ଛାଡ଼ି କଲମ ଧରିଛ । ଏଥିରେ ନୂଆ କଥା କିଛି ନାହିଁ । ଆମର ଦେଶର ଗାଈ-ଜଗା ପିଲଟିଏ ଥିଲ କପିଳା, ଭାଗ୍ୟ ବଦଳିଲରୁ ହେଲେ ପୁଣି ସେଇ ହେଲ କଳିଙ୍ଗ ରାଇଜର ମହାପ୍ରତାପୀ ରାଜାଧିରାଜ । ଗଙ୍ଗାରୁ କାବେରୀ ନଦୀଯାଏ ତାଙ୍କର ବିଶାଳ ସାମ୍ରାଜ୍ୟ ବ୍ୟାପିଥିଲ ।

ପଚ୍ଛକଥାରୁ କଅଣ ମିଳିବ ? କହିବ ପରା ବେଦବ୍ୟାସଙ୍କ ଜନ୍ମକଥା ? ଦେଖ,

ଦେଖ, ଦୁଇ କୂଳ ଭରି ଗୋଳିଆ ପାଣି କେଡ଼େ ବେଗରେ ଛୁଟିଛି । ବଡ଼ ବଡ଼ ଗଛ ସବୁ ଭସି ଯାଉଛି । ନଈ ସେପାରି ନିଘଞ୍ଚ ଅରଣ୍ୟ ଉପରି ଧୂଆଁଳିଆ ଦିଶୁଛି । ସତେ, ପରାଶର ବୁଢ଼ାଙ୍କୁ କଅଣ କଲମ । ଏଇପରି ସେ ସ୍ଥଳ, ବେଦବ୍ୟାସ ପିଠ ?

ହସିହସି ନିଦ୍ରାନ୍ତ ହେଲ ରମା । ସୁକାନ୍ତ ତାଆର ହସିଲ ମୁହଁକୁ ତନ୍ମୟ ହୋଇ ଚାହିଁଲ । ବ୍ରହ୍ମପୁରରୁ ସେ ସୁନ୍ଦରଗଡ଼ ବଦଳି ହୋଇ ଆସିବାର ଛଅଟି ମାସ କଟିଥାଏ ।

ସୁନ୍ଦରଗଡ଼ ଜିଲ କେଡ଼େ ମନୋରମ । ପ୍ରାକୃତିକ ଶୋଭାର ପଟାନ୍ତର ନାହିଁ । ଘନ ବନ ଶୋଭନ ଗିରିମାଳ । କଳକଳ ଛଳଛଳ ଉଚ୍ଛଳ ଛୋଟବଡ଼ ନଦୀ ଓ ନାଳ । ଦିଗନ୍ତ ବିସ୍ତାରିତ କେଦାର ମାଳ ଶସ୍ୟ ଶ୍ୟାମଳ ! ତହିଁରେ ପୁଣି ଖଣିଜ ସମ୍ପଦର ଆଳୟ ।

ଏ ଜିଲକୁ ଆସି ରମା ସତେକି ବଦଳି ଯାଇଛି । ଫୁର୍ତ୍ତି ଓ ଆନନ୍ଦରେ ବେଳ କଟାଇବାକୁ ସେ ସବୁବେଳେ ଆଗ୍ରହୀ । କେଉଁ ଦୂର ମୋଫସଲର କେଉଁ ରକ୍ଷଣଶୀଳ କୁଟୁମ୍ବର ଲଜ୍ୟାଶୀଳା ଅବଗୁଣ୍ଠନବତୀ କନ୍ୟା ଓ କୁଳବଧୂ ଏକଥା ସେ ଭୁଲି ଯାଇଛି । ସବୁ ସେ ଦେଖିବାକୁ ଚାହେଁ । ନିଜର ମନପ୍ରାଣକୁ ସବୁ ଶୋଭାରେ ମିଶାଇ ଦେଇ କବିତାମୟୀ ହେବାକୁ ମନକରେ ।

ସୁକାନ୍ତ ମନ ପୂରାଇ ହସହସ ହୋଇ ଅନାଇଁ ରହିଲ ସ୍ନେହ ବନ୍ଧନା, ତାର ପ୍ରିୟତମା ରମାକୁ । ସେ ଆଜି ନୂଆ ମଣିଷଟିଏ ପରି ଦେଖା ଯାଉଛି । ବେଦବ୍ୟାସ ପିଠ ପାହାଡ଼ ଉପରେ ଗୋଟିଏ ପଥରକୁ ଆଉଜି ଠିଆ ହୋଇଛି । ନିମ୍ନର ପଥର ତଳ ପ୍ରାକୃତିକ ଗୁହାରେ ପରା ବ୍ୟାସଦେବଙ୍କର ଆଶ୍ରମ ଥିଲ । ସେଇଠି ବସି ସେ ଅଷ୍ଟାଦଶ ପୁରାଣ ଲେଖିଥିଲେ ବୋଲି କିମ୍ବଦନ୍ତୀ ଅଛି ।

ଶଙ୍ଖନଦୀ ଓ କୋଇଲି ନଦୀର ସଙ୍ଗମ ସ୍ଥଳ । ଦୁଇ ନଦୀ ମିଶି ବ୍ରାହ୍ମଣୀ ନଦୀ ହୋଇ ବଙ୍ଗୋପସାଗରକୁ ବହି ଯାଉଛି । କିମ୍ବଦନ୍ତୀ ଅଛି ଏଇ ନଦୀ ଦ୍ୱଉଟିର ସଙ୍ଗମ ସ୍ଥଳରେ କୈବର୍ତ୍ତି ନନ୍ଦିନୀ ଉଚ୍ଛଳ-ଯୌବନା, ଭୁବନ ମୋହିନୀ ସତ୍ୟବତୀ ପିତାଙ୍କର ଅନୁପସ୍ଥିତ କାଳରେ ନୌକାଟିକୁ ଧରି ନଦୀର ଆରପାଖରେ ଅପେକ୍ଷା କରିଥିଲେ । ଉପସ୍ଥିତ ହେଲେ ବୃଦ୍ଧ ପରାଶର ମୁନି ।

ଘଟଣାଟି ରମା ଭଲ କରି ଜାଣେ । ଆଜି ଏହି ଅପରାହ୍ଣରେ ସୁକାନ୍ତର ମୁହଁରୁ ସେଇ ଅତୀତ ଯୁଗର ପୁରାଣ ବର୍ଣ୍ଣିତ କଥାଟି ସେ ଶୁଣିବାକୁ ଚାହେଁ ।

ଆକାଶରେ କଳାଧୂମର ମେଘ ମାଳ ଲେପନ ତପନ ଲପନ ଲେପନ । ପବନ ବିହୀନ ସ୍ଥିର ଗମ୍ଭୀର ଗଗନ । ପାହାଡ଼ ତଳରୁ ସେ କୂଳର ବନାନୀ ଯାଏ ବିସ୍ତୃତ ଅବିଳ ଜଳରାଶି, ସଘନ ପ୍ରବାହ, ତରଙ୍ଗାୟିତ ।

ବହି ଯାଉଛି ନଦୀ ମଧ୍ୟରେ ଛୋଟ ନୌକାଟିଏ । ଚଳନ୍ତି ଢେଉରେ ଦୋଳାୟିମାନ । ପଛ ମଙ୍ଗ ଉପରେ ଉପବିଷ୍ଟ ଶୋଭାର ପସରା ପୂର୍ଣ୍ଣ ଯୌବନା କୈବର୍ତ୍ତ-ନନ୍ଦିନୀ ସତ୍ୟବତୀ । ଆହୁଲ ପକାଇ ନୌକା ଚଳାଉଛି । ଫିଟି ପଡ଼ୁଛି କବରୀ । ଅର୍ଦ୍ଧଉଲଗ୍ନ ଦେହର ଆଲୋଡ଼ନ ସଙ୍ଗେ ଆଲୋଡ଼ିତ ଉନ୍ମୁକ୍ତ କବରୀ । କଜଳ କେଶରୁ ଝରି ପଡ଼ୁଛି, ବନମଲ୍ଲୀର ସୁବାସିତ ସୁମନ । ଚକ୍‌କଣ ଚନ୍ଦ୍ରମା ଆନନରେ ସ୍ୱେଦବିନ୍ଦୁ ।

ଅଦୂରରେ ଆଗରେ ଉଭା ପିତାମହ ବୟସର ଜଟା ଜୁଟ ଧାରୀ, କାଶ କୁସୁମ ଧବଳ ଶ୍ମଶ୍ରୁଧାରୀ ଋଷି ପରାଶର । ଉଜ୍ଜ୍ୱଳ ଆଖିରେ ପ୍ରଜ୍ୱଳିତ କାମାନଳ ।

କ୍ଳାନ୍ତ ବାଳିକାର ହାତ ଅଟକିଲା । ନଦୀ ମଧ୍ୟରେ ନୌକାଟି କେବଳ ବୁଲୁଛି । ଅଗ୍ରଗତି ନାହିଁ । ପାଣି ଭଉଁରିରେ ପଡ଼ିଛି । ଫୁଲ୍‌ସ୍ତର ମରା ପାଣି ଉପରେ ଅଟକିଲା ପରି । ଅଳସ ଆଖିର ଦୃଷ୍ଟି ପଡ଼ିଲା ଋଷିଙ୍କ ମୁହଁରେ । ଆଖିରେ ତୃଷ୍ଣାର ଅନଳ ଜଳୁଛି । ପତଙ୍ଗ ଟିଏ ସେ, ଠାଣି ହୋଇ ଯାଉଛି ସତେକି । ଥରଥର କମ୍ପିତ ଦେହ ଲତା । ଦରଦର ଝରୁଛି ସ୍ୱେଦ । ନୌକାଟି ବୁଡ଼ିବକି ଓଲଟି ପଡ଼ିବ ?

ଋଷିଙ୍କ ମୁହଁରେ ହସ ।

ସତ୍ୟବତୀ ହେଲେ ଯୋଜନ ଗନ୍ଧା । ପରାଶରଙ୍କର ଆତ୍ମଜ ବ୍ୟାସଦେବଙ୍କର ଜନନୀ ହେଲେ ସେ, ବିଶ୍ୱବନ୍ଦିତା ।

ରମା ସବୁ ଜାଣେ, ସେ ଯୁଗର କଥା । ଗଙ୍ଗା ଓ ଶାନ୍ତନୁଙ୍କର ପୁତ୍ର ଭୀଷ୍ମଙ୍କ ପ୍ରତିଜ୍ଞା ମଧ୍ୟ ତାକୁ ଅଗୋଚର ନାହିଁ । ବୃଦ୍ଧ ପିତା ମହାରାଜ ଶାନ୍ତନୁଙ୍କର ସ୍ନେହ

ବଳଲ ବ୍ୟାସ ଜନନୀ କୈବର୍ତ୍ତି ନନ୍ଦନୀ ଯୋଜନା ଗନ୍ଧାଙ୍କ ଠାରେ । ବିରକ୍ତିରେ ଗଙ୍ଗାଙ୍କୁ ଗାଙ୍ଗୀ କହି ଧିକ୍‌କାର ଥିଲେ ବୋଲି ଭୀଷ୍ମଙ୍କୁ ଶାନ୍ତନୁଙ୍କ ପାଖରେ ପକାଇ ଗଙ୍ଗା ଚାଲି ଯାଇଥିଲେ ବନ୍ଧ୍ୟବର୍ଷ ତଳେ । ଯୁବକ ଭୀଷ୍ମ ସପଥ କଲେ ଯେ ଶାନ୍ତ-ନୁଙ୍କ ଅନ୍ତେ ରାଜା ହେବେ ନାହିଁ, ସେ ବିବାହ କଲେ କାଲେ ତାଙ୍କର ପୁତ୍ର ହେଲେ ସିଂହାସନରେ ବସିବାକୁ ତା'ର ଲୋଭ ହେବ, ତେଣୁ ସେ ନିଜେ ମଧ୍ୟ ବିବାହ କରିବେ ନାହିଁ । ମାତ୍ର ସତ୍ୟବତୀଙ୍କର ସନ୍ତାନ ହେଲେ ସେଇ ହେବ ରାଜା । ସତ୍ୟବତୀ ହେଲେ ଶାନ୍ତନୁଙ୍କର ରାଣୀ ।

ସେବ କାଳର ବୁଢ଼ା ଗୁଡ଼ାକ ଅତି ନିର୍ଲ୍ଲଜ ଓ ଅତି କାମୁକ ଥିଲେ ମ । ନାଇ, ସେବ କାଳର ଲୋକ ଗୁଡ଼ାକ ସେମିତିକା ଥିଲେ ।

ରମାର ମୁହଁରେ ବିଦ୍ରୁପର ହସ ।

ସୁକାନ୍ତ ତା'ର ପାଖକୁ ଘୁଞ୍ଚିଗଲା । ହାତ ପାପୁଲି ମୁଠାଇ ଧରି ଅଳପ ଚିପି କହିଲା, ସବୁ କଥା ତୁମେ ଜାଣିଛତ, ମୋ ମୁହଁରୁ ଶୁଣିବାକୁ ପୁଣି ଚାହୁଁଛ କାହିଁକି ? ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟଙ୍କର ଜନନୀ ହେଲେ ଶାନ୍ତନୁଙ୍କର ରାଣୀ ଦାଶବୁଢ଼ୀ ସତ୍ୟବତୀ । ଅମ୍ବିକା ଓ ଅମ୍ବାଳିକାଙ୍କୁ ବୋହୂ କରି ଘରକୁ ଆଣିଥିଲେ । ପୁଅ ଦୁଓ-ଟିଙ୍କୁ ହରାଇଲାରୁ ଭାଲେଣି ପଡ଼ିଲା । ବଂଶ ରକ୍ଷା ହେବ କିପରି ? ସେମାନଙ୍କର ଯେ ସନ୍ତାନ ନଥିଲେ ବୁଢ଼ୀ ସତ୍ୟବତୀ କି ବୁଦ୍ଧି ପାଞ୍ଚିଲେ ?

ରମା ହାତଟାଣି ନେଲା । ମୁହଁ ଗମ୍ଭୀର କରି କହିଲା । ସେ ସବୁ ଅତୀତ କଥା । ମୁହଁକୁ ଆଣନା । ଧୃତରାଷ୍ଟ୍ର ଓ ପାଣ୍ଡୁ ଦୁଇ ବିଧବା ବଧୂଙ୍କ ଗର୍ଭରୁ ଜନ୍ମିଲେ, ବ୍ୟାସ ଦେବ ହେଲେ ଜନକ । ମାତ୍ର ସତ୍ୟବତୀଙ୍କର ଆଦେଶ ସେ ପାଳନ କରିଥିଲେ । ତେଣୁ, ତାଙ୍କର ପାପ କଟିଗଲା । ଏଡ଼କ ହେଲା କୈଫିୟତ ? କାହାର ବଂଶ ରକ୍ଷା କରି ଗଲ ମ, ଶାନ୍ତନୁଙ୍କର କି ପରାଶରଙ୍କର ?

ସତ୍ୟବତୀଙ୍କର କନ୍ଦନ କାହିଁକି ?

ଖିଲ୍ ଖିଲ୍ ହସ କାନରେ ବାଜୁଛି ।

କାହାର ଏ ହସ ? ରମା ଏପରି ନିର୍ଲଜ ହସ ହସେ ନାହିଁ । ଆରେ, ଶୋଭା-ବତୀ ଯେ, ସେ ପାଖରେ ଠିଆ ହୋଇଛି । ରମା ନାହିଁ ।

ଶୋଭାବତୀ ନୁହେଁ, ସୁଭଦ୍ରା । ସୁନା ଖଡ଼ିକା ପରି ଝିଅ । ପାତଳ ମୁହଁ । ଧାର ନାକ । ଚଳ ଆଖି । ତେଇଶ ବରଷର ଝିଅ ଖଣ୍ଡିକ । ଆସିଛି କି ମୁହଁ ଚନ୍ଦ କରିବାକୁ ? ସତୀ ଅପାଙ୍କ ନଣନ୍ଦ, କାର୍ତ୍ତିକ ବାବୁଙ୍କ ମାମୁଁ ଝିଅ ଭଉଣୀ । ଦୁଷ୍ଟଙ୍କ ଶିରୋମଣି । ଦରିଦ୍ର ସୁକାନ୍ତକୁ ସେ ସ୍ନେହ କରେ ।

ହେ, ହେ—

ସେ ହଲଇ ଉଠାଉଛି ।

ଉଁ—।

ପରୀକ୍ଷା ପରା, ପଢ଼ୁ ପଢ଼ୁ ଶୋଇ ଘୁଙ୍ଗୁଡ଼ି ମାରୁଛ । ବାଃ, ରାତି ଦଶଟା ହେଲଣି । ଗିଳିବ ନାହିଁକି ? ତମ ଅପା ଚାହିଁ ବସିଛନ୍ତି ।

ସୁକାନ୍ତର ଛାଇ ନିଦ ଭାଙ୍ଗିଗଲା ।

ଝର୍କି ଧରି ପଦାକୁ ଅନାଇଲା । କେତେ ରାତି ହେଲଣି କେଜାଣି । ମନୁଷ୍ୟର ସାଡ଼ଶବ୍ଦ ନାହିଁ । ନିଶା ଗର୍ଜୁଛି । ଆକାଶରେ ବାଦଲ ମେଘ । ଶୀତୁଆ ଧୀର ପବନ । ପାଖ ଓ ଦୂରର ପାହାଡ଼ ମାଳ, ଗଛ ଗହଳୀ ଅନ୍ଧାର ସାଥିରେ ମିଶି ଏକାକାର ହୋଇଛି । ମନରେ ଦକା ଆସୁଛି । ବୁଦା ବୁଦାକା ଜଙ୍ଗଲ ଭିତରେ ମହାବଳ ବାଘ ଠାକ ବସିଥିବ । ତଳକୁ ଓହ୍ଲାଇଲେ ଝାମ୍ପି ନେବ । ଛାତି ପଡ଼ିଲା ଉଠିଲା । ସତେତ, ବାଘୁଆ ପାଗଟା ହୋଇଛି । କେତେ ବେଳୁ ପେଟ୍ରୋମକ୍ସ ଲିଭ

ସାରଲଣି । ଦୁଇ ସେଲଅ ଠର୍ଚ୍ଚର ଆଲୁଅ ସେତେ ଉଜ୍ଜ୍ୱଳ ଦଶୁ ନାହିଁ । ଗୃଲନ-ଗୁଡ଼ା ଗ୍ରାମ ଅଡ଼ୁ ଧାଙ୍ଗଡ଼ୀ ନାଚର ବାଇଦ ର ସ୍ୱର ଶୁଭୁ ନାହିଁ । ସେମାନେ ଫେର ଆସିବେଣି । ନୂଆ ନାଳର ପଡ଼ିଲ ପାଣିର ଅସରନ୍ତ ଗଜ୍ ଗଜ୍ ଶବଦ କାନରେ ପଡ଼ୁଛି ।

ଠର୍ଚ୍ଚ ଆଲୁଅ ବାରଣ୍ଡା ଉଣ୍ଡିଲ । ଚଉକିଦାରର ଠେଙ୍ଗାଟି କାନ୍ଥରେ ଡେରା ହୋଇଛି । ସେ ନାହିଁ କି ଆଉ କେହି ନାହିଁ । ପାଖ ବୁଦବୁଦିକା ଜଙ୍ଗଲ ଭିତରେ କଅଣ ଖସ୍ ଖସ୍ ହେଉଛି । ଚଉକିଦାର ଗଲ କୁଆଡ଼େ ? ମନ ପାପ ଛୁଇଁଲ । ନା, ନା । ଶୋଭାବତୀ ତାକୁ ତାର ଘରକୁ ନେଇ ଯାଇଥିବ । ନିଶ୍ଚିନ୍ତରେ ଶୋଇ ପଡ଼ିଥିବ ।

ଶୋଭାବତୀ ଏଇଠି ଠିଆ ହୋଇ ହସୁଥିଲ । ଶୋଭାବତୀ ସେଇ ଶ୍ରେଷ୍ଠ କୁଡ଼ିଆ ଭିତରେ ଅଛି ।

ସୁଭଦ୍ରାର ଆତ୍ମା ଏଇ ବଙ୍ଗଲାର ଗୃର ପାଖେ ବୁଲୁଛି କି ? ସେ ତ ଆତ୍ମ-ହତ୍ୟା କରିଥିଲ । ଅହୋ ବିଭୃଷା ! ଅମୋଘ ଆତ୍ମା ତାର ସୁକାନ୍ତର ପଛେ ପଛେ ଗୋଡ଼ାଇଛି କି, ସେଇ ହେଉଛି ଖସ୍ ଖସ୍ ? ଦେହ ମନ ଥର ଉଠିଲ ।

ସୁକାନ୍ତ ପଛେଇ ପଛେଇ କୋଠରୀ ଭିତରକୁ ଆସିଲ । କବାଟ କିଳିଲ । ସେ ଏବେ ନିଶ୍ଚିନ୍ତ । ଘର ଭିତରେ ଏକା ସେ । ଶୋଭାବତୀ ପଶି ପାରିବ ନାହିଁ । ମହାବଳ ଦୂରରେ ଅଛି । ସୁଭଦ୍ରାର ଅମୋଘ ଆତ୍ମା ହତାଶ ହୋଇ ଫେର ଯିବଣି ତା'ର ନିଷ୍ଠୁର ସ୍ୱାମୀଙ୍କ ପାଖକୁ ।

ସୁଦର୍ଶନ ଅନୁତାପ କରିଥିଲ । ମଦଖିଆ ଛାଡ଼ି, କୁସଙ୍ଗ ପରିତ୍ୟାଗ କରି ସେ ଅଧା ପାଗଳ ହୋଇ କେତେ ବର୍ଷ ବୁଲିଲ । ନୂଆ ସଂସାର କଲଣି । ଭଲ ମଣିଷ ହେଲଣି । ସୁଭଦ୍ରାର ସ୍ମୃତିକୁ ସେ ମନରୁ ପୋଛି ଦେଇଥିବ । ଗୋଟିଏ ଦୁଃସ୍ୱପ୍ନ ପରି ଭୁଲି ଯାଇଥିବ ।

ସୁକାନ୍ତ ଶୋଇବାକୁ ଚେଷ୍ଟା କଲ ।

ସୁଭଦ୍ରା ଆଗରେ ଠିଆ ହେଲଣି ।

ନବବଧୂ ବେଶ । ସୁନା ଗହଣାରେ ଦେହ ମୁଣ୍ଡ ପୂର୍ଣ୍ଣ ହୋଇଛି । ଆଖିରେ ଲୋତକ । କପାଳର ଘାଉରୁ ରକ୍ତ ଝରି ପଡ଼ୁଛି ।

ଦେଖ ସୁକାନ୍ତ ଭାଇ, ସେ ମୋତେ ପ୍ରହାର କରିଛି । ସେ ମଦ୍ୟପ, ଦୁଶ୍ଚରିତ୍ର । ଧନୀର ସନ୍ତାନ ବୋଲି ବାପା ମୋତେ ତାଆରି ହାତରେ ଛନ୍ଦି ଦେଲେ । ତମକୁ ମୁଁ ଭଲ ପାଇଥିଲି । ତୁମେ ମୋତେ ସ୍ନେହ କରିଥିଲ । ତୁମେ ମନା କଲ କାହିଁକି ? ଏତେ ଅତ୍ୟାଚାର ମୁଁ ସହି ପାରିବି ନାହିଁ । ଜୀବନ ହାରିବି ।

କାହାକୁ ଭଲ ପାଇବାର କି ସ୍ନେହ କରିବାର ଅଧିକାର ମୋର ନାହିଁ ସୁଭଦ୍ରା । ମୁଁ ଗରିବ ମୂଲିଆ ଘରର ପୁଅ । ଅନଙ୍ଗର ସହାନୁଭୂତି ଓ ମୋର ଉଦ୍ୟମ ଏହି ଦୁଇଟି ମୋର ଗୋଡ଼ା ଅଗେଇ ଯିବାର ସମ୍ବଳ । ଅଧା ପାଠୁଆ ସୁକାନ୍ତ ବାଧ୍ୟ ହେବାକୁ ଚାହେଁ ନାହିଁ । ତମର କୃପଣ ପିତା ମୋତେ ପଢ଼ାଇବାକୁ ସାହାଯ୍ୟ ଦେବାକୁ ନାହିଁ କରିଲେ । ବିଦ୍ୟା ଉପରେ ତାଙ୍କର ବିଶ୍ୱାସ ନାହିଁ । ସେ ଚାହିଁଥିଲେ ତାଙ୍କରି ଦାନଦିଆ କେଇ ମାଣ ନାଲି କୂଳିଆ ଜମିକୁ ମୁଁ ଚାଷ କରି ଗ୍ରାମରେ ରହିବି । ତାଙ୍କରି ଶିକ୍ଷାରେ, ତାଙ୍କରି ପରି କୁଟ ନୀତି ପ୍ରୟୋଗ କରି ଚକ୍ରାନ୍ତ କରି ଅନ୍ୟର ଧନ ଆଣି ମୁଁ ଧନୀ ହେବି । ମୁଁ ତାଙ୍କର ପ୍ରସ୍ତାବରେ ରାଜି ହେଲି ନାହିଁ ।

କାହିଁକି ରାଜି ନହେଲି ସେକଥା ତୁମେ ତମର 'ସଖୀ ଅପାଙ୍କୁ ଜଣାଇଲି ନାହିଁ । ସେ ମୋର ମନର କଥା ଜାଣିଥିଲେ । ଘରକୁ ଫେରି ଆସିବା ପୂର୍ବରୁ ମୁଁ ତାଙ୍କୁ କହିଥିଲି ତୁମେ ମତେ ସ୍ନେହ କର । ମୋର ପତ୍ରଟିର ଉତ୍ତର ସିନା ଦେଲ ନାହିଁ, ଯେଉଁ କବିତାଟି ଲେଖି ଦେଇଥିଲ, ସେଇଟି ମୁଁ ସାଇତି ରଖିଛି । ମୋର ମନ ତୁମକୁ ଯେତେ ପତ୍ର ଲେଖେ, ତୁମର ସେଇ କବିତାଟି ପଢ଼ିଲେ ମୁଁ ମୋ'ର ସବୁ ପତ୍ରର ଉତ୍ତର ପାଏ । ସତେକି ତୁମେ ଆସି ମୋ ଆଗରେ ଠିଆ ହୁଅ ।

ତୁ ଆଜ ଅତି ସୁନ୍ଦର ଦିଶୁଛୁ ସୁଭ୍ରା, ତତେ ଗେଲ କରିବାକୁ ମୋର ମନ ହେଉଛି । ଦେଖ୍, ବିଲମାଳ ଆର ପାଖେ ଦୂର ଗଛଗହଳ ଧାରର ଠିକ୍ ଉପରେ ଅସ୍ତଗାମୀ ନାଲି ଟହଟହ ସୂର୍ଯ୍ୟ କେଡ଼େ ସୁନ୍ଦର ଦିଶୁଛନ୍ତି । ଏ ପାଖକୁ ଅନା, ସୁନାଥାଳି ପରି କେଡ଼େ ବଡ଼ କେଡ଼େ ଶୋଭାକାର ଚନ୍ଦ୍ରମା ପୂର୍ବ ଦିଗ୍‌ବଳୟର ଗଛଗହଳ ଉପରକୁ ଉଠି ଆସିଲେଣି । ଆଜି କୁଆଁର ପୂନେଇଁ ନୁହେଁ, ଆଜି ଚତୁର୍ଦ୍ଦଶୀ ।

ଭାରି ସାହାସିଆ ତମେ ସୁକାଭାଇ । ଛାଡ଼ିବଟି ମୋର ହାତ । ନୂଆଭାଉଜ ଆସିବେ । ମୁହୂର୍ତ୍ତେ ମତେ ସେ ଆଖିଛଡ଼ା କରନ୍ତି ନାହିଁ । ଆସୁଥିବେ ମ । ଗେଲ କଲେ କଅଣ ତୁମ ସ୍ନେହଟା ଅଧିକ ବୋଲି ଜଣା ପଡ଼ିବବ ? ସେଇଟା ଅଲଜକ ଅନୀତି କଥା । ତୁମେ ମୋର ବାପଭାଇ ନୁହଁ, ଗେଲ କରିବ କେଉଁ ଅଧିକାରରେ ?

ସତ କହିଲୁ ଲେ ସୁଭ୍ରା, ମୋର ସେ ଅଧିକାର ନାହିଁ । ସେ ଅଧିକାର ଆସିବ ନାହିଁ । ଏଠାକୁ ତୁ ଆସିଛୁ ସ୍ନେହରେ, ସମ୍ମାନରେ । ଦୁଇ ଦିନର କୁଣିଆଁ । ମୂଲିଆ ଘରର ପୁଅ ମୁଁ, ଭଉଣୋଇଙ୍କର ଦୟା ହେଲରୁ ଗାଈଜଗା ଛାଡ଼ି ପାଠ ପଢ଼ିବାକୁ ଅନନ୍ତପୁର ଆସିଥିଲି । ପର ଅନ୍ନରେ ପ୍ରତିପାଳିତ ହୋଇ କେତେ ବର୍ଷ କଟି ଗଲଣି । ଏଠାରୁ ରହଣିର ଏଇ ମୋର ଶେଷ ବର୍ଷ । ବଡ଼ ଘରର ଅଲିଅଳି ଝିଅ ତୁ, ମୂଲିଆ ଘରର ନଇଁଛଣା ପୁଅ ମୁଁ ।

ହାତ ଛାଡ଼ି ସୁକାନ୍ତ ଅଗେଇ ଗଲ । ଅନୁତାପରେ ଥରି ଉଠିଥିଲ ମନ । ପିତାମାତା ହରା ଅନାଥ ପିଲଟା ସେ । ବଂଚି ରହି ଦୁନିଆଁ ଦାଣ୍ଡରେ ବାଟ ଚାଲି-ବାକୁ ସେ ଉଦ୍ୟମ କରୁଛି । ଆକାଶର ଚନ୍ଦ୍ରମାକୁ ଦେଖି ଆନନ୍ଦିତ ହେବାର ଅଧି-କାର ତ ସମସ୍ତଙ୍କର ଅଛି, ପାଇବାକୁ ମନ କରିବା ଓ ହାତ ବଢ଼ାଇବା କେବଳ ଶିଶୁ, ପାଗଳ ଓ ନିର୍ବୋଧଙ୍କୁ ସାଜେ । ସେ ଶିଶୁ ନୁହେଁ କି ପାଗଳ ନୁହେ । ସେ ନିର୍ବୋଧ ହେବାକୁ ଚାହେଁ ନାହିଁ । ସେ ଦୂରେଇ ଯିବ । କର୍ତ୍ତବ୍ୟ ପଥରେ ଅଗେଇବ । ରୂପ, ଯୌବନର ମୋହ ଓ ଉତ୍ତେଜନା ସଙ୍ଗେ ଖେଳିବାକୁ ଆଉ କେବେ ସାହସ କରିବ ନାହିଁ ।

ସୁଭଦ୍ରା ପଛରୁ ଆସି ହାତ ଧରିଲ । ସୁକାନ୍ତ ଫେରି ଚାହିଁଲ । ସୁଭଦ୍ରାର

ସୁନ୍ଦର ମୁହଁଟି କେଉଁ ଅଜଣା ଦୁଃଖରେ ଗମ୍ଭୀର ହୋଇଛି । କଜ୍ଜଳ ପୁରିତ କଇ-ଫୁଲ ପାଖୁଡ଼ା ପରି ଲୋଚନ ଦିଓଟିରେ ଲୋତକ ଛଳଛଳ ହେଉଛି । ଗୋଲପୀ ଓଠ ପାଖୁଡ଼ା ଦିଓଟି ଥରି ଉଠୁଛି ।

ମନ କଷ୍ଟ କଲକି ସୁକା ଭାଇ ? ଯିଏ ଯାହାକୁ ଭଲ ପାଏ ସିଏ ତା' ସଙ୍ଗେ ଟିକିଏ ଖେଲିବ ଲଗାଏ । ଅଲପ ଚଢ଼େଇବାକୁ ମନ କରେ । ମୋ ହାତ ମୁଁ ଟାଣି ନେଇ ନ ଥିଲିତ, ତେମେ ଛାଡ଼ି ଦେଲ ।

ମନ ହେଉଥିଲ ଗେଲ କରିବାକୁ । ସତ୍ତା ଅପା ପଛରୁ ଆସୁଛନ୍ତି । ମନରେ ତାଙ୍କର କେତେଦିନରୁ ସନ୍ଦେହ କି କୌତୁହଳ କି ଆଗୁଁ ହୋଇବ ସାବଧାନର ଧାରଣା ଜାଗିଛି । ଆମେ ହେବେ ଗୃହିଦନଆଁ କୁଣିଆଁ । ଅଧିକ ଘନିଷ୍ଠତା ଭଲ ନୁହେଁ ।

ପାଠୁଆ ପିଲଙ୍କର ପାଠରେ ମନ ଦେବା ଭଲରେ ଭାଇ, ତୁ ମଣିଷ ହୋଇ ବାଟ ଚାଲିଲେ ବଡ଼ ଘରର ଅଲଅଲ ଝିଅ ସୁବର୍ଣ୍ଣ ପ୍ରତିମାକୁ ତୋ ହାତରେ ଦେବାକୁ ତା' ବାପା ତ ବଲେ କହିବେ ।

ସତ୍ତା ଅପା ଆକଟ କରୁଛି ।

ସୁଭଦ୍ରା ତାକୁ କବ କରିଥିଲ । ଦୂରେଇ ଆସି ବୃତ୍ତିପାଇ କଲେଜରେ ପଢ଼ିଲ ବେଳେ ସୁଭଦ୍ରାର ପିତା ସମ୍ବନ୍ଧ ଆଣିଲେ ବନ୍ଧୁ ପାଠ ପଢ଼ା ପାଇଁ ସାହାଯ୍ୟ ଦେବାକୁ ନାସ୍ତି କରିଦେଲେ ।

ଗୋଟିଏ ପାଖରେ ସୁଭଦ୍ରା ଓ ତା' ସଙ୍ଗେ ଦଶମାଣ ନାଲକୁଳିଆ ଧାନଜମି, ଆଉ ଗୋଟିଏ ପାଖରେ ବିଦ୍ୟା । ଦୁଇଟିକୁ ତଉଲି ଦେଖିଲ । ସେ ଭଲ ଛାତ୍ର, ବୃତ୍ତି ପାଉଛି । ଦୁଃଖେ-କଷ୍ଟେ ଚଳି ଯାଉଛି । ଆଗେଇ ଚାଲିବାର ଆଗ୍ରହ ମନରେ ଜଳୁଛି । ସତ୍ତା ଅପାଙ୍କର ଅନୁରୋଧ ଓ କାର୍ତ୍ତିକ ଭାଇଙ୍କର ଆଦେଶକୁ ସେ ରକ୍ଷା କରି ପାରିଲ ନାହିଁ ।

କବଡାର ଝରଣା ଶୁଖିଲା । ସୁଭଦ୍ରା ଧରିଲା ଅନ୍ୟର ହାତ ।

କାର୍ତ୍ତିକ ବିରକ୍ତ ହେଲେ । ଯେଉଁ ସାହାଯ୍ୟ ଦେଉଥିଲେ ସେତକ ବନ୍ଦ କରି ଦେଲେ । ସପ୍ତ ଅପା ଗଞ୍ଜଣା ସହିଲେ ।

କଲିକତାରୁ ଫେରି ଅନନ୍ତ ଭାଇ କେବଳ ସମ୍ପତ୍ତି କ୍ରୟ କରି ଧନୀ ହେବାକୁ ବ୍ୟାକୁଳ । ବାହା ହୋଇ ସଂସାର କଲେଣି । ଭଗବାନ ଜନ୍ମ ହେଲଣି । ସାହାଯ୍ୟ ଦେବାକୁ ଭାଇ ମନା କରି ଦେଲେ । ଭାଉଜଙ୍କର କୁ ଶିକ୍ଷାରେ ପଡ଼ି ପତ୍ର ଲେଖିଲେ, ତୋ' ଭାଗ ସମ୍ପତ୍ତି ତୋ ଭାଉଜ ନାମରେ ରେଜିଷ୍ଟ୍ରୀ କରି ଦେଲେ, ଧାର ଉଧାର କରି ସେ କେଉଁଠୁ ଟଙ୍କା ଆଣି ଦେଇ ପାରିବେ ବୋଲି କହୁଛନ୍ତି ।

ତାହାହିଁ ହେଲା । ସେଥିପାଇଁ କଟକ ଛାଡ଼ି ନରେନ୍ଦ୍ରପୁର ଯିବାକୁ ପଡ଼ି ନାହିଁ । ରେଜିଷ୍ଟ୍ରେସନ ହେଲା କଟକରେ । ପାଞ୍ଚଶ ଟଙ୍କା ପାଇ ଭାଇଙ୍କର ପଦଧୂଳି ଓ ଆଶୀର୍ବାଦ ଘେନି ସେ ହଷ୍ଟେଲକୁ ଫେରି ଆସିଲା । ଟଙ୍କାତକ ପୋଷ୍ଟ ଅଫିସରେ ରଖି ନରେନ୍ଦ୍ର ପୁରକୁ ସେ ଦୂରରୁ ଜୁହାର କରି ଥିଲା ।

ଆଖିରୁ ଝରି ଥିଲା ଲୁହ ଧାର । ଦୁନିଆଁରେ ସେ ଏକାକୀ ହୋଇଛି । ନିଃସ-ହାୟ ହୋଇଛି । ନିଜ ହିମ୍ମତରେହିଁ ସେ ମାଟି ଖୋଳିବ । ନିଜ ଗୋଡ଼ରେ ଠିଆ ହେବ । ସ୍ୱାର୍ଥପର ଦୁନିଆଁରେ ସମସ୍ତେ ପଛରୁ ଗୋଡ଼ ଓଟାରିବେ । ହାତ ଧରି କେହି ଆଗେଇ ନେବେ ନାହିଁ ।

ମନ ଦେଇ ରମା ସବୁ ଶୁଣିଲା । ଦୀର୍ଘ ଶ୍ୱାସ ଛାଡ଼ିଲା । ଉତ୍ତର ଦେଲା ନାହିଁ ।

ମୁହଁରେ ହସ ଲିଭି ଯାଉଛି । ଦୃଷ୍ଟି ଧୀରେ ଧୀରେ ବୁଲି ଯାଉଛି ଦୂରି ଆଡ଼କୁ । ସୂର୍ଯ୍ୟ ଉଠି ନଦୀର ଆର ପାଖରେ ଲମ୍ବି ଯାଉଥିବା ଅରଣ୍ୟର ଶେଷ ପାହାଡ଼

ଧାଡ଼ିର ନଇଁ ଲ ଉପତ୍ୟକାର ମଥା ଉପରେ ହେଲେଣି । ଏଥର ସେ ଅସ୍ତମିତ ହେବେ । ପାହାଡ଼ର ପଛପାଖେ ମୁହଁ ଛପା ଦେବେ । ଶେଷ ବୈଶାଖର ଉଷ୍ଣ ଗୋଧୂଳି ବେଳ ଶୀତଳ ହେବ । ଗରମ ପବନ ବରଫ ହେବ ।

ସୁନ୍ଦରଗଡ଼ ସହର କଡ଼ର ପାହାଡ଼ କାନ୍ଥି ଉପରେ କ୍ଳାନ୍ତ ହୋଇ ବସିଛନ୍ତି ସେ ଦହେଁ ବଗ ଓ ବଗୁଲୀ । ସହରର ଶୋଭା ଦେଖୁଛନ୍ତି । ଇବ୍ ନଦୀ କୂଳରୁ ଜେଲ୍ ଅଫିସ୍ ଯାଏ ପ୍ରାୟ ଏକ ମାଇଲ ଲମ୍ବି ଯାଇଛି ସେଇ ପାହାଡ଼ କାନ୍ଥି । ଉଚ୍ଚତା ତିନିଶ ଫୁଟ ହୋଇ ପାରେ । ଅଧ ମାଇଲ୍ ହେବ ପ୍ରସ୍ଥ । ଲୋକେ କହନ୍ତି, ଏ ପାହାଡ଼ରେ ସୁନା ଅଛି ।

କଷ୍ଟ ହେଲେ ମଧ କେଡ଼େ ଆଗ୍ରହରେ ନଦୀକୂଳ ନାସୀବାଟେ ରମା ସେଇ ପାହାଡ଼ ଉପରକୁ ଉଠିଛି ! ମଝି ପାହାଡ଼ର ବୁଦ ବୁଦକା ଗଛଗଛଲ ଚଟାଣ ଉପରେ ଛାଇତଳେ ସୁକାନ୍ତ ପାଖରେ ବସିଛି । ସାରା ସହର ଦେଖା ଯାଉଛି—ଚିତ୍ର ଅଙ୍କା ହୋଇ ପରି । କେତେ ଦିନର ଆଶା ତାର ଆଜି ମେଣ୍ଟିଛି । ସତେକି ସେ ଆଜି ଗଡ଼ ଜିତିଛି । ଦେହରୁ ତ ଫିଟି ପଡ଼ୁଛି ଗମ ଗମ ଝାଳ ।

ଥକ ପଡ଼ିଛ କି ରମା ? ପିଲମାନଙ୍କର ପାହାଡ଼ ଚଢ଼ା ଦେଖି ଈର୍ଷା କର୍ଥିଲ । ସାହସ କରି ଉଠି ଆହିଲ ତ, ଓହ୍ଲାଉଲ ପରେ ଗୃହଦିନ କାଳ ବିଛଣାରେ ପଡ଼ି ରହିବ । ଗୋଡ଼ ଦରଜ ହେବ ।

ପରେ କଅଣ ହେବ ସେ କଥା ମୁଁ ଏବେ ଭାବୁନି ନାହିଁ । ଦେଖୁଛି ନାମ ସାର୍ଥକକାରୀ ଏଇ ସୁନ୍ଦରଗଡ଼ ସହର । ଭୁଲି ପାରିବି ନାହିଁ ଜୀବନରେ ।

ତୁମେ ଏଥର କବିତା ଲେଖ ।

ଲେଖି ଜାଣେ ନାହିଁ । ପଢ଼ିବାକୁ ମୁଁ ଭଲ ପାଏଁ ।

ମନ କନ କନ ହେଲ, କହି ଦେବକି, ମୁଁ ଦିନେ କବିତା ଲେଖୁଥିଲି । ଯିଏ ମତେ କବି ହେବାକୁ ପ୍ରେରଣା ଦେଇଥିଲ । ସେଇ ସୁଭଦ୍ରା ଆଜି ଏ ପୁରରେ ନାହିଁ । ସେଇ ମୋର ପ୍ରେରଣାକୁ ସଙ୍ଗରେ ନେଇଗଲି । ବାସ୍ତବ ଦୁନିଆ ସଙ୍ଗେ ଲଢ଼ି

ମଣିଷ ହେବାକୁ ସେ ଦୁନିଆର ଆର ପାଖରୁ ନିର୍ଦ୍ଦେଶ ଦେଇଛି । ସବୁ କବିତା ହିଁ ଟିକି ଟିକି କରି ଛିଣ୍ଡାଇ ଜାଳି ଦେଇଛି । ସେ ଗୁଡ଼ିକ ମଧ୍ୟ ଅଶରୀରୀ ସୁଭଦ୍ରା ପାଖକୁ ଚାଲି ଯାଉଛି । ତାଆର ଅମୋଘ ପ୍ରେତାତ୍ମା ସେ ଗୁଡ଼ିକ ପଢ଼ି ନ ପାରିଲେ ମଧ୍ୟ ଅନୁଭବ କରିବ । ନଶୀଥର ନିବିଡ଼ ଅନ୍ଧାରକୁ ଚଂଚଳ ଓ ମୁଖର କରିବ ।

କହିବ କି, ତୁମେ ମୋର ଏ ଜୀବନର ଦୁଃଖ ସୁଖର ସାଥୀ । ଘୃଣା, ଶ୍ଲେଷ ମାନାଭିମାନ ସହିଛ । ମାନେ ନ ମାନେ ତୁମର ଧାରଣାରେ ଯାହା ଭଲ କି ମନ୍ଦ ନିଃସଙ୍କୋଚରେ ନିର୍ଭୟରେ ତୁମେ କହିଛ । ତୁମେ ମୋର ଦେଖା ପରଖା ଧ୍ରୁବ-ତାରା । ସୁଭଦ୍ରା,ବି ଦିନେ ଅଦେଖା ଅଲିଅ ହୋଇ ମୋତେ ବାଟ ଦେଖାଇଥିଲି । ବନ୍ଧୁବାନ୍ଧବ ଓ ଆତ୍ମୀୟ ସ୍ୱଜନ ମୋତେ ପାଶୋରି ଦେଲେ । କେବେ କାହା ପାଖରେ ମୋର ପ୍ରଶଂସା କରୁଥିଲେ ମଧ୍ୟ ଈର୍ଷାରେ ଜଳି ଯାଉଥିଲେ । ମୋତେ ଅପଦାର୍ଥ ଓ ଅକୃତଜ୍ଞ ବୋଲି ସମାଲୋଚନା କରୁଥିଲେ !

ବିଶ୍ୱାସ କରିବକି, ସୁଭଦ୍ରା ମୋ ମନରେ ଆଗେଇ ଯିବାକୁ ଦୃଢ଼ ସଂକଳ୍ପର ବୀଜ ବପନ କରିଥିଲି । ଛାତ୍ର ଜୀବନରେ ଯେଉଁମାନେ ମୋର ସହପାଠୀ ଥିଲେ ସେମାନେ ମୋର ମିତବ୍ୟୟିତାକୁ ଖେଚଡଲେଖା ବୋଲି ଉପହାସ କରୁଥିଲେ । ଅଭାବ ପାଇଁ ମୋର ଅପରିଷ୍କାର ବେଶକୁ ଦେଖି ନାକ ଟେକୁଥିଲେ । ଦିନେ ଯେ ଏଇ ମୂଲିଆ ପୁଅଟି ଛିଣ୍ଡା ମଇଳା କରିଆ ପିନ୍ଧି ପାଖରେ ପାଞ୍ଚଣ ରଖି ପରି ପିଣ୍ଡାରେ ପିଆଜ ଲଗାଇ ବାସୀ ପାଖାଳକୁ ଅମୃତ ପରି ଖାଇ ପାରୁଥିଲି ସେ କଥା ସେମାନେ ଜାଣନ୍ତି ନାହିଁ ।

ସେହି ଦୁଃଖମୟ ଜୀବନ ପଥରେ ଦୃଢ଼ ପଦକ୍ଷେପରେ ମୁଁ ଯେତେବେଳେ ଆଗେଇ ଯାଉଥିଲି, କେତେ ହସିଲି ମୁହଁ ଛଳ ଛଳ ଯୌବନ, ଆଉ ଚାହାଁଣୀର ସନ୍ଧୀନ ହୋଇଥିଲି । ମୋଓର ଦରିଦ୍ର ଅପନା ଭେକ ଦେଖି ମଧ୍ୟ ଯେଉଁମାନେ ଲୋଭିଲା ଆଖିରେ କଣେଇ ଚାହିଁଥିଲେ ସେମାନଙ୍କୁ ତୁମେ ନିବୋଧ ଆଖ୍ୟା ଦେଇ ପାର କିନ୍ତୁ ସେମାନେ ମୋ ମନରେ ପୁରୁଷ ପଣର ଅହମିକା ଜଗାଇଥିଲେ । ମୋର ରୂପ,ଯୌବନ, ସ୍ୱାସ୍ଥ୍ୟ ଓ ଅନୁରାଗ ଜନ୍ମାଇବାର ଆଉ କଅଣ ଅଜଣା ଉପକରଣ ଅବଶ୍ୟ ଥିଲି ।

।

ନିଜେ ମୁଁ ଝାଣି ହୋଇଥିଲି । ହୋହର୍ ଦୃଷ୍ଟି ସେମାନଙ୍କର ରୂପ ଯୌବନ ଓ ଆକର୍ଷଣୀ ପଣରେ ସୁଭଦ୍ରାର ସ୍ମୃତିକୁ ଲେପ ଦେଇଥିଲା । ସେମାନଙ୍କ ଆଖିରେ ଓ ଓଠରେ ସୁଭଦ୍ରା ହସିଥିଲା ଓ କାନ୍ଦିଥିଲା । ପରିଣତି ମନେ ପକାଇ ଦେଇଥିଲା । ମୁଣ୍ଡ ନୋଇଁଥିଲା । ଛାତି ଥରାଇ ଥିଲା । ତୃତୀୟ ଥର କଣେଇ ଚାହିଁବାକୁ ସାହସ କରି ନ ଥିଲି ।

ତୁମ ସଙ୍ଗେ ପ୍ରଥମ ସାକ୍ଷାତ୍ ଦିନ ଛପି ଛପି ସେ ଆସିଥିଲା ମୋ ସାଥିରେ, ହସି ହସିକା । ତୁମ ପାଖରେ ମୋତେ ସେ ସମର୍ପି ଦେଇଥିଲା । ତୁମ ସଙ୍ଗେ ସେ ବିଲୀନ ହୋଇ ଏକାକାର ହେଲା । ଯେଉଁମାନଙ୍କର ଅଲପ ସ୍ନେହ ମୋର ନୟନକୁ ଏକାଧିକ ଥର ଓଟାରି ଥିଲା ସେମାନଙ୍କର ଧାରଣା ମଧ୍ୟ ତମର ଭିତରେ ଲୀନ ହୋଇଥିଲା ରମା, ତୁମ ଧାରଣାରେ ତୁମେ ଏକ ହୋଇ ପାର କିନ୍ତୁ ମୋ ଧାରଣାରେ ତୁମେ ମୋର ସବୁ ଆକର୍ଷଣୀର ସମଷ୍ଟି ।

ଶୋଭାବତୀ ମଧ୍ୟ ତୁମର ଭିତରେ ବିଲୟ ହେବ ।

ମନକଣ୍ଠି ହୋଇ ମୋ ଅତୀତ ଜୀବନର ଗାଥା ତୁମେ ଶୁଣିଛ । ସବୁ ମଣିଛ ସତ୍ୟ । ଯାହା କହୁଛି, ମୁଁ ସତ୍ୟ ହିଁ କହୁଛି । ଯାହା କହୁ ନାହିଁ, ସେତିକ ମୋର ନିଜର ହୋଇ ରହୁଛି ।

ସୁଭଦ୍ରାକୁ ତେମେ ଜାଣ ନାହିଁ । ଆଉ ଯେଉଁମାନେ ତମର ଭିତରେ ଛପି ଯାଇଛନ୍ତି ସେମାନଙ୍କୁ ମଧ୍ୟ ଜାଣ ନାହିଁ । ଶୋଭାବତୀକୁ ବି ଜାଣିବ ନାହିଁ । ସେମାନେ ତୁମର ଏକ ନିଷ୍ଠୁର ସପତ୍ନୀ ।

ରମାର ନିଦ ଭାଙ୍ଗିଲା । ବାରଗୁଡ଼ିଲାଅ ସପନ ଅପସରିଲା । ଶେଷ ଦୃଶ୍ୟର ପରିବେଷ୍ଟନ ତଥାପି ରହି ରହି ହେଉଛି । କ୍ଳାନ୍ତ ଆଖି ପତା ଖୋଲି ହେଉ ନାହିଁ । ଅରଣ୍ୟାନୀ ଘେରା ଗିରିମାଳର ପାଦଦେଶରେ ପ୍ରବାହିତ ତଟିନୀର ମନୋରମ ଦୃଶ୍ୟ

ମନ ଗହନରେ ଲଖି ରହୁଛି । ଜଳ ପ୍ରପାତର ଘନ ଘନ ଶବଦ କାନରେ ବାଜ ଯାଉଛି ।

ଗମ୍ଭୀର ସଙ୍କୀର୍ଣ୍ଣ ଗିରିଦରିରେ ପ୍ରବଳ ବେଗରେ ଛୁଟିଛି ପ୍ରବାହ ପ୍ରସର ଯାଉଛି । ଛପି ଯାଉଛି ପର୍ବତ ମାଳର କେଉଁ କନ୍ଦରେ । ହଜିଯାଇଛି କି ? ମୁରଧ ନେଇ ଖୋଜ ପାଉନାହିଁ । ଉପର ପଥର ଶଯ୍ୟାରୁ ଝରଝର ହୋଇ ଗିରିମାଳ ନନ୍ଦିନୀ ଯେଉଁଠି ସାତତାଳ ଗମ୍ଭୀର କନ୍ଦରକୁ ଡେଇଁ ପଡ଼ୁଛି, ସେଇଠି ଖେଇ ଫୁଟା ପାଣିର ଆବର୍ତ୍ତନରୁ ଉଠୁଛି ଜଳ କଣାର କୁହେଳ ।

ଜୟପୁର ପାଖ କୋଲବ ନଦୀର ଜଳ ପ୍ରପାତ ବାଘଝି କି ? ମାଛ କୁଣ୍ଡ ନଦୀର ଡୁଡୁମା ପ୍ରପାତ ନୁହେ କି ?

ପ୍ରପାତ ଉପରକୁ ଅଧେଦୂର ଯାଏ ଲମ୍ବି ଯାଇଛି ଅକର୍ମଶୀଳା । ଉଠାଣିଆଁ । ମନା ନ ମାନି ଖସଡ଼ା ପଥର ଉପର ଅଣଓସାରିଆ ବାଟରେ ଜଳ ପ୍ରପାତ ଦେଖି-ବାକୁ ଉଠି ଯାଉଛନ୍ତି ସୁକାନ୍ତ । ହାତ ଧରି ପଛେ ପଛେ ଯାଉଛି କୁନୁ । ଝରଣା କୂଳର ଚଟା ପଥର ଉପରେ ଆକୁଳ ଆଖିରେ ଅନାଇ ରହିଛି ରମା । ମନ ଦକ-ଦକ । ଛାତି ଥରଥର । ଇଏ ପାଖରେ ନାହିଁତ । ସଂସାରକୁ ସେ ଆସି ନାହିଁ ପରା ।

ଚାହିଁ ରହିଛି ରମା । ଅଗେଇ ଯାଉଛି ସୁକାନ୍ତ । କେଡ଼େ ନର୍ଭିକ ପିଲାଟା କୁନୁ, ବାପର ହାତ ଛାଡ଼ି ଠେଲ ଠେଲ ଚାଲିଛି । ସାତତାଳ ତଳେ ପାଣି ଗର୍ଜୁଛି, ନାଚୁଛି, ହସୁଛି, ଧୂଆଁ ଛାଡ଼ୁଛି । ମଧ୍ୟାହ୍ନ ତପନର ମୁହଁ ଢାଙ୍କିଛି ବହଳ ଧବଳ ଅଳସ ଜଳଦ ।

କେତେ ଦୃଶ୍ୟ ସେ ଦେଖିଛି, କେତେ ସ୍ଥାନରେ, ସାତ ବର୍ଷର ବୈବାହିକ ଜୀବନ କାଳରେ । ସବୁ ମିଶାମିଶି ହୋଇଛି ଭାବନାରେ ।

ପାଖେ ପାଖେ ଥିଲେ ନ୍ତ । ସେ ପାଖରେ ଥିଲେ ମନରେ ଭୟଭ୍ରାନ୍ତି ପଶେ ନାହିଁ । ସେ ନର୍ଭିକ କର୍ମନିଷ୍ଠ ଏକ୍ସେଟ ଇଞ୍ଜିନିୟର ।

ସେ ଦରିଦ୍ର ଘରେ ଜନ୍ମ ହୋଇଥିଲେ, ଦୁଃଖ କଷ୍ଟ ଅପମାନ ସହିଥିଲେ । ପେଟରେ ଓଦା କନା ଦେଇ ଛାତ୍ରୀ ମଇଳା ପିନ୍ଧି ପାଠ ପଢ଼ିଥିଲେ ।

ଶୁଣିଲ କଥା ଗଳ୍ପ ପରି ଲଗେ ; ଅନୁମାନ କରଯାଇ ପାରେ । ଅନୁଭବ କରି ହୁଏ ନାହିଁ । ଅନୁଭବୀ ଉପରେ ଗତ ଜୀବନର ଘଟଣା ମାନ ପ୍ରଭାବ ପକାଇ-ଥିବ, କିନ୍ତୁ ସେସବୁ ବନ୍ଦୁହନ ଜୀବନ୍ତ ହୋଇ ରହେ ନାହିଁ । ପ୍ରକାଶ କରିବାକୁ ଆଗ୍ରହ ହୁଏ । ଖୁସି ଲଗେ । ଆତ୍ମ ଗୌରବ ମିଳେ ।

ସୁକାନ୍ତ କହେ, ରମା ମନଦେଇ ଶୁଣେ ।

ରମା ନିଜେ ନିଜକୁ ଉତ୍ତର ଦିଏ ।

ମୁଁ ଇଞ୍ଜିନିୟରଙ୍କର ହାତଧରି ଘର କରିବାକୁ ଆସିଛି । ମୋ ସ୍ୱାମୀ ମୋର ସର୍ବସ୍ୱ । ସେ ମୋର ଦେବତା । ମୁଁ ତାଙ୍କୁ ସୁଖୀ କରିବାକୁ ଜୀବନ ପଣ କରିବି । କାଲି ସେ କଅଣ ଥିଲେ, ତା ସଙ୍ଗେ ମୋର ସମ୍ପର୍କ ନାହିଁ । ଆଜି ସେ ଯାହା, ମୁଁ ତାଙ୍କୁ ସେଇଆ କରିତ ପାଇଛି । ସେ ବାଟ କଢ଼ାଇବେ । ଭଲରେ ଓ ମନ୍ଦରେ । ମୁଁ ଅନୁଗମନ କରିବ । ତାଙ୍କର ପ୍ରେମର କଣିକାକୁ । ତାଙ୍କର ରୂପର ଛାଞ୍ଚରେ ନିଜ ଭିତରେ ଗଢ଼ିବ ।

ଶୋଇଲ ପିଲଟିର ଟିକି ଲୁଲୁକୁଲିଆ ମୁହଁଟିକୁ ସେ ତନ୍ମୟ ହୋଇ ଅନାଇଁ ରହିଛନ୍ତି । ତଳେ ଠିଆ ହୋଇ ପଲଙ୍କ ଉପରେ ଦୁଇହାତ ଭରି ଦେଇ ସେ ନଇଁ ପଡ଼ିଛନ୍ତି । ତିନ ମାସର ଛୁଆଟି ତ ଲୁନ୍ । ସଫେଦ ଧଳା ଗୋଲିଆ ମୁହଁଟି, ପୂରିଲ ପୂରିଲ କଅଁଳିଆ ଗାଲ । ଗୋଲପୀ ଲୁନଲୁନ ଓଠ ହଳଟିରେ ସେ ମନେ ମନେ କ୍ଷୀର ଶୋଷୁଛି । ଓଠ ପତା ହଲୁଛି । ଗାଲ ହଳଟି ଚହଲୁଛି । ଟକଣିଆ ଟିକି ଲମ୍ବ ନାକଟିର ପୁଡ଼ା ହଳଟି ଥରୁଛି, କପାଳରେ ଲମ୍ବଲମ୍ବି କଜଳ ଗାର । କଳା ମିଚ ମିଚ ଘଞ୍ଚକେଶ ତାର ମୁଣ୍ଡରେ, ତେଲ ଜୁକୁଜୁକୁ ।

ସୁକାନ୍ତ ଶୁଣୁଥିଲା । ପଛରେ ହସହସ ରମା ।

ଢେଙ୍କାନାଳରେ ରହଣି ବର୍ଷଟିଏ ପୂରିବାକୁ ବସିଲା । ସରକାରୀ ଶୃଙ୍ଖଳ । ଆଜି ଏଠି ତ କାଲି ସେଠି, ହାଣ୍ଡିରେ କଳା ପଡୁନାହିଁ । ପୁଣି କେଉଁଠିକି ବଦଳି ହେବାର ଖବର ଆସିଲାଣି । ଅବାଗିଆ ଝୁଙ୍କିଆ ଲୋକ । କଥା ମାନିବେ ନାହିଁ ।

ଛୋଟ ପିଲାଟିକୁ ନେଇ ପୁଣି କେଉଁଣେ ଯିବା ?

ଯେଉଁଠିକୁ ସେମାନେ ପଠାଇବେ ।

ବଡ଼ ହାକିମ କି ଏମ୍. ଏଲ୍. ଏ. କି ମନ୍ତ୍ରୀକାହାକୁ ଥରେ ଆମର ଅସୁବିଧା କଥା କୁହ । ଆଉ ଛ ମାସ କଟୁ । ପିଲାଟି ଟିକେ ଝାଣ ହୋଇ ଯାଉ । ତେଣିକି ଯହିଁ ପଠାଇବେ ତହିଁ ଯିବା ।

ଏଠାକୁ ବଦଳି ହୋଇ ଆସିବାକୁ ସେମାନଙ୍କ ଆଗରେ କିଏ ଯାଇଁ କରପତ୍ର ଯୋଡ଼ି ଅନୁରୋଧ କରିଥିବ । ସେତିକି କରିବାର ଦକ୍ଷତା ମୋର ନାହିଁ ରମା, ସେପରି ଦକ୍ଷତା ଅର୍ଜନ କରିବାକୁ ମୁଁ କେବେ ଚେଷ୍ଟା କରି ନାହିଁ । ଏବଯାଏ ଆବଶ୍ୟକ ମଣିନାହିଁ । ଭବିଷ୍ୟତ୍‌ରେ ଦେଖାଯିବ । ଟିକି ପିଲାଟିକୁ ଅତି ସାବଧାନରେ ଆମେ ନେଇ ପାରିବା ।

କପିଳାସ ଯିବାକୁ ସକାଳୁ ସେ ସଜ ହୋଇଛନ୍ତି । ଶିବରାତ୍ରିକୁ କେତେ ଦୂର ଓ ପାଖ ସ୍ଥାନ ମାନଙ୍କରୁ ଆସି ପର୍ବତ ଉପରେ ସହସ୍ର ସହସ୍ର ଆବାଳ ବୃଦ୍ଧ ବନିତା ରୁଣ୍ଡ ହେବେ । ମନରେ କେତେ କାମନା ଧରି ଆସିଥିବେ । ଉଜାଗର ରହିବେ ସାରା ରାତି ।

ପର୍ବତ ଦେହରେ ନାନା ସ୍ଥାନରେ ଆଲୋକ ଜଳୁଥିବ । ଅନ୍ଧାର ରାତିରେ ଦୂରରୁ ଦିଶିବ ସହସ୍ର ସହସ୍ର ନକ୍ଷତ୍ରର ମିଳନ ସ୍ଥଳ ପରି । ସେ ଯାଉଛନ୍ତି ରାସ୍ତା

ବାଟ ଓ ଅସ୍ଥାୟୀ ଓ ସ୍ଥାୟୀ ରହଣି ଘରର କାର୍ଯ୍ୟ ପରିଦର୍ଶନ କରିବେ । ମହାଦେବଙ୍କର ଦର୍ଶନ କରିବେ ।

ଗତବର୍ଷ ତ ଦେଖି ଆସିଛ ରମା, ଏବର୍ଷ ଝିଅ ପିଲାକୁ ସଙ୍ଗରେ ନେଇ କୈଳାସ ଯିବାକୁ ମନ କରୁଛକି ?

ମନ କଲେ ବି ତୁମେ ମତେ ସଙ୍ଗରେ ନେବ ନାହିଁ, ମୁଁ ଜାଣେ ଯେ । ମନ-ରକ୍ଷା କରିବାକୁ ପଦେ ପଚାରି ଦେଲ ନା ।

ଅଭିମାନ କରୁଛ ? ଧବଳେଶ୍ୱରର ଶିବରାତ୍ରି ଦେଖିଛ, ପୁରୀ ଲୋକନାଥ, ଭୁବନେଶ୍ୱର—

ଅଣ୍ଡ ଭିଡ଼ ହୋଇଛି ମନ୍ଦିର ବେଢ଼ା ଭିତରେ । ମହାଦୀପ ରାତି ଅଧରେ ଉଠିବ । ଏପାଖ ସେପାଖ ହୋଇ ଗୋଡ଼ ଥକି ଗଲଣି । ଚାଲ ଫେରି ଯିବା ବସାକୁ ।

ଏଇଥି ପାଇଁ ଜିଗର ଲଗାଇ କଟକରୁ ମୋତେ ଭୁବନେଶ୍ୱର ଯାଏଁ ଆଣିଲ ? ତମ ମନର କଥାଟି ମୁଁ ଜାଣେ ଯେ । କୋଳରେ ପୁଅଟିଏ ଧରିବାକୁ ଇଚ୍ଛା ହେଲଣି । ମାନସିକ କରି ଆସିଛ ରମା, ଉପବାସ କରିଛ । ମହାଦୀପ ନ ଦେଖିଲେ ତମ ମନ କାମନା ପୂର୍ଣ୍ଣ ହେବ ନାହିଁ କି ମୋ କୁନୁ ତମ କୋଳକୁ ଆସିବ ନାହିଁ ।

ତୁମେ ଜ୍ୟୋତିଷ ହେଲଣି କି, ମୋ ମନ କଥା ଜାଣିଲ କିପରି ମ ? ବୁଝିଲି ଯେ, ନିଜ ମନ କଥା କହି ହେଉଛ ।

ପଛରୁ କିଏ ହସି ଉଠିଲା ।

ରମା ମୁହଁ ଫେରାଇଲା । କେତୋଟି ଝିଅ ହାତ ଧରାଧରି ହୋଇ ତାଙ୍କର କଡ଼ ଦେଇ ଆଗେଇ ଗଲେ । କେଣେଇଁ ଚାହିଁଲେ । ସେମାନେ ଓଡ଼ିଆ ଘରର

ହିଁଅ ପରି ଦଶୁ ନାହାନ୍ତି । ରମାର କଥା ଶୁଣି ନାହାନ୍ତି । ଶୁଣିଥିଲେ ବି ବୁଝି ପାରି ନ ଥିବେ ।

ସୁକାନ୍ତ ରମାର ହାତ ଧରିଲା । କହିଲା, ଆସ ପାର୍ବତୀଙ୍କ ମନ୍ଦିରକୁ ଯିବା । ଠାକୁରାଣୀଙ୍କର ଦର୍ଶନ କରି ଆସିବା ।

ଛାତିରେ ଚମକ ଲାଗିଲା । ପାର୍ବତୀଙ୍କ ମନ୍ଦିର । ଦେଖା ପରିଖା ହେବ । ଗୋଡ଼ ଚଳୁ ନାହିଁ । ମନାକରି ପାରିବ ନାହିଁ ।

ମନ୍ଦିର ଭିତରେ ଭିଡ଼ । ଆଖି ବୁଲି ଯାଉଛି । ସାମନାରେ କେତେ ପୁରୁଷ ଉଭାହୋଇ ଦର୍ଶନ କରୁଛନ୍ତି । କାହାନ୍ତି ସେ ହାକିମ ହଳଧର, ଯାହାଙ୍କୁ ଦେଖାଇ-ବାକୁ ଗ୍ରାମରୁ ତାକୁ ଆଣିଛନ୍ତି ? ଲୋକଙ୍କ ଭିତରେ ଠିଆହୋଇ ଦର୍ଶନ କରୁଛନ୍ତି ସୁକାନ୍ତ । ଆଖି ଲାଖି ରହିଛି ଠାକୁରାଣୀଙ୍କର ଉପରେ । ଦୁଇ ହାତ ଯୋଡ଼ିଛନ୍ତି ।

ନାରୀମାନଙ୍କ ସଙ୍ଗେ ରମା ତଳେ ମୁଣ୍ଡ ଲଗାଇଲା । ପ୍ରାର୍ଥନା କଲା, ମାଆ ଗୋ ପାର୍ବତୀ ଠାକୁରାଣୀ, ଜଗତ ଜନନୀ, ତାଙ୍କୁ ଦୀର୍ଘାୟୁ କର, ଯଶସ୍ୱୀ କର । ତାଙ୍କର ସେବାରେ ନିରତ ମୋର ମନ ପ୍ରାଣ ଯେପରି ମୁଁ ସମର୍ପି ଦେବି ସେଇ ବୁଦ୍ଧି ମତେ ଦିଅ । ମାଆ ଗୋ, ତାଙ୍କର ଆନନ୍ଦ ପାଇଁ ମାଗିବି ଗୋଟିଏ ଖେଳନା, ତାଙ୍କର ମନର ପ୍ରତିମା କୁନୁ ।

ରମା, ରମା—।

ପଛରୁ କିଏ ଡାକୁଛି । ଗେହ୍ଲାଳିଆ ଡାକ । କାହା ପାଟି ପରି ଶୁଭୁଛି ? ରମାର ପାଖେ ପାଖେ ତ ଚାଲୁଛି ସୁକାନ୍ତ । ତାଙ୍କ ହାତ ଧରି କୁନୁ ଧୀରେ ଧୀରେ ପାହାଚ ଉଠୁଛି । ଟିକି ହିଁଆ ଇଚ୍ଛା ରମାର ଛାତିରେ ଲାଖିଛି । ଲମ୍ବ ପଣତ ସେ ବେଢ଼ାଇ ଦେଇଛି ଦେହରେ । ଇଚ୍ଛା ଜୁଳୁଜୁଳୁ କରି ଅନାଇଁଛି । ପାଦତଳକୁ

ଲମ୍ବି ଆସିଥିବା ଶାଢ଼ୀ ଗୋଡ଼ରେ ଛନ୍ଦି ହେଉଛି । ଶୀଘ୍ର ଯାଇ ପାରୁ ନାହିଁ । କେତେଢ଼ ପାହାଚ ଉଠି ସାରଲଣି ।

ଗୁପ୍ତେଶ୍ୱର ମହାଦେବଙ୍କର ଆସ୍ଥାନ ପର୍ବତ ଉପରେ, ଗୁମ୍ଫା ଭିତରେ ବୋଲି ସେ ଶୁଣିଛି । ଅତି ବିଖ୍ୟାତ ପ୍ରତ୍ୟକ୍ଷ ଦେବତା । ଦର୍ଶନ କରିବାକୁ ଇଚ୍ଛନ ହୋଇ ସେ ଜୟପୁରରୁ ଆସିଛି ପ୍ରାୟ ଶହେଲଶ ମାଇଲ ଦୂର । ସୁକାନ୍ତ ମନା କରିଥିଲା ।

ଅସାଧ ବାଟ । କୋରାପୁଟ ଯାଏ ରାସ୍ତା ଚଉଦ ମାଇଲ ଅସୁବିଧା ହେବ ନାହିଁ । ସେଇଠୁ ରାମଗିରି ରାସ୍ତାରେ କୋଲାବ ନଦୀକୂଳ ଗୁପ୍ତେଶ୍ୱର ମହାଦେବଙ୍କ ପାହାଡ଼ ଆସ୍ଥାନ ଯାଏ ରାସ୍ତା ଅତି ଖରାପ । ଘୋର ଅରଣ୍ୟ । ପାହାଡ଼ ମାଳ ମଝିରେ ଉଠୁପଡ଼ ପଥୁରିଆ ବାଟ । ଅସଂଖ୍ୟ ଛୋଟ ବଡ଼ ନାଳ । ପିଲା ଦିଓଟିକୁ ଖୋଳ ଉପରେ ନେବା ନିରାପଦ ନୁହେଁ । ରହିବାକୁ ଅସୁବିଧା । ଶିବରାତ୍ରିର ଭିଡ଼ । ଏବର୍ଷ ନ ଗଲେ ଭଲ ହୁଅନ୍ତା ରମା । ଯଦି ଆଗ୍ରହ ହେଉଛି, ଗୁଳି ପାପଡ଼ା ହାଣ୍ଡି ଯିବା । ସେ ସ୍ଥାନଟି ବି ଜୟପୁରରୁ ସେତିକ ବାଟ । ଭଲ ରାସ୍ତା । ସେଠାକାର ଶିବରାତ୍ରି ମଧ ଅତି ବିଖ୍ୟାତ ।

ଥାଉ ତେବେ । ଏଇ ଜୟପୁରରେ ଥାଇ ସବୁ ମହାଦେବଙ୍କୁ ନମସ୍କାର କରିଦେବି । ଦେବତା ଜଣେ । ତାଙ୍କଠାରେ ମଣିଷର ବିଶ୍ୱାସ ସହସ୍ର ଥାନରେ ମନ୍ଦିର ତୋଳିଛି । ଲିଙ୍ଗ ସ୍ଥାପିଛି । ସମସ୍ତେ ଏ କଥା ଜାଣନ୍ତି ।

କଥା କଥାକେ ତମର ଅଭିମାନ ରମା ? ପ୍ରସ୍ତୁତ ହୁଅ ଯିବା । ମନର ଏଉ୍‌ମାନ ମେଣ୍ଟିଯିବ ।

ପଥର ଶେଜ ଉପରେ କୋଲାବ ନଦୀର ଜଳ ଛୋଟ ଛୋଟ ଅସଂଖ୍ୟ ଧାର ହୋଇ ପ୍ରବାହିତ ହେଉଛି । ମହାଦେବଙ୍କ ଆସ୍ଥାନ ପାହାଡ଼ ଉପର ଗୁହା ଭିତରେ । ତଳକୁ ତଳ ପାହାଡ଼ର ତଳ ଯାଏ କେତେ ଗୁହା ଆପେ ଆପେ ସୃଷ୍ଟି ହୋଇଛି । ଦିନରେ ବି ବହଳ ବହଳ ଅନ୍ଧାର । କେତେ ଯାତ୍ରି ଦୀପ ଜାଳିଛନ୍ତି । କେତେ ଝର୍ଚ୍ଚ ଆଲୁଅ ବୁଲି ଯାଉଛି । କାହାର ଅଳଅଳ ସାତ ବରଷର ଫ୍ରକ୍‌ପିନ୍ଧା ଝିଅଟି ଭାଇ ଭାଉଜଙ୍କର ଆଗେ ଆଗେ ଅନ୍ଧାର ଗୁହା ଭିତରେ ଏପାଖ ସେପାଖ ଧାଉଁଛି । ବଡ଼ଭାଇ ଆକଟି ଡାକୁଛି, ରମା, ରମା,—।

ସୁକାନ୍ତ ରମାର ହାତ ଧରିଲା । ଜୁନ ଜୁନ କହିଲା, ଦେଖ, ତମର ଟିକି ଅବତାର ! ପିଲାଦିନେ ତୁମେ ବି ସେମିତି ଚଗଲା ହୋଇଥିବ ।

ରମା ତାର ଉତ୍ତର ଦେଲା, ଜୟପୁରରେ, କାହାକୁ ତୁମେ ଭଲ ପାଅ, ରମା ନାମଟିକୁ କି ମତେ ? ମୋ ନାମ ଯଦି ଗୋମତୀ ହୋଇ ଥାଆନ୍ତା ?

ସୁକାନ୍ତ ଗେଲକରି କହିଲା, ମୋ ନାମ ଯଦି ହୋଇଥାନ୍ତା ହଳଧର ?

ସୁକାନ୍ତର ଦେହରେ ହାତ ବୋଲାଇ ଜୁନଜୁନ ରମା କହିଲା, ମୋ ନାମ ହୋଇ ଥାଆନ୍ତା ଜୟଶ୍ରୀ ।

ବାଲି ବାଲି ଅନ୍ଧାର ରାତିରେ ଦୁଇଟି ଦେହ ପରସ୍ପରର ସ୍ପର୍ଶ ଅନୁଭବ କରୁଛି । ଦିଶୁ ନାହିଁ ତ ଦେହ । ହଜି ଯାଇଛି ନାମ । ପାଖାପାଖି ହୋଇ ବହି ଯାଉଛି ଦୁଇଟି ଯୋଡ଼ିଲା ଜୀବନ । ଛନ୍ଦାଛନ୍ଦି ହୋଇଛି ପରସ୍ପର ପାଖେ ସମର୍ପି ଦେଲା ଦୁଇଟି କାମନା ।

ରମା ଆଖି ଖୋଲିଲା । ଆଖିର ପତା ଗୋଟେ ଲଗୁଛି । ଠିକ ହେଉ ନାହିଁ । ବାମ ଆଖିଟି ଅଳପ ଖୋଲିଛି । ଝରକା ପରଦାର ଫାଙ୍କବାଟେ ଦିଶି ଯାଉଛି ପଦାର ଆଲୁଅ । ଖରା ଟାଣ ହୋଇ ଆସୁଛି । କେତେବେଳ ହେଲାଣି କେଜାଣି । ଆରଘରୁ ଟେବୁଲ ଘଣ୍ଟାର ଟିକ୍ ଟିକ୍ ଶବଦ ଶୁଭୁଛି । ଆଉ କାହାରି ସ୍ୱର ଶୁଭୁ ନାହିଁ ।

ଦେହ ଅବଶ ଲଗୁଛି । ବାମ ବାହୁ ଠିକ ହେଉ ନାହିଁ । ବାଡ ପାହାନ୍ତି ଡାକ୍ତର ବାବୁ ଆସି ସେଇ ହାତରେ ଇଞ୍ଜେକସନ୍ ଦେଲେ । ଖଣ୍ଡିଆ ବ୍ରଣରେ ଔଷଧ ଲଗାଇ ପଛି ପକାଇଲେ । ସେ କେତେ ବେଳ ଯାଏ ରହିଲେ ରମାକୁ ଜଣା ନାହିଁ ।

ପାଖରେ ବସି ଗୋମତୀ ଦେହ ଆଉଁସୁ ଥିଲେ । ଜୟଶ୍ରୀ ପିଲା ଦୁଇଟିକୁ ନେଇ ଗଲେ ତାଙ୍କ ଘରକୁ । ହଳଧର ପାଖକୁ ଆସି ସାନ୍ତ୍ୱନା ଦେଉଥିଲେ, ପିଲାଙ୍କ ପରି କାନ୍ଦୁଛ କାହିଁକି ? ଧୈର୍ଯ୍ୟ ଧର । ସାମାନ୍ୟ ବ୍ରଣଟିଏ ତ, ଡାକ୍ତର ବାବୁ ଇଞ୍ଜେକ୍ସନ୍ ଦେଲେ ଭଲ ହୋଇ ଯିବ ।

ଇଞ୍ଜେକ୍‌ସନ୍ ଦେଲା ବେଳେ ସେ କଟମଟ କରି ବାହୁଟିକୁ ଧରି ଆକଟ କରି କହିଥିଲେ, ହଲଅ ନାହିଁ ।

କେତେବେଳେ ସେମାନେ ଗଲେ ରମାକୁ ଜଣା ନାହିଁ । ମଶାରି ପଡ଼ିଛି । ପଲଙ୍କ ଉପରେ ସେ ଶୋଇଛି । ପିଲା ଦୁଇଟି ପାଖରେ ନାହାଁନ୍ତି । ଏବେ ମଧ ବ୍ରଣଟି ରୁଗୁରୁଗୁ ହୋଇ ପୋଡ଼ୁଛି । ମୁଣ୍ଡ ଠିକ ହେଉ ନାହିଁ । କେଡ଼େ ଓଜନଆ ଲାଗୁଛି ।

ରମା ଧୀରେ ଧୀରେ ଉଠି ବସିଲା । ମୁଣ୍ଡ ଝାଙ୍କି ଦେଉଛି । ଦେହ ଥରୁଛି । କ୍ଷୀଣ କଣ୍ଠରେ ଡାକିଲା, ରଙ୍ଗିଆ, ରଙ୍ଗିଆ—

ମଝି ଘରୁ ଉତ୍ତର ଆସିଲା, ନିଦ ଭାଙ୍ଗିଗଲାକି ଭଉଣୀ ?

ଜୟଶ୍ରୀ ପାଖକୁ ଆସିଲେ । ମଶାରି ଟେକିଲେ । ହସହସ ମୁହଁ । ଫୁରୁଫୁରୁ କେଶ । ଦେହରେ ହାତ ମାରିଲେ । ଅଳପ ତାତିଛି । ପାଖରେ ବସିଲେ । ମୁଣ୍ଡ ଆଉଁସିଲେ । କଅଁଳେଇ ପଚାରିଲେ, କି ଏ ଭଲ ଲାଗୁଛି ? ଶୋଇ ପଡ଼ିଲତ, ଔଷଧ ମୋଟେ ପାନେ ଖାଇଛ । ନର୍ସବାବୁ କହି ଗଲେ, ନିଦ ଭାଙ୍ଗିଲେ ଔଷଧ ଦେବ, ନିଦ ଭଙ୍ଗାଇବ ନାହିଁ । ଏବେତ ଉଠିଲଣି ।

ମୁଣ୍ଡ ଓଜନଆ ଲାଗୁଛି । ଝାଙ୍କି ଦେଉଛି ।

ବ୍ୟସ୍ତ ହୁଅନା । ସାମାନ୍ୟ ବ୍ରଣଟିଏ । ନଖ ବାଜି ଖଣ୍ଡିଆ ହେଲା । ତେଲ ଲାଗି ବସିଗଲା । ଡାକ୍ତରଙ୍କୁ ଖବର ନ ଦେଇ ନିଜେ ଡାକ୍ତରି କଲ । ଏଣୁ ଟେଣ୍ଡ ଲଗାଇଲା । ସେ ଯାହା ହେଉ, ଡାକ୍ତର ବାବୁ କହିଗଲେ, ଭୟର କାରଣ ନାହିଁ । ସେ ଏବେ ଆସିବେ ଯେ । ସକାଳ ଯାକେ ଗୋମସ୍ତା ତମ ପାଖରେ ଜଗି ବସିଥିଲେ । ମୋତେ ଉଠାଇ ତମ ପାଖକୁ ଆସିବାକୁ କହିଲେ । ତାଙ୍କର ପିଲା ଗୁଡ଼ିକ ଉଠି କାଉ କାଉ ହେବେ ବୋଲି ସେ ଚାଲିଗଲେ । ପୁଣି ଆସିବେ । ମୋ ହାତ ଧରି ଧୀରେ ଧୀରେ ପଦାକୁ ଯିବ ?

ରମା ଉତ୍ତର ଦେଲା ନାହିଁ । ଦୃଷ୍ଟି ପିଲା ଦୁହିଁଙ୍କୁ ଖୋଜୁଛି । ସେମାନଙ୍କର ସାଡ଼ ଶୁଭୁ ନାହିଁ । ଖେଳ ହସ ନାହିଁ ।

କୁନୁ ଓ ଇଭ୍‌ଙ୍କୁ ଖୋଜୁଛ ? ସେମାନଙ୍କ ପାଇଁ ଚିନ୍ତା କର ନାହିଁ । କୁନୁ ତାଙ୍କ କୋଳରେ ଓ ଇଭ୍ ମୋ କୋଳରେ କୁଣ୍ଠ କରି ଶୋଇ ପଡ଼ିଲେ । କେତେ-ବେଳୁ ଉଠିଲେଣି । ତାଙ୍କ ପାଖରେ ଖେଳୁଛନ୍ତି । ସେ ଭାରି କୁଆରକୁଣାମ୍, ନିଜ-ହାତରେ ପିଲା ଦିଓଟିଙ୍କ ଯତ୍ନ ନେଇ, ନିଜେ ପିଲା ହୋଇ ତାଙ୍କ ସଙ୍ଗେ ଖେଳୁ-ଛନ୍ତି । ତମ ପାଖ ଛାଡ଼ି ପିଲାଙ୍କୁ ଦେଖି ଆସିବାକୁ ଗଲେ ତାଡ଼ି ପକାଉଛନ୍ତି । କାହିଁକି ଆସିଲ ? ପିଲାଙ୍କୁ କଅଣ ମୁଁ ଖେଳାଇ ରଖି ପାରିବି ନାହିଁ ? ସୁକାନ୍ତ ବାବୁ ନାହାନ୍ତି । ରମାଦେବୀଙ୍କର ସେବା ଯତ୍ନ ତେମେ କରିବ ।

ରମାର ଦୁଇ ଆଖିରୁ ଲୁହଧାର ଝରି ପଡ଼ିଲା । ସେ ଜୟଶ୍ରୀଙ୍କର ହାତ ଧରି କହିଲା, ତାଙ୍କ ପାଖକୁ ଖବର ପଠାଅ, ସେ ଫିଟିକରି ଯାଇଛନ୍ତି । ଫେରି ଆସିବେ ।

ବଣ ପାହାଡ଼ ଭିତରେ କେଉଁଠି ସେ କାମକାର୍ଯ୍ୟରେ ବ୍ୟସ୍ତ ରହିଥିବେ । ଖବର ପାଇଲେ ଛନିଆଁ ହେବେ । ଅସ୍ତ ବ୍ୟସ୍ତ ହୋଇ ଧାଇଁ ଆସିବେ । ରୋଗ ବଇରାଗ କଥା ପ୍ରିୟଜନ ଶୁଣିଲେ ତିଳକୁ ତାଳ ମଣନ୍ତି । ଘର କରି ଚଳିଲେ ରାଗରୋଷ ସୋଗଭୋଗ ଘଡ଼ିଘଡ଼ିକେ ଉଠେ ଓ ପଡ଼େ । ମୁଁ ଡାକ୍ତରଙ୍କୁ ଡକାଇ ପଠାଉଛି । ନଟବର ବାବୁ ସେ ତ୍ରିଦିବହସ୍ତ ବଇଦ ।

କେତେ ଭୟଙ୍କର ଅସାର ସପନ ଦେଖିଲି ।

ସମସ୍ତେ ଦେଖନ୍ତି । ଯିଏ ଯାହାକୁ ଯେତିକି ବେଶୀ ଭଲ ପାଏ, ପାଖଛଡ଼ା ହେଲେ, ମନରେ ଦୁଃଖ, ଅଭିମାନ ରହି ଯାଇଥିଲେ, ଡର ଭେଦଥିଲେ, ସେହି ପ୍ରିୟଜନଙ୍କ ନାମରେ ବେଳେବେଳେ ମଣିଷ ମନ୍ଦ ସପନ ଦେଖେ । ସପନକୁ ମନେ ପକାଇବା ଉଚିତ ନୁହେ । ସେଗୁଡ଼ା ମନର ଭ୍ରମ, ମିଛ । ଆସ, ମୋ'ର ହାତଧର ।

ଘରେ ରଙ୍ଗିଅ ଓ ପାବାଜା ଅଛନ୍ତି । କାମ କରୁଛନ୍ତି । ହରି ପିଅନ ଦାଣ୍ଡରେ ଜଗି ବସିଛି । ତଥାପି, ଜୟଶ୍ରୀ ରମାର ସବୁ ଯତ୍ନ ନେଉଛନ୍ତି ।

ରମାର ଜର ବଢ଼ିଛି । ଡାକ୍ତର ଆସି ଦେଖି ଗଲେ । କହିଲେ, ସେ ବିଛ-ଣାରେ ପଡ଼ି ରହନ୍ତୁ । ପୁଣି ଦୁଇ ଘଣ୍ଟା ପରେ ଆସି ମୁଁ ଇଞ୍ଜେକ୍‌ସନ ଦେଇ ଯିବି ।

ଭୟର କାରଣ ନାହିଁ । ଗୋମତୀ ଆସିଲେ । ଜୟଶ୍ରୀଙ୍କୁ ପିଲମାନଙ୍କର ଯତ୍ନ ନେବାକୁ କହି ନିଜେ ରମା ପାଖରେ ବସି ରହିଲେ । ଖବର ପାଇ ଇନ୍ଦିରା ଆସିଲେ । ରମାର ଦେହ ଆଉଁସି ସେ ଫେରି ଗଲେ । ପିଲ ଗୁଡ଼ାକ ପାଟିତୁଣ୍ଡ କରିବେ, ରୋଗୀର ନିଦ୍ରାରେ ବାଧା ଆସିବ ।

ରମା ଆଖିବୁଜ ପଡ଼ି ରହିଛି । ଦେହ ଥରୁଛି । ଛାତିର ସ୍ପନ୍ଦନ ବଢ଼ିଛି । ଅଣନିଶ୍ୱାସି ଲଗୁଛି । ମୁଣ୍ଡ ଭୁମୁଛି । ବେଳେବେଳେ ଆଖି ଖୋଲୁଛି । କାହାକୁ ଯେପରି ଖୋଜୁଛି । ପୁଣି ଆଖି ବୁଜୁଛି ।

ଜୟଶ୍ରୀ ଫେରି ଆସି ମୁଣ୍ଡରେ ପାଣି ପଟି ଦେଉଛନ୍ତି । ନଟବର ବାବୁ ଓ ହଳଧର ବାବୁ ଆସିଲେ । ଡାକ୍ତର ନଟବର ରମାକୁ ଭଲ କରି ପରୀକ୍ଷା କଲେ । ଇଞ୍ଜେକସନ ଦେଲେ । ଔଷଧର ପ୍ରେସ୍‌କ୍ରିପ୍‌ସନ ଲେଖି ଗୋମତୀଙ୍କୁ କହିଲେ, ମୁଁ ଡାକ୍ତରଖାନାକୁ ଯାଉଛି, ହରି ପିଅନକୁ ପଠାଇ ଦେବ, ସେ ଔଷଧ ଆଣିବ । ପାଣି ପଟି ଦେଉଥାଅ । ଜର କମିଗଲେ ବନ୍ଦ କରିବ । ଥର୍ମମିଟରରେ ରଖିଥାଅ । ୧୦୩ ଡ଼ିଗ୍ରି ଅଛି । ୧୦୧କୁ କମି ଆସିଲେ ଆଉ ପାଣି ପଟି ଦେବ ନାହିଁ ।

ଗୋମତୀ କହିଲେ ମୁଁ ତମର ଏଇ ଥର୍ମମିଟରରେ ଉତ୍ତାପ ଦେଖି ପାରିବି ନାହିଁ ! ମତେ ବ ଘରକୁ ଯିବାକୁ ପଡ଼ିବ । ପିଲଗୁଡ଼ା ଉତ୍ପାତ କରିବେ । ଜୟଶ୍ରୀ ତ ଅଛନ୍ତି । ସେ ମୋ ଆସିବା ଯାଏ ଜଗି ରହିବେ ।

ରମା ଦେଈଙ୍କ ପାଖେ ପାଖେ ମୁଁ ଥିବି ପେ—

ହଳଧର କହିଲେ, ଚିନ୍ତା ନାହିଁ, ମୁଁ ଉତ୍ତାପ ଦେଖି ଦେବି । ଡାକ୍ତରବାବୁ, ଆପଣ ଓ ଗୋମତୀ ଦେବୀ ମୋ ଗାଡ଼ିରେ ଯାଉନ୍ତୁ । ଡ୍ରାଇଭର ଗାଡ଼ି ପାଖରେ ଅଛି । ମୁଁ ଟିକିଏ ଡେରିକରି କୋର୍ଟକୁ ଯିବି । ପିଲ ଦିଓଟିଙ୍କୁ ରଙ୍ଗିଆ ଆମ ଘରେ ଖେଳାଉଛି ।

ହଳଧର ଡାକ୍ତରଙ୍କ ସଙ୍ଗେ ପଦାକୁ ଆସିଲେ । ପଚାରିଲେ, ମୁହଁଟା ବେଳକୁ ବେଳ ଅଧିକ ଫୁଲି ଉଠୁଛି । ଅବସ୍ଥା କଅଣ ଦେଖିଲେ ? ସୁକାନ୍ତ ବାବୁଙ୍କ ପାଖକୁ ଲୋକ ପଠାଇବା କି ?

ଚେଷ୍ଟା କରିବା ଆମର କର୍ତ୍ତବ୍ୟ । ଭଲମନ୍ଦ କେତେବେଳେ କ'ଣ ହେବ ସେକଥା କେହି କହି ପାରିବେ ନାହିଁ । ସୁକାନ୍ତ ବାବୁଙ୍କୁ ଖବର ପଠାଇବା ଉଚିତ ।

ରାତି ଅଧ । ବାହାରେ ଝଟକଟ ଅନ୍ଧାର । ସୁକାନ୍ତର ଶୋଇଲା ଘରେ ନେଳଆ ବିଜୁଳି ଆଲୁଅ ଜଳୁଛି । ପଲଙ୍କ ଉପରେ ଚିତ୍‌ହୋଇ ରମା ଶୋଇଛି । ମଶାରି ଟଙ୍ଗା ହୋଇଛି ।

ମଝିଘରେ ଟେବୁଲ୍ ପାଖରେ ଗୋଟିଏ ଆରାମ ଚଉକିରେ ବସିଛନ୍ତି ହଳଧର ବାବୁ । ହାତରେ ସଚିତ୍ର ଗୀତ ଗୋବିନ୍ଦ ବହି । ବିଜୁଳି ଆଲୁଅ ଉଜ୍ଜ୍ୱଳ ଜଳୁଛି । ଟେବୁଲ୍ ଉପରେ ଔଷଧ ବୋତଲ ରଖା ହୋଇଛି । ମଝି କବାଟ ଆଉଜା ହୋଇଛି । ଦରମଇଳା ନେଳୀ ପରଦା ଝୁଲ ହୋଇଛି । ଝରକାପାଖର କବାଟ ନିକଟରେ ବସି ହରି ଢୁଳାଉଛି । ଦାଣ୍ଡ ଘରେ ଶୋଇଛି ରଙ୍ଗିଆ ।

ସେମାନେ ସତର୍କ ରହିଛନ୍ତି । ହଳଧର ଆଦେଶ ଦେଲେ ଡାକ୍ତର ନଟବର ବାବୁଙ୍କୁ ଖବର ଦିଆ ଯିବ । ସେ ଓ ଗୋମତୀ ପାଖରେ ଥିଲେ ତ, ରାତି ନଅଟା ବେଳେ ନିଜ ଘରକୁ ଫେରିଗଲେ ।

ଜୟପୁରରେ ଅନେକ ଡାକ୍ତର ଅଛନ୍ତି । ସ୍ତ୍ରୀମାନଙ୍କ ହସ୍‌ପିଟାଲ୍ ଦାୟିତ୍ୱରେ ଜଣେ ଡାକ୍ତରାଣୀ ମଧ୍ୟ ଅଛନ୍ତି କିନ୍ତୁ କୌଣସି ଘରୋଇ କାମ ପାଇଁ ସେ ଛୁଟି ନେଇ ଭୁବନେଶ୍ୱର ଯାଇଛନ୍ତି । ଶୁଣା ଯାଉଛି, ସେ ତାଙ୍କର ବିବାହ ସମ୍ବନ୍ଧ ପକ୍‌କା କରିବାକୁ ଯାଇଛନ୍ତି ।

ଯାଉନ୍ତୁ ସେ, କିନ୍ତୁ ଡାକ୍ତର ନଟବରଙ୍କ ଉପରେ ଦୁଇଟି ହସ୍‌ପିଟାଲର ଦାୟିତ୍ୱ । ସିଦ୍ଧ ହସ୍ତ ବୋଲି ସମସ୍ତଙ୍କର ଡାକରା ପଡ଼େ । ରାତିରେ ନିଶ୍ଚିନ୍ତରେ ଟିକେ ଶୋଇବାକୁ ବେଳ ମିଳେ ନାହିଁ । ଅଗ ସେ ତାଙ୍କର କର୍ତ୍ତବ୍ୟ କଥାଟି ବୁଝନ୍ତି । ଆଉ କେଉଁଠୁ ଡାକରା ଆସିବନି । ସେ ରହି ପାରିଲେ ନାହିଁ ।

କହିଗଲେ, ନିଦ ଔଷଧ ଦେଇଛି, ରମା ଦେବୀ ଶୋଇ ପଡ଼ିବେ । ଜୟଶ୍ରୀ ଦେବୀ ପିଲା ଦିଓଟିକୁ ସମ୍ଭାଳି ନେଉନ୍ତୁ । ଗୋଳମାଳ କଲେ ନିଦ ଭାଙ୍ଗିବ । ଭୟର କାରଣ ନଥିଲେ ମଧ୍ୟ ସୁକାନ୍ତ ବାବୁଙ୍କର ଆସିବା ପ୍ରୟୋଜନ । ଦ୍ୱାର ଓ ରଙ୍ଗିଆ ପାଲ କରି ଦେଇ ରହନ୍ତୁ । ଆବଶ୍ୟକ ହେଲେ ମୋତେ ଖବର ଦେବେ । ନିଦ ନ ଭାଙ୍ଗିଲେ ଆଉ ତାଙ୍କୁ ଔଷଧ ଦେବା ଲୋଡ଼ା ହେବ ନାହିଁ । ନିଦ ଭାଙ୍ଗିଲେ ସେଇ ମିକ୍ସଚରରୁ ଅଉ ପାନେ ଦେବେ । ଇଞ୍ଜେକ୍ସନ୍ ଦିଆ ସରିଛି । ଆଶାକରେଁ ସେ ଭଲ ହୋଇ ଯିବେ ।

ଜୟଶ୍ରୀ ରମା ପାଖରେ ଥିଲେ । ବିଚାରପତି ହଳଧର ନିଜ ଘରେ ଝୁନୁ ଓ ଇରାକୁ ଜଗି ରହିଥିଲେ । ଆରାମ ଚଉକିରେ ବସି ଖବର କାଗଜ ଓଲଟାଉ ଥିଲେ । କେତେବେଳେ ଆଖି ବୁଜି ହୋଇଗଲା । ଦାଣ୍ଡ କବାଟ ମୁକୁଳା ବାରଣ୍ଡାରେ ଗୁର୍ଖା ଜଗି ବସିଛି । ତଥାପି ମନରେ ଧକ । ଦାଣ୍ଡଘର ଆଲମାରୀରେ କେସ୍ ରେକର୍ଡ଼ ଗୁଡ଼ାଏ ରଖା ହୋଇଛି, ପଢ଼ିବାକୁ ବେଳ ମିଳି ନାହିଁ । କେତେ ଗୁଡ଼ାଏ କେସ୍‌ରେ ରାୟ ଲେଖିବାକୁ ଥିଲା । କଚେରିରେ ମନ ସ୍ଥିର କରି ନଥିପତ୍ର ତନଖି କରି ସିଦ୍ଧାନ୍ତରେ ଉପନୀତ ହେବା ସମ୍ଭବ ନୁହେଁ । ସେଇଥି ପାଇଁ କେତୋଟି କେସ୍‌ର ନଥିପତ୍ର ଘରକୁ ଅଣାଇ ଥିଲେ ।

ଇରା ମା,ମା, ହୋଇ କାନ୍ଦି ଉଠିଲା । ହଳଧରଙ୍କର ଛାଇ ନିଦ ଭାଙ୍ଗିଗଲା । ସେ ପଲଙ୍କ ପାଖକୁ ଗଲେ । ସ୍ୱିଚ୍‌ଟିପି ଆଲୁଅ ଜାଳିଲେ । ମଶାରି ଟେକି ମୁହଁ ଗଳାଇ ଦେଖିଲେ । ଝୁନୁ ଘଙ୍ଗୁଡ଼ି ମାରୁଛି । ଇରା ପଲଙ୍କ ଉପରେ ବସି ରାହାଧରି କାନ୍ଦୁଛି । ତା'କୁ ପଲଙ୍କରୁ ଆଣି ଛାତିରେ ଧରିଲେ । ବୁଝାଇବାକୁ ଚେଷ୍ଟା କଲେ, ସେ ତା'ର ମାଆ ପାଖକୁ ଯିବ ବୋଲି ଝୁଙ୍କ୍ ଧରିଛି ।

ହଳଧର ତା'କୁ ନେଇ ପଦାକୁ ଆସିଲେ ।

ଇରାର ପାଟି ଶୁଣି ଜୟଶ୍ରୀ ତରବର ହୋଇ ସୁକାନ୍ତର ଘରୁ ବାହାରି ରାସ୍ତା ପାରି ହୋଇ ହଳଧରଙ୍କ ପାଖକୁ ଆସିଲେ । ଇରାକୁ କୋଳକୁ ନେଇ କହିଲେ, ତୁମେ ଯାଅ ରମା ପାଖକୁ । ସେ ନିଶ୍ଚିନ୍ତରେ ଶୋଇଛି । ନିଦ ଭାଙ୍ଗିଲେ ଔଷଧ

ଦେବ, ନୋହିଲେ ନାହିଁ । ମୁଁ ଇସ୍ୱାକୁ ବୁଝାଇ ଶୋଇ ପକାଇବ । ମୁଁ ଗଲେ ତେମେ ଆସିବ । ଗୋଡ଼େ ଗୋଡ଼େ ଯାଉଛୁ ।

ଆଖି ମାଡ଼ ମାଡ଼ ପଡୁଥିଲେ ମଧ୍ୟ ହଳଧର ସୁକାନ୍ତ ଘରକୁ ଆସିଲେ ।

ରୋଗୀ ପାଖରେ ଜଗି ରହିବା ଅଜ ପ୍ରଥମ ନହେଲେ ମଧ୍ୟ ପରଘରେ ଅନ୍ୟର ଘରଣୀର ରୋଗ ଶଯ୍ୟା ପାଖରେ ଅନିଦ୍ରା ହୋଇ ଜଗି ରହିବା ପ୍ରଥମ । କେତେ ବେଳୁ ଇସ୍ୱା ଭୁନ ହେଲଣି । ତଥାପି ଜୟଶ୍ରୀ ଫେରିଲେ ନାହିଁ । ଝିଅ-ଟିକୁ ଶୁଆଉଣୁ ନଜେ ଶୋଇ ପଡ଼ିଲେକି ? ରାତି ପାହାନ୍ତାରୁ ଉଠି ସେ ଏପାଖ ସେପାଖ ହୋଇ କ୍ଳାନ୍ତ ହୋଇ ପଡ଼ିଥିଲେ ତ ।

ସୁକାନ୍ତର ଘରେ ଉଦ୍ବିଗ୍ନ ହୋଇ ବସି ହଳଧର କେତେ କଥା ଭାବୁ ଥିଲେ ।

ଜୟଶ୍ରୀ ନୂଆ ମଣିଷ ହୋଇଛନ୍ତି । ଆଜ ବେଶଭୂଷା ପ୍ରତି ତାଂକର ନଦା ନଜର ନାହିଁ । ଯେଉଁ ରମାର ଆଲୁଅ ପଣ ପାଇଁ ସେ କେତେ ସମାଲୋଚନା କରନ୍ତି, ନାକଟେକ ପଛରେ ଛୁଆ କରି ତାଂକ ଆଗରେ କହନ୍ତି, ତାଆରି ସେବା-କରିବାକୁ ତାଆରି ପିଲା ଦୁଇଟିଂକର ଯତ୍ନ ନେବାକୁ ସେ ନଜକୁ ଭୁଲିଛନ୍ତି ।

ରମା ସତେ ଭଲ ହେବ ?

ଜୟଶ୍ରୀଙ୍କ ଆଖିରେ ଲୁହ ଛଳଛଳ । ପଚାରିଲେ ଭୁନଭୁନ, କହମ, ଡାକ୍ତର କଅଣ ତୁମକୁ କହିଲେ । ମୋ କାନରେତ ବାଜଗଲା, ମୁହଁରେ ବସନ୍ତ୍ରଣ, ବେଳେ-ବେଳେ ବୁଦ୍ଧି ହଜାଏ ।

ସତ କଥା ଯେ, ଡାକ୍ତରଂକର ବାକି କଥାତକ ତୁମେ ଶୁଣି ପାରି ନାହିଁ । କହିଲେ, ରମା ଦେବୀଂକର କେଶ୍ ମୋଟେ ସିରୀୟସ ନୁହେଁ । ନିଶ୍ଚୟ ଭଲ ହୋଇ ଯିବେ । ତଥାପି,—

ତଥାପି ?

ଜୟଶ୍ରୀଙ୍କର ଆଖିରୁ ଲୁହ ଝରି ଆସିଲା । କହିଲେ, ଭଗବାନ୍ ନ କରନ୍ତୁ ଯଦି ଭଲ ମନ୍ଦ କିଛି ହୋଇ ଯାଏ ସୁକାନ୍ତଙ୍କର କଅଣ ଭାସି ଯିବ କି ? ବଡ଼ ହାକିମ, ବୟସ ଅଛି । ଲୋକେ ବଳେ ତାଙ୍କୁ ଜୋଇଁ କରିବାକୁ ଧାଉଡ଼ ଦେବେ । ଯିବ ଏଇ ପିଲା ଦିଓଟିଙ୍କର । ଯିଏ ନୂଆ ଆସିବ ସେ ଯେତେ ଯାହା କଲେ ବି ହିକିଏ କେଉଁଠି କମ୍ତି କିଛି ରହିଯିବ । ଠାକୁରେ ରମାକୁ ଭଲ କରି ଦିଅନ୍ତୁ ।

ଚନ୍ଦ୍ରାକର ନାହିଁ । ରମା ଦେବୀ ନିଶ୍ଚୟ ଭଲ ହେବେ । ଡାକ୍ତର ନଠବର-ଙ୍କର ଯେଉଁଠି ହାତ ଲଗିଛି, ରୋଗୀ ଝାଡ଼ି ଝୁଡ଼ି ହୋଇବସିଛି । ତଥାପି, ଡାକ୍ତର ତ ଭଗବାନ ନୁହନ୍ତି । ସେ ଚେଷ୍ଟା . କରିବେ, ଔଷଧ ଦେବେ, ତେଣିକି ଭାଗ୍ୟ ।

ରମା କେବଳ ସୁକାନ୍ତ ବାବୁଙ୍କୁ ଖୋଜୁଛି । ଯେତେ ସେ ମୁହଁ ଠାଣି କରି କାହିଁ କି ଲୁଚାଇବାକୁ ଚେଷ୍ଟା କରୁ । ଅତି ସରଳ ମଣିଷ ତ, ତା ମନର କଥା ମୁଣ୍ଡରୁ ଗଳି ପଡ଼େ । ସୁକାନ୍ତ ବାବୁ ବାହା ହେବା ଆଗରୁ ତାଙ୍କୁ ଦେଖି ନଥିଲେ କି ପସନ୍ଦ କରି ନ ଥିଲେ । ଗୋଟାଏ ଝିଅଙ୍କରେ ତ ବାହା ହେଲେ ସେଇ ମୋଫସଲିଆ ଝିଅକୁ, ପରେ ଆଉ ମନକୁ ଆସିଲା ନାହିଁ । ଷ୍ଟେଠ ଷ୍ଟେଠ କଥାରେ ସୁକାନ୍ତ ବାବୁ ତା ଉପରେ ବିରକ୍ତ ହୁଅନ୍ତି । ସେ କାନ୍ଦେ; ଲୁହ ପୋଛେ । ପଛକଥା ପଛକୁ ପକାଇ ପୁଣି ଘର କରିଣାରେ ଲଗେ । ହସେ ହିଁ, ତା ହସଟା ଠେଣାଓଟରି ।

ତୁମେ ଭୁଲ୍ ବୁଝିଥିବ ଜୟଶ୍ରୀ, ତା ହୋଇଥିଲେ ରମା ଦେବୀ ସୁକାନ୍ତ ବାବୁଙ୍କୁ ଏତେ ଖୋଜନ୍ତେ ନାହିଁ । ରାତି ପାହିଲେ ଡ୍ରାଇଭର ହାତରେ ପତ୍ର ଦେଇ ଆମ ଗାଡ଼ି ପଠାଇଦେବା । ସେ ସେଥିରେ ଆସନ୍ତୁ କି ତାଙ୍କ କାରରେ ଆସନ୍ତୁ, ତାଙ୍କ ଘରକଥା ସେ ବୁଝିବେ । ବନ୍ଧୁ ହିସାବରେ ଆମର ଯେତିକି କର୍ତ୍ତବ୍ୟ ସେତିକି କରିବା । ତାଙ୍କର ଦାମ୍ପତ୍ୟ ଜୀବନର ଚଳନ ସମ୍ବନ୍ଧରେ ଆମର ଅନୁ-ସନ୍ଧାନ କରିବା କି ଭଲମନ୍ଦ ମତ ପ୍ରକାଶ କରିବା ଉଚିତ ନୁହେଁ ।

ଜୟଶ୍ରୀଙ୍କୁ କଥାଗୁଡ଼ା ଚମତ୍କାର ପରି ଲଗିଥିବ । ସେ ମୁହଁ ଆମ୍ଳା କଲେ । ପୁଣି, ହସି ଦେଇ କହିଲେ, ସତ କଥା । କାହା ସଙ୍ଗେ କାହାର ତ ସମ୍ପର୍କ ନାହିଁ ।

ଶୃଙ୍କରଅର ଜୀବନ ବିଚିତ୍ର । କେତେ ସ୍ଥାନକୁ ବଦଳି ହୁଏ । ଅଜଣା ଅଶୁଣା ଲୋକ ଏକାଠି ହୁଅନ୍ତି । ଘନିଷ୍ଠତା ବଢ଼େ । ହଠାତ୍ ଦିନେ ବଦଳି ଆଦେଶ ଆସେ । ଘନିଷ୍ଠ ସମ୍ବନ୍ଧ ଛିଣ୍ଡି ଯାଏ । ପର ଜୀବନରେ ଆଉ ଥରେ ଏକାଠି ହେବା କେବଳ ଆକସ୍ମିକ ଘଟଣା ।

ସତ କହିଲ ଜୟଶ୍ରୀ । ସମସ୍ତେ ବିଦେଶୀ, ତେଣୁ, ଯେତେ ଦିନ ଗୋଟିଏ ସ୍ଥାନରେ ପୁଣି ପଡ଼ୋଶୀ ହୋଇ ପାଖା' ପାଖି ରହିବାକୁ ପଡ଼େ ପରସ୍ପର ପ୍ରତି ସହାନୁଭୂତି ଦେଖାଇବାକୁ ହୁଏ । ସୁଖ ଦୁଃଖ ସମସ୍ତଙ୍କର ଅଛି । ଆକସ୍ମିକ ଆପଦ ବିପଦକୁ କେହି ଅଡ଼େଇ ଦେଇ ପାରିବେ ନାହିଁ । ସୁକାନ୍ତବାବୁ ଦୂରରେ ଅଛନ୍ତି । ସେ ଫେରି ଆସିବା ଯାଏ ତାଂକର ସ୍ତ୍ରୀ ଓ ପିଲାଂକ ପ୍ରତି ତମର ସାମାଜିକ କର୍ତ୍ତବ୍ୟ ରହିଛି । ତମର ସେବା ପରାୟଣତା ଦେଖି ମୁଁ ମୁଗ୍ଧ ହୋଇଛି । ତମର ନୂଆ ରୂପ ଦେଖି ମୁଁ ନିଜକୁ ଭାଗ୍ୟବାନ ମଣୁଛି । ମୁଁ ଭାବୁଛି, ମୋ ଜୟଶ୍ରୀ କେବଳ ପତ୍ନୀ ନୁହେଁ, ସେ ସେବିକା, ସେ ମାତା, ସେ କର୍ତ୍ତବ୍ୟ ପରାୟଣା ନାରୀ । ମୋର ଗର୍ବ ହେଉଛି ।

ହଲଧର ନଇଁ ପଡ଼ି ଜୟଶ୍ରୀଙ୍କର ଗଣ୍ଡ ଚୁମ୍ବନ କଲେ । ପତ୍ନୀଂକର କାନ୍ଧ ଉପରେ ମୁଣ୍ଡ ରଖି ଶୋଇ ପଡ଼ିଥିବା ଟିକି ଝିଅଟି ଇରାର ମୁହଁରେ ଚୋକ ଦେଲେ ।

ଜୟଶ୍ରୀ ଲଜିତ ହୋଇ ସୁକାନ୍ତର ଘର ଆଗ ଅଧା ଅବାରିଆ ଖୋଲି ପଡ଼ିଆରେ ଦୁଇପାଦ ପଛକୁ ଯାଇ କହିଲେ, କେଡ଼େ ଅଲଜୁକ ମ । ଶୃଙ୍କର ମାନେ ଚେଇଁ-ଛନ୍ତି । ସ୍ଥାନ ଓ ସମୟ ଭୁଲି ଯାଉଛ ? ତୁମେ ଟିକେ ମଝିଘରେ ବସି ରମାକୁ ଜଗିଥା । ମୁଁ ଇରାକୁ ଶୁଆଇ ଦେଇ ଆସିଲେ ତେମେ ଯାଇ ଶୋଇବ । ଅନ୍ୟଥା ହେଲେ ତମର ମୁଣ୍ଡ ବିନ୍ଧେ ପରା ।

ଜୟଶ୍ରୀ ଏତେ ବେଳ ଯାଏ ଫେରିଲେ ନାହିଁ । ଅପେକ୍ଷା କରି ଅଳସ ସମୟ କଟାଇବାକୁ ହଲଧର ବାବୁ ଗୀତ ଗୋବିନ୍ଦର ପତ୍ର ଓଲଟାଇ ଚାହିଁ ଦେଖୁ-ଛନ୍ତି । ଅତି ମନୋରମ ମଧୁର ପଦ୍ୟାବଳୀରେ ଆଖି ଖୋଲି ଯାଉଛି । ପତ୍ରଗହଳ

ତାଙ୍କ ଅଦୃଶ୍ୟ କୌଶଳର କୋମଳ କାକଳି ଭଳି ଲଳିତ ପଦ୍ୟାବଳୀର ଆବରଣ ତଳୁ କଲ୍ଲୋଳିତ ଅଶ୍ଳୀଳ ରସ ଭକ୍ତି ରଞ୍ଜିତ ହୋଇ ପ୍ରବାହିତ ହେଉଛି । ଚିତ୍ର ଗୁଡ଼ିକ କବିଙ୍କର ଭାବକୁ ଅତି ଦକ୍ଷତାର ସହିତ ଫୁଟାଇ ପାରିଛନ୍ତି । ସୁକାନ୍ତବାବୁ ତାଙ୍କର ପ୍ରେମମୟୀ ପତ୍ନୀଙ୍କୁ ବହିଖଣ୍ଡି ଉପହାର ଦେଇଛନ୍ତି । ସ୍ୱାକ୍ଷର ତଳ ତାରି-କରୁ ଜଣା ଯାଉଛି ଯେ ସାତବର୍ଷ ତଳର ଉପହାର ଏ ପୁସ୍ତକ ଖଣ୍ଡିକ ।

ହଲଧର ମନକୁ ମନ ହସିଲେ । ବହି ଖଣ୍ଡି ଟେବୁଲ ଉପରେ ରଖି ଦେଲେ । ଦୁଇହାତ ଟେକି ଅଳସ ଭାଙ୍ଗିଲେ । ନିଦ ଆକ୍ରାନ୍ତ କଲଣି । ଜୟଶ୍ରୀ ଫେରିଲେ ନାହିଁ । ଶୋଇ ପଡ଼ିଲେକି ? ଭଉଣୀ ହେଲେ ମଧ୍ୟ ଅନ୍ୟ ଘରର ଯୁବତୀ ପତ୍ନୀଙ୍କ ପାଖରେ ଉଜାଗର ହୋଇ ଅପେକ୍ଷା କରିବା ବିବେକୀପଣ ନୁହେଁ ! ଜୟଶ୍ରୀଙ୍କର ଆସିବା ଉଚିତ ।

ଘରୁ ବାହାରି ହଲଧର ହରି ପିଅନକୁ ହଲାଇ ଦେଲେ । ସେ ଚମକି ଉଠିଲା । କହିଲେ, ତୁମେ ଜାଗ୍ରତ ରହ । ମୁଁ ଯାଇଁ ଜୟଶ୍ରୀଙ୍କୁ ଡାକି ଦେଉଛି ।

ହଲଧରଙ୍କର ମୁହଁରେ ହସ ବିକଶିଲା । ନେଳ ବିଜୁଳି ଆଲୁଅରେ ପତଳା ସଫେଦ୍ ସିଲ୍କ ମଶାରି ତଳେ ନିଦ୍ରିତ ମନ ଓଠରୀ ଅନନଟି ସୁନ୍ଦର ଦିଶୁଛି । ସେ ଚିତ୍ ହୋଇ ଶୋଇଛନ୍ତି । କେଶ ବାସ ଫିଟିଛି । ଓଠରେ ଲଖି ରହିଛି ସ୍ମିତ । ନିଶ୍ୱାସର ବେଗ ହୋଇଛି ପ୍ରଖର । ଧୀରେ ଧୀରେ ବୁଲୁଥିବା ବିଜୁଳି ପଙ୍ଖାର ଅଲପ ଶବ-ଦକୁ ନିଶ୍ୱାସ ପ୍ରଶ୍ୱାସର ଶବଦ ପରାଜିତ କରୁଛି । ଛାତି ଉଠୁଛି ପଡ଼ୁଛି । ଦୁଓଟି ପୃଥୁଳ ସ୍ତନର ମଝିରେ ସୁନ୍ଦର ନିଦ୍ରିତ ମୁଖ ।

ମୁହଁ ମାଡ଼ି ଟସ ଶୋଇଛି । ଟିକି ଦେହଟି ପଲଙ୍କରେ ଲମ୍ବିଛି । ପିଠି ଉପରେ ନିଦ୍ରିତା ନାରୀର ହାତ । ଦୁଇ ଜଙ୍ଘ ଉପରେ ଉପରକୁ ମୁହଁକରି ଶୋଇଛି ଟିକି ଝିଅଟି ଇରା । ତାଆର ଛାତି ଉପରେ ତାଙ୍କର ଅର ହାତଟି । ଶୋଇଲା ଛୁଆର ନିଶ୍ୱାସ ସଙ୍ଗେ ବେଳେ ବେଳେ ଭାସି ଆସୁଛି କୋହ ।

ମୁଗ୍ଧ ଆଖିରେ ଚାହିଁ ରହିଲେ ହଲଧର । ଜୟଶ୍ରୀଙ୍କୁ ଡାକି ଉଠାଇବାକୁ କି ଦେହରେ ହାତ ଦେଇ ଉଠାଇବାକୁ ତାଙ୍କର ମନ ହେଲା ନାହିଁ । ସଙ୍ଗିନୀ ରମାର ସେବା କରିବାକୁ ଯାଇ ଜୟଶ୍ରୀ ନିଜକୁ ଭୁଲି ଯାଇଥିଲେ । ଏତେ ବର୍ଷର ଅଭ୍ୟାସ ଦୂରକୁ ଫିଙ୍ଗି ଦେଇଥିଲେ । ଦାମିକା ଶାଢ଼ୀ ପିନ୍ଧି ନାହାନ୍ତି ।' ଧଳା ମିଲ୍ ଶାଢ଼ୀଟି ବର ମଇଳା ହୋଇଛି । ଓହଳ ପଡ଼ିଥିବା ପଣତରେ ଦାଗ ଲଗିଛି । ସିନାମା ଷ୍ଟାରଙ୍କ ଅନୁକରଣରେ ଆଜି ସେ କେଶ ପ୍ରସାଧନ କରି ନାହାନ୍ତି । ଓଠରେ ଗୋଲାପୀ ରଙ୍ଗ କି ମୁହଁରେ ପାଉଡ଼ରର ବୋଳ ନାହାନ୍ତି । ନଖ ଗୁଡ଼ିକ ରଙ୍ଗାଇ ନାହାନ୍ତି । ଆଖି ପତାରେ କଜଳ ଗାର ମଣ୍ଡି ନାହାନ୍ତି । ଖିଅ ପିଥିର ଟିକଣା ନାହିଁ । ଜୟଶ୍ରୀ ଆଜି ଲକ୍ଷ ଲକ୍ଷ କୁଳ କାମିନୀଙ୍କ ମଧ୍ୟରେ ସାଧାରଣ ନାରୀଟିଏ ପରି ଦୈବ ଦେଇ ରୂପ ଓ ପ୍ରକୃତି ଧରି ଆତଯାତ ହୋଇଛନ୍ତି ।

ସବୁ ପରିଶ୍ରମ ତାଙ୍କର ଆଜି ସାର୍ଥକ ହୋଇଛି । ଜନନୀ ନ ହୋଇ ମଧ୍ୟ ସେ ମାତା ହୋଇଛନ୍ତି । ମାଆର ଆନନ୍ଦ ସେ ଅଙ୍ଗେ ଅଙ୍ଗେ ଉପଲବ୍ଧି କରୁଛନ୍ତି । ହିନଟିଏ ତପସ୍ୟାର ଫଳ ସେ ସଙ୍ଗେ ସଙ୍ଗେ ପାଇଛନ୍ତି । ହୁଏତ ସେ କେତେ ମଧୁର ସ୍ୱପ୍ନ ଦେଖୁଥିବେ ; ଜାଗ୍ରତ ଜୀବନରେ ମନର ଯେଉଁ ବ୍ୟାକୁଳ କୋମଳ ଆଶାଟି ଚରିତାର୍ଥ ହୋଇପାରିନାହିଁ ନିଦ୍ରିତ ଜୀବନର ସପନ ଦେଶରେ ସେହି ଆଶା ରୂପ ନେଇଥିବ । ନିର୍ଦ୍ଦୟ ଭାବରେ କିପରି ସେ ଉଠାଇ ଦେବେ ?

ମୁହଁରେ ବିଷାଦର ଭାବ ଘୋଟିଲା । ଛାତି ଥରାଇ ଦୀର୍ଘ ଶ୍ୱାସ ଛୁଟିଲା । ହଠାତ୍-ଶଲ ଆଖି ଆଗରେ ସତେକି, ଭୁନୁ ନୁହେ ନିଜେ 'ସୁକାନ୍ତ ଜୟଶ୍ରୀଙ୍କର ଛାତିରେ ମୁଣ୍ଡରଖି ଶୋଇଛି, ଇରା ନୁହେ ନିଜେ ରମା ଶୋଇଛି କୋଳରେ । କିଏ ସେ ଜୟଶ୍ରୀ, କାହିଁ ସେ ? ଯେଉଁ ନାରୀଟି ସେମାନଙ୍କୁ ନିଜ ପାଖରେ ପୁଅଝିଅ କରି ରଖି ପାରିଛି ସେ ଜୟଶ୍ରୀ ନୁହେ କେବଳ, ସବୁ ମାତାଙ୍କର ପ୍ରତୀକ ।

ହଲଧର ଧୀରେ ଧୀରେ ମଶାରି ଭିତରୁ ମୁହଁ କାଢ଼ି ଆଣିଲେ । ବିଜୁଳି ପଙ୍ଖାର ବେଗ ସାମାନ୍ୟ ବଢ଼ାଇ ଦେଲେ । ସ୍ୱିଚ ଟିପି ସେ ଘରର ଆଲୁଅ ଲିଭାଇଲେ । ମଝି ଦ୍ୱାରର ପରଦା ଟାଣି କବାଟ ହିଟାଇ ଆଉଜାଇଲେ । ଧୀରେ ଧୀରେ ଅଗ୍ନି

ମନ୍ଦିରରେ କୁଯାନ୍ ଲଗା ଅବିନ୍ୟ ଚଉକରେ ବସିଲେ । ଦେହରେ ପାତଳ ଧବଳ ପଟ୍ଟାତ ।

ଶୁଭ ପକେଟ୍ ଭିତରୁ କିଏ ସତେ ଚିତ୍କାର କରି ଉଠୁଛି । ହାଲଚାଲ୍ ହେଉଛି । ପଦାକୁ ବାହାରି ଅସିବାକୁ ଆଘାତ କରୁଛି । ସହସ୍ର ଭ୍ରୂଣ ଫେଡ଼ ପକାଉଛି । କାନରେ ବାଜି ଯାଉଛି ତାଆର କୁପିତ ଧିକ୍କାର । ଅତୀତ ଓ ବର୍ତ୍ତମାନର ମିଶା ମିଶି ସ୍ୱର ।

ଭୁବନେଶ୍ୱର । ପାର୍ବତୀ ମନ୍ଦିର । ନାଗିଗହ୍ୱରେ ଅବଗୁଣ୍ଠନବତୀ କେତେ କୁଳ କାମିନୀ । ସେଠିବ ବାଜ୍ଜଳ ଆଲୁଅ ପ୍ଲାବିତ । ଫୁଟିକ ଉଠୁଛି ଲଜ୍ଜାଶୀଳ ଶୋଭନ ମୂର୍ତ୍ତିଟି । କଜଳ ଭରା ଆଖି କୋଣରେ ସଲଜ ସରଳ ବଙ୍କୁଲ ଚାହାଣୀ ।

ସେଇ ସେ ରମା, ନଗାଧିରାଜ ତନୟା ଭୁବନ ମୋହନୀ ଉମାଙ୍କ ସତେ ! ଶୁଭରେ ଚମକ ଲାଗିଲା । ଏଇ ହେବେ ହଳଧରଙ୍କର ମନୋହାରିଣୀ ଘରଣୀ । ପରିଷଦର ସେ ପାଶ୍ କରିଛନ୍ତି ।

ବିବାହର କଥା ତୁଣ୍ଡରେ ନାହିଁ । ଦୁନିଆରେ ସହସ୍ର ସୁନ୍ଦରୀ କନ୍ୟା ଅଛନ୍ତି । ରୂପ ଓ ଗୁଣ ଅନେକଙ୍କର ଅଛି । ଯୌତୁକ ଧନ ଦେଇ ନ ପାରିଲେ ପଛେଇ ଯାଅ । ଗୁରୁ ଅଙ୍କୁ ଗୃହ । ଠାକୁ ଥଳ ଧରି କେତେ ପିତା ହସହସ ହୋଇ ଆଗେଇ ଆସିଲେଣି ।

ହଳଧର ଅବାଧ ପୁତ୍ର ନୁହେ ।

ତୁମେ ମତେ ଉପେକ୍ଷା କରିଥିଲ । ମୋର ରୂପ ଓ ଯୌବନର ବଢ଼ମାକୁ ଦୃଷ୍ଟିରେ ଅଣ୍ଡେଇ ଦେଇଥିଲ । ମୋର ତାରୁଣ୍ୟର ପ୍ରଥମ କୌତୁହଳ, ଉନ୍ମେଷନା, ଅଗ୍ରହ ଓ ଆଶା ଭରା ଅପାଙ୍ଗକୁ ତମର ନାହିଁ ନାହିଁ ମୁଦଗରରେ ଚୂର୍ଣ୍ଣ କରିଥିଲ । ମୋର ଉଜ୍ଜ୍ୱଳ, ଉଚ୍ଛ୍ୱସିତ, ଉଦ୍ଭାସିତ ନାରୀତ୍ୱ ଓ ପ୍ରଚ୍ଛନ୍ନ ମାତୃତ୍ୱକୁ

ଅପମାନିତ କରିଥିଲ । ତୁମେ, ତୁମେ ହଳଧର ରୂପସୀର ପରୀକ୍ଷାରେ ମୋତେ ଅକୃତ କାର୍ଯ୍ୟ କରାଇ ଲାଞ୍ଛନାରେ ମୋର ମୁଣ୍ଡ ନୋଇଁଥିଲ । ମୋର ନିର୍ଦ୍ଦୋଷ ନୟନକୁ ନିର୍ବୋଳରେ ନୀରବ ନୀରଧିରେ ବୁଡ଼ାଇଥିଲ । କାହିଁକି ମୋତେ ତୁମେ ରାତିରେ ଛାତିରେ ଛପାଇ ରଖିଛ ନିର୍ଲଜ ? ମୋତେ ମୋର ନିଜ ସ୍ଥାନରେ ରଖିଦିଅ ।

ହଳଧରଙ୍କର ଛାତି ଉଠିକି ପଡ଼ିଲା । ସେ ସଳଖି ବସିଲେ । ଥରିଲା ହାତ ଛାତି ପକେଟ୍ ଉପରେ ରଖିଲେ । ନିଜ ଭାବନା ଭିତରେ ରମା ଯେଉଁ ଅଭିଯୋଗ କରନ୍ତି ଆସାମୀ ହଳଧର ବନ୍ଦୀଘରେ, ବିଚାରପତି ହଳଧରଙ୍କ ଆଗରେ, ଆସାମୀ ତାର ଉତ୍ତର ଦେବାକୁ ଅକ୍ଷମ । ସେ ଜାଣି ନ ଥିଲା ଯେ ଜୀବନ ଯାତ୍ରା ପଥରେ ସେହି ଉପେକ୍ଷିତ ନାରୀଟି ସଙ୍ଗରେ ଅନ୍ଧାରରେ ଦେଖାଦେବ । ଦିନେ ପୁଣି ସେହି ନାରୀର ରୋଗଶଯ୍ୟା ପାଖରେ ତାଙ୍କୁ ଠିଆ ହେବାକୁ ପଡ଼ିବ ।

ହଳଧର ମନ୍ଦିର କବାଟ ଆଡ଼କୁ କଣେଇ ଚାହିଁଲେ । ପୂର୍ବପର ଆରତି ହୋଇଛି । ଜୟଶ୍ରୀ ନିଶ୍ଚିନ୍ତରେ ଶୋଇ ସପନରେ ମାତୃତ୍ୱର ଆନନ୍ଦ ଅନୁଭବ କରୁଥିବେ । ଆଉ, ସେ ? ଛାତିରେ ଛନକା ପଶିଲା । ଛାତି ପକେଟରେ ହାତ ଭରି ଶ୍ଲେଟ ଫଟୋ ଖଣ୍ଡିକ କାଢ଼ିଲେ । ଠିଆ ହୋଇ ଉଜ୍ଜ୍ୱଳ ଆଲୁଅରେ ଅନାଇ ରହିଲେ । ସୁକାନ୍ତ ବାବୁଙ୍କର ଗୀତଗୋବିନ୍ଦ ବହି ଭିତରେ ଫଟୋଟି ଲୁଚି ହୋଇଥିଲା । ତାକୁ ସେ ଚୋରିକରି ପକେଟରେ ରଖିଛନ୍ତି । ବଧୂ ବେଶରେ ରମା । କି ଶୋଭା ରୂପ । ଲାଜ ଲାଜ ଚାହାଣୀ । ଦରହସିଲା ମୁହଁର ଠାଣି । ଏଇ ରମାକୁ ଦିନେ ସେ ନିଜର କରିବାକୁ ମନ କରିଥିଲେ । ପିତାଙ୍କର ଧନର ଲୋଭ ମନର ଆଶାର ବେକ ମୋଡ଼ି ଥିଲା । ପିତୃଭକ୍ତ ସୁଧୀର ସନ୍ତାନ !

ତୃଷିତ ଓଠ ହଳ ଫଟୋଟି ଉପରକୁ ନଇଁ ଆସୁଥିଲା । ଅଟକିଲା ଅଧା-ବାଟରେ । ଫଟୋଟି କଥା କହୁଛି । ଛି, ଛି, ଏ କଅଣ କରୁଛ ? ପାର୍ବତୀଙ୍କ ମନ୍ଦିର ଭିତରେ ଯେଉଁ ରମାକୁ ତୁମେ ଦେଖିଥିଲ ମୁଁ ସେ ନୁହେଁ । ମୁଁ ସୁକାନ୍ତଙ୍କର ପତ୍ନୀ । ମୁଁ ଅନ୍ୟ ଘରର କୁଳବଧୂ । ତୁମେ ନରାଧମ । ମୁଁ ସୁକାନ୍ତଙ୍କର ଦୁଇଟି ସନ୍ତାନଙ୍କର ଜନନୀ । ତୁମର ମଧ୍ୟ । ମା ଜଗତ ଜନନୀଙ୍କ ଆଗରେ ତୁମେ ମୋ ଓଠରୁ ଦର୍ଶନ କରିଥିଲ । ତମର କଳୁଷିତ ଦୃଷ୍ଟିକୁ ପଦତଳେ ମୋର ନୁଆଁଇ ଦେଇଥିଲି ।

ହାତ ଥରି ଉଠିଲା । ବଡ଼ଲୋକ ହଲଧର ଚାରିଆଡ଼େ ଆଖି ବୁଲାଇଲେ । ମନର ଦୃଷ୍ଟି ପଡ଼ିଲା ବୈରାଗିଣୀ ରମାର ମୁହଁ ଉପରେ । କ୍ଷୀଣ ସ୍ୱରରେ ସେ କହି ଉଠୁଛି, ହଳଦିଆ ଫୁଲର ପ୍ରଭେଦ ଦେଖି ପାରୁଛ କି ବାବୁ ? ଚିହ୍ନି ପାରୁଛ ? ଏହି ଫୁଲର ମୁହଁ ଭିତରେ ଜନନୀ ରମାର ଆନନ ଛପି ରହିଛି । କୁଳବଧୂ ରମାର ମୁଖ ଗୋପନ ହୋଇଛି, ଝୁଲିଝୁଲିଆ କରି ଫୁଲଟିଆ ଇଏ ମୁହଁ ପରି ସାନ ମୁହଁଟିଏ, ଯେଉଁଦିନ ତାର ନାମ କରଣ ହେଲା, ଏକୋଇଶା ସେଇ ଦିନର ସରଗ ଫୁଲ ମୁହଁଟି ହଜି ଯାଇଛି । ଆଉ ଦିନଟିଏ ଅପେକ୍ଷା କର । ପୁଣି ଦେଖିବ —

ନା, ଆଉ କହନା । ତୁମେ ଜନନୀ ରମା, ତୁମେ ମୋର ନମସ୍ୟା । ତୁମେ ମୋର ବନ୍ଧୁପତ୍ନୀ । ଏଇ ଫଟୋଟିର ସ୍ଥାନ କେଉଁଠି ତୁମେ ଦେଖିବାକୁ ଚାହଁ ?

ହଲଧର ଶ୍ରେଷ୍ଠ ଫଟୋଟିକୁ ମୁଣ୍ଡରେ ମାରିଲେ । ପକେଟରେ ରଖିଲେ । ପୁଣି ଏହା ଯଥା ସ୍ଥାନରେ ବନ୍ଧ ଭିତରେ ରହିବ । ତୁମେ ଭଲ ହୋଇ ନିଜକୁ ଖୋଜି ବାହାର କରିବ । ସେ କାଳର ତୁମକୁ ନେଇ ମହତ୍ତ୍ୱ ଓ ଉଦାର ସ୍ୱାମୀ ସୁକାନ୍ତଙ୍କୁ ଉପହାର ଦେବ ।

ପକେଟ୍‌ରେ କଣ ସାଇତି ରଖିଲ, ମୋତେ ଦେଖାଇବ ନାହିଁ ? କହିବ ନାହିଁ କାହିଁକି, ଏପରି ଚଞ୍ଚଳ ହୋଇଛି ତମର ମନ ?

ଆର ଘର ପଲଙ୍କ ଉପରୁ ଜୀବନ ସଙ୍ଗିନୀ, ପତି ସୋହାଗିନୀ ଜୟଶ୍ରୀ ପ୍ରଶ୍ନ ପଚାରୁଛନ୍ତି ! ସୁକାନ୍ତ ବାବୁଙ୍କ ଘର ଆଡ଼ୁ ହରି ପିଅନର କଥା ଶୁଭୁଛି ।

ହଲଧର ମଝି କବାଟ ଧୀରେ ଧୀରେ ଖୋଲିଲେ । ପଲଙ୍କ ପାଖକୁ ଗଲେ । ଜୟଶ୍ରୀ ପୂର୍ବପରି ଶୋଇଛନ୍ତି । ଡଜନେ ନିଶ୍ୱାସର ଶବଦ ଶୁଭୁଛି । ନା, ଉଠା ଇବେ ନାହିଁ । ଜୟଶ୍ରୀଙ୍କ ସଙ୍ଗେ ପିଲାଦିଓଟି ମଧ୍ୟ ଉଠି ବସିବେ । ମାଆକୁ ଖୋଜି ବୋବାଳି ଛାଡ଼ିବେ । ପୁଣି ମଝି କବାଟ ଆଉଜାଇ ବାରଣ୍ଡାକୁ ଆସିଲେ । ଶବଦ ଶୁଣି ପିଅନଟି ଉଠି ଠିଆ ହେଲା । କହିଲେ, ଶତ୍ରୁଘ୍ନ, ତୁମେ ତେଇଁ ଥାଅ । ମା ଶୋଇ ପଡ଼ିଛନ୍ତି । ସେ ଘରୁ ହରିର ପାଟି ଶୁଭୁଛି । ମୁଁ ବୁଝି ଆସେଁ ।

ଉତ୍ତରକୁ ଅପେକ୍ଷା ନ କରି ସୁକାନ୍ତ ବାବୁଙ୍କ ଘରଆଡ଼େ ଚାଲିଲେ । ଭାବିଲେ, ଡାକ୍ତର ନିଜେ ଆଉ ଥରେ ରାତି ଅଧରେ ଆସିବେ ବୋଲି କହି ଯାଇଥିଲେ । ଆସିଲେ ନାହିଁତ ! ଶୋଇ ପଡ଼ିଲେ କି ?

ରମା କ୍ଷୀଣ କଣ୍ଠରେ ପଚାରିଲା, ହରି, ଲୁନୁ ଇରା କାହାନ୍ତି ?

ହରି ଉତ୍ତର ଦେଲା, ଆରଘର ମା ସେ ଦୁହିଁଙ୍କୁ ତାଙ୍କ ଘରକୁ ନେଇ ଯାଇଛନ୍ତି । ସେ ଦୁହେଁ ତାଙ୍କ ପାଖରେ ଶୋଇ ପଡ଼ିଥିବେ । ସେଇ ମା ତ ଆପଣଙ୍କ ପାଖରେ ଜଗି ବସିଥିଲେ । ଇରାଦେଇ ଉଠିଲେ । ରାହାଧରି କାନ୍ଦିଲେ । କାଳେ ଆପଣଙ୍କ ନିଦ ଭାଙ୍ଗିବ ବୋଲି ସେ ଇରାକୁ କାନ୍ଧରେ ପକାଇ ନେଇଗଲେ । ମୁନ୍‌ସଫ୍ ବାବୁଙ୍କୁ ମଝିଘରେ ବସାଇ କହିଗଲେ, ଆପଣଙ୍କ ନିଦ ଭାଙ୍ଗିଲେ ସେ ଯାଇ ପିଲଙ୍କ ପାଖରେ ରହିବେ । ମା ଏଠାକୁ ଆସିବେ ।

ରମା ତୁନି ରହିଲା । ନିଘୋଡ଼ ନିଦରେ ସେ ଶୋଇ ପଡ଼ିଥିଲା । କେତେ କଅଣ ସପନ ଦେଖୁଥିଲା ଏବେ ତାଆର ମନେ ନାହିଁ । କେମିତି ଗୋଟାଏ ନୂଆ ରାଇଜରେ ସେ ବୁଲୁଥିଲା । ହାଲୋଳମୟ ସେ ଦେଶ । ରଙ୍ଗରଙ୍ଗର ଅରଣ୍ୟ, ପାହାଡ଼, ଝରଣା, କେତେ ବଡ଼ ବଡ଼ ସୁନ୍ଦର କୋଠାବାଡ଼ି, ମନ୍ଦିର, ଜାତିଜାତିକା ଅଜଣା ଅଚିହ୍ନା ଜୀବଜନ୍ତୁ । ହେଲେ, ମଣିଷର ଦେଖାନାହିଁ । କେଉଁ ପାହାଡ଼ତଳ, ଝରଣାକୂଳ, ପଥର ଉହାଡ଼ରୁ, କେତେ ଦୂରରୁ କେଜାଣି, ସୁକାନ୍ତ ଡାକ ଛାଡ଼ୁଛି ନାମ ଧରି, କାଖରେ ଇରା, କାନ୍ଧରେ ଲୁନୁ, ରମା, ରମା—

ନିଦ ଭାଙ୍ଗିଲା । ରମା ଉଠି ବସିଲା । ସୁକାନ୍ତର ଡ଼ାକ ସତେ କି ଏବେ ମଧ୍ୟ କାନରେ ବାଜି ଯାଉଛି । ରାତି କେତେ ହେଲଣି ସେ ଜାଣେ ନାହିଁ । ଦେହ ହାଲୁକା ଲାଗୁଛି । ବେଦନା ଜଣା ପଡ଼ୁ ନାହିଁ । ଚାରିଆଡ଼କୁ ଚାହିଁଲେ ଅଳ୍ପ

ଅଲେଖଚ କୋଠରୀଟି ଗମ୍ଗମ୍ ଲାଗୁଛି । ହତଭାଗିଆ ଭାବ ମନରେ ପଶୁଛି, ପଶୁ-ରଲ, ତମ ବାବୁ କେବେ ଫେରିବେ କି ?

ତାଆର କେଉ ଠିକଣା ନା ? ଆପଣ ତ ଜାଣନ୍ତି, ସେ ଦିନକ ପାଇଁ ଯାଇ ଛଅଦିନ ରହି ଯାଆନ୍ତି । ପୁଣି ପାଞ୍ଚଦିନ ପାଇଁ ଯାଇ ଦୁଇଦିନରେ ଫେରନ୍ତି । ସେମିତିଆ କାମ ତାଙ୍କର । ଆପଣ ବ୍ୟସ୍ତ ହେଉନ୍ତୁ ନାହିଁ । ମୁନ୍‌ସଫ୍ ବାବୁ କହୁ-ଥିଲେ, କାଲି ସକାଳେ ସେ ତାଙ୍କ ଗାଡ଼ି ବାବୁଙ୍କ ପାଖକୁ ପଠାଇବେ । ଆମ ଜିପ୍ ଉପରେ ନିର୍ଭର ନାହିଁକି ଡ୍ରାଇଭର୍ ଉପରେ ପଡ଼ତେ ନାହିଁ ।

ହଲଧର ବାବୁ ନିଃଶବ୍ଦରେ ମଶାରିଘରେ ପଶିଲେ । ଏଣିକି ତେଣିକି ଶୁହିଁ ହାଉଁ ହାଉଁ ପଡ଼ିଲା ଉଠିଲି ଛାତ ଉପର ଫଟୋଟିରୁ ମାଳ ଖୋଲି ଛବିଟି କାଢ଼ି ଗାଢ଼ ଗୋଡିନ ବହି ଭିତରେ ରଖିଲେ । ବହିଟିକୁ ଟେବୁଲ୍‌ର ଗୋଟିଏ ପାଖରେ ରଖିଲେ । ଛାତି ଥରାଇ ଦୀର୍ଘଶ୍ୱାସ ଛାଡ଼ିଲା । ଆରାମ ଚୌକି ଉପରେ ବସି ପଡ଼ିଲେ ।

ଆର ଘରୁ ରମାର ସ୍ୱର ଶୁଭିଲା, କେଡ଼େ ଭଲ ମଣିଷ ସେ ଜୟଶ୍ରୀ ଦେବୀ । ମାଆ ଭଉଣୀ ହେଲେ ବି ଏତେ କଷ୍ଟ ସହିବେ ନାହିଁ ହରି, ଏତେ ସେବା କରିବେ ନାହିଁ । ପିଲା ଦୁହିଁଙ୍କୁ ମାଆପରି ସ୍ନେହ କରନ୍ତି । କେଉଁ ଜନ୍ମରେ ମୁଁ ତାଙ୍କର ସାନ ଭଉଣୀ ଥିଲି ।

ହରି କହିଲା, ମୁନ୍‌ସଫ୍ ବାବୁ ଯେ ତାଙ୍କଠୁ ବଳି ମା, ଅଜାତ୍ରା ହୋଇ ଆରଘରେ ବସିଥିଲେ । ମୋତେ ଜଗାଇ ଦେଇ ପିଲାଙ୍କୁ ଦେଖିବାକୁ ଗଲେ । ଏଇ ସହରରେ ତାଙ୍କର ଧନ୍ୟଧନ୍ୟ ପ୍ରଶଂସା ଲୋକେ କରନ୍ତି । ଧର୍ମର ସେ ଅବତାର । ସେ ଯେଉଁ ରାୟ ଦିଅନ୍ତି ଯେତେ ଉପରକୁ କେସ୍ ନେଲେ ବି ସେ ରାୟକୁ କେହି ବଦଳାଇ ପାରନ୍ତି ନାହିଁ । ଧୀର କଥା, ମଧୁର ବ୍ୟବହାର—

ରମା ଉତ୍ତର ଦେଲା ନାହିଁ । ଛାତି ଥରାଇ ଦୀର୍ଘଶ୍ୱାସ ଛାଡ଼ିଲା । ମନ କହିଲା, ଦୁନିଆଁରେ ସବୁଲୋକ ଭଲ, ପୁଣି ସମସ୍ତଙ୍କ ଭିତରେ ମନ୍ଦ ପଣ ବି କେଉଁ କଣରେ ଲୁଚିଛପି ରହିଥାଏ । ବେଳ ପାଇଲେ କେଉଁ ଦୁର୍ବଳ କ୍ଷଣରେ ସେହି ମନ୍ଦପଣଟି ମୁଣ୍ଡଟେକି ଉଠେ । ଜୟଶ୍ରୀ ଦେବୀଙ୍କ କୋଳରେ ଷଠୀ ପିଲା ବଳଟେ ଦେଲେ

ହଲଧର ବାବୁଙ୍କ ଟେବୁଲ କଣୁଆଁ ଗୃହିଣୀ ଓଢ଼ଣା ଦ ହସ୍ତି ଟିକ ପୁଅର ମୁହଁରେ ଲଖି ରହନ୍ତି । ଜୟଶ୍ରୀଙ୍କର ହାତମଠା ବାହାର ରୂପକୁ ଅଡେ଼ଇ ତାଙ୍କର ବାପପଣ ଜୟଶ୍ରୀଙ୍କର ମନଗହନ ତଳେ ପ୍ରବାହିତ ମାତୃତ୍ୱର କଳକଳ ଛଳଛଳ ନିର୍ମଳ ଶୀତଳ ଝରଣାରେ ଅବଗାହନ୍ତି ।

ଠାକୁରେ, ଜୟଶ୍ରୀଙ୍କ କୋଳରେ ପିଲାଟିଏ ଦଅ ।

ରମାର ନୀରବତା ହଲଧରଙ୍କର ଶାନ୍ତି ଥରାଇଲା । ରୋଗ ଯନ୍ତ୍ରଣାରେ ଛଟପଟ ରମା ନିର୍ବୋଧ ନୁହେ । ତାଙ୍କର ଭଲପଣିଆଁ ଉପରେ ରମାର ଆସ୍ଥା ନାହିଁ । ରମାର ନୀରବତା ସତେଜ ତାଙ୍କୁ ଜିଜ୍ଞାସି କରୁଛି । ସଚେତ ସେ ପଚାରୁଛି, ବନ୍ଧୁ ପତ୍ନୀର ସେବା କରିବାକୁ ତୁମେ ହଲଧର ଉନ୍ନିଦ୍ର ରହୁଛ କି, ପତ୍ନୀର ବାନ୍ଧବୀର ଯତ୍ନ ନେବାକୁ ମନ କରିଛ କି, କେବଳ ପତ୍ନୀଙ୍କର ଆଦେଶ ପାଳୁଛ ? କହ ତ ହଲ-ଧର, ହେଉ ହେଉ ନ ହେଲା ଘରଣୀର ସାନ୍ନିଧ୍ୟ ତୁମକୁ ଆନନ୍ଦ ଦେଉଛି କି, ଉପେକ୍ଷିତା ଯେ ଉପେକ୍ଷାର ଉପଯୁକ୍ତ ଏ ଧାରଣାକୁ ମନରେ ବଦ୍ଧମୂଳ କରିବାର ପ୍ରୟାସ ତୁମକୁ ପ୍ରେରକ କରୁଛି ? ମରଣ ମୁହଁକୁ ଆଗେଇ ଚାଲିଥିବା ଅସମାନତା, ସେକାଳର ଉପେକ୍ଷିତା ରୂପସୀ ରମାର ମନରେ ଲୁଚି ରହିଥିବା ଅଭିମାନ ପାଖରେ ନୀରବ କ୍ଷମା ଭିକ୍ଷା ନୁହେ ତ ?

ଗୀତ-ଗୋବିନ୍ଦ ବହିଟି ଟେବୁଲ ଉପରେ ରଖାହୋଇଛି । ତା ଆର ଭିତରେ ସେକାଳର ରମା ଛପି ରହିଛି । ହସି ଉଠୁଛି । କହୁଛି, ମୋତେ ତୁମେ ଅପବାଦ କରନାହିଁ । ତୁମର ଭଲପଣିଆଁକୁ ତୁମେ କଳଙ୍କିତ କରୁଛ । ଅତୀତକୁ ଭୁଲିଯାଅ । ଆଜି ଯିଏ ଯାହା ତାଙ୍କୁ ସେଇ ରୂପରେ ଗ୍ରହଣ କର । ସେଇ ଧାରଣାରେ ସାମାଜିକ କର୍ତ୍ତବ୍ୟ ପାଳନ କର । ମୁଁ ତୁମର ବନ୍ଧୁ ପତ୍ନୀ, ମୁଁ ତୁମର ପତ୍ନୀଙ୍କର ବାନ୍ଧବୀ । ସେହି ଆସନରେ ଥାଇ ତୁମର ସ୍ନେହ, ସହାନୁଭୂତି ଓ କର୍ତ୍ତବ୍ୟ ମୁଁ ଦାବୀ କରେ ।

ହଲଧର ପ୍ରକୃତିସ୍ଥ ହେଲେ । ଡାକିଲେ, ହରି—

ହରି ଉତ୍ତର ଦେଲା, ଆଜ୍ଞା —।

ରମାକୁ କହିଲା, ମୁନ୍‌ସଫ୍ ବାବୁ ଆସିଲେଣି ମା, ଆପଣ ଉଠନ୍ତୁ ନାହିଁ । ଡାକ୍ତରବାବୁ ମନା କରିଛନ୍ତି ।

ହରି ମହି ଘରକୁ ଆସିଲା । କହିଲା, ମାଆଂକର ନିଦ ଭାଙ୍ଗିଲାଣି । କେଡ଼େ ଫୁର୍ତ୍ତି ସେ ଅଛନ୍ତି । ମୁହଁର ଫୁଲା କମିଲା ପରି ଦିଶୁଛି । ଠାକୁରଂକ ଦୟାରୁ ଶୀଘ୍ର ସେ ଭଲ ହୋଇଯିବେ । ଲୋକ ପଠାଇ ବାବୁଙ୍କୁ ଖବର କରିବା ଉଚିତ ନୁହେଁ ।

ହଲଧର ଖୁସି ହୋଇ କହିଲେ, ସାମାନ୍ୟ ବ୍ରଣଟିଏ । ଅସାବଧାନତାରୁ ବିଷିରିଗଲା । ଏଥିକୁ ଚିନ୍ତା କାହିଁକି ? ଅତି ଶୀଘ୍ର ଭଲ ହୋଇ ଯିବ । ତଥାପି, କାଲି ସକାଳୁ ସୁକାନ୍ତ ବାବୁଙ୍କ ପାଖକୁ ଖବର ପଠାଯିବ ।

ରାତି ସାରା ଆପଣ ଅନିଦ୍ରା ରହିଲେ ସାର୍ ?

ଜୟଶ୍ରୀ ଶୋଇ ପଡ଼ିଛନ୍ତି । ଖଟ ଉପରେ ମୁଣ୍ଡ ରଖି ଝୁନୁ ଶୋଇଛି । କୋଳରେ ଶୋଇଛି ଇରା । ତାକୁ ଉଠାଇଲେ ପିଲା ହଦେହେଁ ଉଠିବେ । ରାତି ଅଧରେ ଅଝଟ ହୋଇ କାନ୍ଦିବେ । ସେଇ ଡରରେ ଉଠାଇଲା ନାହିଁ । ରମା ଦେବୀଙ୍କର ଦେହର ଉତ୍ତାପ ପରୀକ୍ଷା କରି ଔଷଧ ଦେବାର କଥା । ଡାକ୍ତର ବାବୁ ଆସିବେ ବୋଲି କହିଥିଲେ । ସେ ତ ଶୋଇ ପଡ଼ିଲେ ପରା । ଆବଶ୍ୟକ ହେଲେ ତାଙ୍କୁ ଡକାଇବା ।

ହଲଧର ଥର୍ମୋମିଟର ହାତରେ ଧରି ମହି ଦରଜାର ପରଦା ଆଡ଼େଇ ରୋଗୀର ଘର ଭିତରକୁ ଗଲେ । ଦେଖିଲେ, ରମା ପଲଙ୍କ ଉପରେ ବସିଛି ।

ସେ ମୁଣ୍ଡର ଓଢ଼ଣା ଅଳପ ଟାଣିଲା । ପଲଙ୍କ ଉପରୁ ତଳକୁ ଓହ୍ଲାଇବାକୁ ଚେଷ୍ଟା କଲା ।

ହଲଧର ବ୍ୟସ୍ତ ହୋଇ କହିଲେ, ଆପଣ ତଳକୁ ଓହ୍ଲାନ୍ତୁ ନାହିଁ । ନିଅନ୍ତୁ, ଏ ଥର୍ମୋମିଟରଟି ମୁହଁରେ ଦିଅନ୍ତୁ ।

ରମା ଅବାଧ ହେଲନାହିଁ । ଯେଉଁ ହାତଟି ସଙ୍ଗେ ତାଆର ହାତ ଏକାଠି ବନ୍ଧା ହୋଇ ହଓଚି ଅଚହ୍ନା ଜୀବନକୁ ସ୍ୱାର୍ଥର ବନ୍ଧନରେ ବନ୍ଧ ଏକାକାର କରି ଥାଆନ୍ତା, ସେଇ ହାତରୁ ଅତି ସାବଧାନତାର ସହିତ ଥର୍ମାମିଟରଟି ନେଇ ସେ କାଖତଳେ ରଖିଲା । ହାତର ପରଶ ପାଇ ନାହିଁ କିନ୍ତୁ ସହାନୁଭୂତିରେ ଜରଜର ଏକ ପରପୁରୁଷର ମନର ପରଶ ପାଇଲା । ଜରୁଆ ଦେହଟି ଥରି ଉଠିଲା । ଆଖିରେ ଭରିଲା ତତଲ ଲୁହ, ଫୁଲିଲା ଗାଲ ଉପରେ ଦୁଇଧାର ହୋଇ ଗଡ଼ି ଆସିଲା ।

ମନ ଖୋଜିଲା ସେଇ ଅତି ଆପଣାର ମୁହଁଟିକୁ ଯିଏ ତାଆର ହସିଲା ମୁହଁକୁ କାନ୍ଦୁରା କରେ । ଆଖିରୁ କେରାକେରା ଲୁହ ଝରାଇ ଦିଏ । ପୁଣି, ହାତ ପାପୁଲିରେ ତତଲ ଲୋତକ ପୋଛି ହସି ହସିକା କାନ୍ଦୁରା ମୁହଁକୁ ହସିଲା କରେ । ବେଳ ଅବେଳ ନମାନି, ଲଜସରମର ଧାରଣା ଭୁଲି, ଅଭିମାନରେ ଅଡ଼ିଲା ମୁହଁକୁ ଗ୍ରୀବରେ ଜାକେ । ଟେକିନେଇ କହେ କାନ ପାଖରେ, କହିଥିଲି ପରା ମୋ କଥାରେ ଛଳ କରିବ ନାହିଁ, କାନ୍ଦିଲଣି, ହାରିଲଣି ? ଏଥର ହସ, ତମୁକୁ ମୋ ରାଣ ।

ରମା ଆଖି ବୁଜିଲା । ମନ ଛୁଟିଗଲା କେଉଁ ପାହାଡ଼ ତଳର ନିଘଞ୍ଚ ଅରଣ୍ୟ ମାଳକୁ । କଳକଳ ହୋଇ ବହି ଯାଉଛି ଝରଣା । କୂଳରେ ଏକୁଟିଆ ଡାକ ବଙ୍ଗଳା । ଚଳଚଳ ଅନ୍ଧାର । ନିବିଡ଼ ଅନ୍ଧାର ଭିତରୁ ଶୁଭୁଛି ଝିଙ୍କାରିର ସ୍ୱନ । ଏକୁଟିଆ ସେ ପଲଙ୍କ ଉପରେ ଶୋଇ ଛଟପଟ ହେଉଛନ୍ତି । ମଶାପଲ ଦେହରେ ଲାଗି ରକ୍ତ ଶୋଷୁଛନ୍ତି । ଖଟତଳେ ମଳାବାନ୍ଧି ବୁଢ଼ାନାଗ ଶୋଇଛି । ଦୂର ପାହାଡ଼ର ଗୁହାରୁ ବାହାରି ମହାବଳ ଝରଣା କୂଳକୁ ପାଣି ପିଇବାକୁ ଆସୁଛି । ଘରର କବାଟ ଖୋଲା ଅଛି ପରା !

ଓଠରେ କାହା ଟିପର ମୃଦୁ ପରଶ । ରମା ଆଖି ଖୋଲିଲା । ହଲଧର ବାବୁ ତା ପାଟିରୁ ଥର୍ମାମିଟର୍ ଟାଣି ନେଇଛନ୍ତି । ଆଲୁଅ ଆଡ଼କୁ ଟେକି ଉତ୍ତାପ ଦେଖୁଛନ୍ତି । ମୁହଁରେ ଫିକା ପାହାନ୍ତିଆ ହସ ଉଇଁ ଆସୁଛି । ହରି ପିଅନ ଉଦ୍‌ବିଗ୍ନ ହୋଇ ତାଙ୍କ ମୁହଁକୁ ଅନାଇଁ ରହିଛି ।

କହିଲେ, ସାମାନ୍ୟ ଜର ଅଛି । ଉଦ୍‌ବେଗର କାରଣ ନାହିଁ ।

ରମାର ମୁହଁକୁ ଚାହିଁ ପଚାରିଲେ, ବ୍ରଣ ଆଉ ଯୋଡ଼ୁ ନାହିଁତ ?

ରମା ମୁଣ୍ଡ ହଲାଇ କ୍ଷୀଣ ସ୍ୱରରେ କହିଲା, ନାଇଁ ତ ।

କୁସୁମ ପାଦରେ ମାଡ଼ିହିଥିଆ ନରମ ହେମନ୍ତର ପାଧୁଳର ଧୀର ପରଶ । କୋମଳ ରୂପ । ତାରୁଣ୍ୟର ଦେହର ଲୋମ ମୂଳ ଶିହରି ଉଠିଲା । ଛେଚିହୋଇ ହେଉଥିବା ଅଙ୍ଗର ବ୍ୟଥା ସଚେତକ ଜାଗେଇ ଗଲା । ଶୁଇ ଶୁଇଥିଁ ତନ୍ଦ୍ରା ଭାଙ୍ଗିଲା । ସପନ ନୁହେଁ, ଅସଲରେ ଆଖି ମିଳା ଉଦାମ ଭାବନାର ହୁଙ୍କା ଅନ୍ଧାରୀ ମୂଳରୁ ଠେଲିଲା । ସେ ଯେଉଁଠି ହେଇଠି । ପୂର୍ବ ବାତ୍ରରେ ମୁଖ୍ୟ କର୍ତ୍ତା ନୁହେ, ଅଧସ୍ତନଟିଏ ।

ସେ ସେଇ ସୁକାନ୍ତ, ଜଣେ କର୍ମୀ । ଶୁଳଜଗୁଡ଼ା ନାଳର ଦାୟିତ୍ୱରେ ଥିବା ଶ୍ରେଷ୍ଠ ଅଫିସର । ଅକ୍ଳାନ୍ତ ପରିଶ୍ରମ କରି କାମ ଉଠାଇଛି । କାମ ସାରିଛି । ଆଉ ଯାଆର ଟୁଭେଦ ଚଳଅ କର୍ମଚାରୀଙ୍କୁ ଦେଖାଇ ଦେଇଛି । ମନ ଆନନ୍ଦରେ, ନୂଆ ଉତ୍ସାହରେ ପିଠିଅ ଅନ୍ୟମାନଙ୍କ ଉତ୍ସାହିତ କରିବାକୁ ଅତ ପୂର୍ଣ୍ଣ । ମନବୋଧୁଥା ମନ୍ତ୍ର ଶୁଣିଛି । କର୍ମଣ୍ୟେ ବାଧିକାରସ୍ତେ— ମା ଫଳେଷୁ କଦାଚନମ୍, ଆମ୍ସନ୍ତୋଷିଅଙ୍କର ହାଣିଥା ବିଳାପ, ବୋଧ ଶୋଧୁଥା ପ୍ରେରଣା ।

ଶଭାଗୀମ୍ୱ ସରବ ଅନୁଷ୍ଠାନକ ଭାବରେ ନୂଆ ନାଳର ଫାଟକ ଖୋଲିବେ । ନାଳରେ ଜଳ ଛାଡ଼ିବେ । ନୂଆ ଜମିରେ ଜଳ ମଡ଼ାଇବେ । ଶ୍ରେଷ୍ଠ ହ୍ରଦରେ ମାଛ ଚାଷ ପାଇଁ ଜାଆଁଳ ଛାଡ଼ିବେ । ଏ ସବୁ କର୍ମର ମୋଟାମୋଟି ପ୍ରୋଗ୍ରାମ ଅଛିଛି । କାର୍ଯ୍ୟ ଶେଷ ହେଲା-ହୋଇଲ ଖବର ପଠାଇଲେ ଉଚ୍ଚଅଧିକାରୀ ଆସି ପରିଦର୍ଶନ କରିବେ । ଭଲ ମନ୍ଦ ବାଛିବେ । ଭୁଲ ଅଖି ଦେଖାଇ ଧମକାଇବେ । ଭୁଲ ଭ୍ରାନ୍ତି ସୁଧାରିବାକୁ ଆଦେଶ ଦେବେ । ଉଦ୍‌ଘାଟନ ଉତ୍ସବ ପାଇଁ ଶୁଭଦିନ ସ୍ଥିର କରା ହେବ । କାର୍ଯ୍ୟ ନିର୍ଘଣ୍ଟ ପ୍ରସ୍ତୁତ ହେବ । କାର୍ଯ୍ୟ ସମ୍ପନ ପାଇଁ ଆଦେଶ ମିଳିବ । ପ୍ରକୃତ ଦକ୍ଷତାର ସେଇ ହେବ ପରୀକ୍ଷା । ପଦୋନ୍ନତିର ଖସଡ଼ା ପାହାଚ ଆରୋହଣର ସୁଯୋଗ ।

ରାସ୍ତାଘାଟ ସମତୁଲ ହେବ । ତୋରଣ ମାନ ପ୍ରସ୍ତୁତ କରାଇବାକୁ ପଡ଼ିବ ।
ଝମୁଡ଼ିଆ, ଫୁଲମାଳ, ଅଭ୍ୟର୍ଥନାର ସଙ୍ଗୀତ ପାଇଁ ବାଳିକା ଦଳ । ବିଚିତ୍ରାନୁଷ୍ଠାନର
ସମ୍ଭାବନା ଅଛି । ନାରିକେଳ, ଶୁଭଶଙ୍ଖ, ମାଇକ୍ । ନାଗ୍ରା-ଖେଳ ଅର୍ଥାତ୍ ଧାଙ୍ଗଡ଼ୀ
ନାଚର ବ୍ୟବସ୍ଥା କରିବାକୁ ମୌଖିକ ଆଦେଶ ଆସିବା ଅସମ୍ଭବ ନୁହେଁ । ଜଣେ
ପାଳକ ଏଇଆ ଦେଖିବାକୁ ପସନ୍ଦ କରୁଥିଲେ । ଖଣ୍ଡଗିରି ଉଦୟଗିରି ମାଳ ଅଞ୍ଚ-
ଳକୁ ପରିଦର୍ଶନ କରିବାକୁ ଧରିଥିଲେ । ଅଧ ଲଙ୍ଗଳା ମାଙ୍କୁଆ ଲୋକଙ୍କ ଉପରେ
ତାଙ୍କର ଶୁଭଦୃଷ୍ଟି ପଡ଼େ । କିଏ କହିବ ବଡ଼-ଅସାମୀଙ୍କର କି ଖିଆଲ କେବେ ଓ
କିପରି ହୁଏ ? ପ୍ରଚାରପାଇଁ ଚଳଚିତ୍ର ଫଟୋ ନିଆଯାଇ ପାରେ, ଆକାଶ-ବାଣୀ
ଲହଡ଼ୀଆ-ଗୀତ ରେକର୍ଡ଼ କରିବାକୁ ଲୋକ ପଠାଇ ପାରନ୍ତି । ହିଁ, ଜଳ-ଯୋଗ
ଓ ଚା ପାନର ଆୟୋଜନ ।

ଜଟିଳ ଓ କଷ୍ଟକର ଏ ସବୁ କାମ । ସ୍କୁଲ କଲେଜରେ ପଢ଼ା ହୋଇ ନାହିଁ ।
ପ୍ରାକ୍‌ଟିକାଲ କ୍ଲାସରେ ଦେଖା ହୋଇ ନାହିଁ । ଅତି ଆବଶ୍ୟକ ଏସବୁ ବିଷୟପାଇଁ
ଓଡ଼ିଆକି ଇଂରେଜୀ ଭାଷାରେ କୌଣସି ପୁସ୍ତକ ତାଆର ଦୃଷ୍ଟିରେ ପଡ଼ିନାହିଁ ।
କିପରି ଠିଆ ହେବାକୁ ହେବ, ଚଳନ, ଅଙ୍ଗ ଭଙ୍ଗୀ, ହସ, ଗାମ୍ଭୀର୍ଯ୍ୟ ଓ ବିଷାଦ
ଭାବ ଓଠ ମୁହଁ ଓ ଆଖି ପଲକରେ ପ୍ରତିଫଳାଇବାକୁ ହେବ, ଗମ୍ଭୀର କାର୍ଯ୍ୟ-
ବ୍ୟସ୍ତତା ପ୍ରମାଣର ପ୍ରତାରଣା କରିବାକୁ ହେବ ଛନ୍ଦ ଜୀବନରେ କେହିତ
କେଉଁଠି ଶିଖାଇଲେ ନାହିଁ । ଏ ସବୁର ଅଭାବରେ ସବୁ ନିବିଷ୍ଟତା ନିପାତ ହୁଏ ।
କାମ ନ କରି ମହାପାତ୍ରେ ମାରି ନଅନ୍ତି । କାମ କରି କରି ପାହେ ଜଳଜଳ ଗ୍ରହି
ରହନ୍ତି ଗୋଟାନ୍ତି ଅଇଁଠା ପତ୍ର ।

ସୁକାନ୍ତ ମୁଣ୍ଡର କେଶ ଟାଣିଲା । ଏ ସବୁ ସେ ଭୁଲିଇ ପାରିବ ନାହିଁ । ଅତି
ଶୀଘ୍ର, ରାତି ରାତି ଜୟପୁର ଫେରିଯିବ । କାର୍ଯ୍ୟ ଶେଷ ହେଲା ବୋଲି ଉପରିକଙ୍କୁ
ଖବର ଦେବ । ପାରିବେ ଯଦି ସେ ଶେଷ ଅଧି ସମାଧାନ କରନ୍ତୁ । ଅକ୍ଲାନ୍ତ ପରି-
ଶ୍ରମ କରି ତାଆର ଦେହ ଅବଶ ଲାଗୁଛି । ସେ ଅବସର ନେବ । ରମାର ଅଭିମାନ
ଭାଙ୍ଗିବ । ପିଲା ଦୁଇଟିଙ୍କୁ ଦୁଇ କାନ୍ଧରେ ବସାଇ ନାଚ କରିବ । ସେତିକି ତାଆର
କ୍ଲାନ୍ତ ଜୀବନର ପରମ ଆନନ୍ଦ ।

ଷ୍ଟେପରା, ଅଗ ଜାମାଯୋଡ଼ା ଖୋଲି । ଧୋଇଧାଇ ହୁଅ । ଜଳଖିଆ ଟିକେ

ଖାଅ । ସେଇଠୁ ବି ପିଲଙ୍କୁ ଧରି ସ୍ୱତ ଯାକ ନାଚି କରୁଥାଅ । ତମ ନୂଆବୋଉ ଛଟି ଦେଇଛନ୍ତି । ମୋ ଭୁଜଜ ବି ଛଠି ଦେଇଛନ୍ତି । ସବୁଭଲ । ଅସିବଟି ଆଗ ।

ହାତଧରି ରମା ଝାଣୁଛି । ରକ୍ତରେ ଏକବୁର ତଡ଼ିତ୍ ଖେଳାଉଛି । ଫୁର-ଫୁର-କେଶୀ ରମାର ଆଖିରେ କଜଳ ନାହିଁ । ବନସୀଆ ବାଙ୍କୁଲି ଚାହାଁଣୀ ନାହିଁ । ତୃପ୍ତି ଓ ଉଦ୍‌ବେଗ୍ନତାର ହାଲୁକା ଆଲୁଅ । ଓଠରେ ଗୋଲାପୀ ରଙ୍ଗ ବୋଳା ହୋଇ ନାହିଁ । ଖିଲ୍‌ଖିଲ ହସ ଗନ୍ଧିଲ ହସ, ସେଇ ଓଠ ବି ପାଖୁଡ଼ାକୁ ଲହଡ଼ାଆ ଚେଉ-ଚେଉକା କରୁ ନାହିଁ । ମୁକୁତା ଧବଳ ଖଞ୍ଜା ହୋଲ ଝଟକ ରଦନ ଅଳପ ଦିଶୁଛି । ପାଣିଆଁ ଅଲତା ଓଠରେ ଧୀର ମନ ପୁଲକା ତରଙ୍ଗ, ଉଠୁପଡ଼ ତରଙ୍ଗ, ଦଶିଲ ପଚ୍ଛିଦଶି ଯାଉଛି । ମୁହଁରେ ଦେହରେ ପାଉଡ଼ର ପରଖ ନାହିଁ । ପାତଳ ନେଲନ୍ ଶାଢ଼ୀ ସେ ପିନ୍ଧି ନାହିଁ । ଶାଢ଼ୀ ଭେଦି ଅଙ୍ଗର ଭଙ୍ଗୀମା ଉବ ଉବ କରି ଚାହିଁ ନାହିଁ । ହଓଟି ସନ୍ତାନର ଜନନୀ ସେ । ସାତ ବରଷର ପୋଖିତା ଘରଣୀ । ସ୍ୱଗ-ଦ୍ୱେଷହୀନା । ମାନାଭିମାନ ରହିତା, ଉଦାରତା ଓ ସ୍ନେହ, ପ୍ରେମ, କରୁଣା ସାଇତା, ଅନୁରତା ବନ୍ଧିତା ।

ଚାକିରି ଜୀବନରେ ପଦୋନ୍ନତି ପାଇଁ ସେ ସାହାଯ୍ୟ କରି ପାରିବ ନାହିଁ । ଉପରିକଙ୍କ ସଙ୍ଗେ କର ସଂଯୋଗ କରିବାର ସାହସ ନାହିଁ । ଏଣୀ ଚାହାଣୀ ହାଣି ଚୁ ପାଣି ସଙ୍ଗେ ନଜକୁ ସେ ଅଜାଡ଼ି ପାରିବ ନାହିଁ । ସେ ଏ ଯୁଗର ଅଫିସରର ଉପଯୁକ୍ତ ବାନ୍ଧବୀ ନୁହେଁ । ରକ୍ଷଣଶୀଳା ଅପଦାର୍ଥ । ସ୍ୱାମୀର ଦେହ ଅସୁସ୍ଥ ହେଲେ ସେ ବ୍ୟାକୁଳ ହୁଏ । ମୁହଁ ଶୁଖାଇ ଛଟ ପଟ ହୁଏ । ଅଖିଆ ଅପିଆ ବସି ପାହାନ୍ତି ଆଉ ସେ ।

ଖରିତାଉ ଦେହରେ ଭେଜାଇ ସେ ପରିଶ୍ରମ କରିଛି । ସଞ୍ଜ ପହରୁ ସାମାନ୍ୟ ଜର ହୋଇଛି । ଫେରି ପାରିଲ ନାହିଁ । ଅପେକ୍ଷା କରିବ । ଉପାସ ରହିବ । ଅଳପ ଗରମ ମିଶ୍ରି ପାଣି ଟିକେସେ ପିଇ ଶୋଇଥିଲ । ଅଗାଧୁ ବାଲି କରି ଦେବ । ସ୍ୱତଟିଏ ଜଗି ନେଲେ ବଡ଼ ସକାଳକୁ ଦେହ ଭଲ ହୋଇ ଯିବ । ସେ ଜୟପୁର ଫେରି ଯିବ ।

ଫେରି ଅସିଛି ପରି ।

ରାତ କେତେ ହେଲଣି ? ଉନ୍ନିଦ୍ର ହୋଇ ରମା ଜଗି ବସିଛି ? ପାଦ ଓ ଗୋଡ଼ ମଣ୍ଡାଳୁଛି ?

ମଶାରି ପଡ଼ିଛି । ଆଲୁଅ ଜଳୁଛି । ପିଲ ଦୁଇଟି ଶୋଇ ପଡ଼ିଲେଣି ପରା । ନିଶୂନ, ନିଶବଦ ନିଶି । ଦେହ ଗରମ ଲାଗୁଛି । ମୁଣ୍ଡ ଭ୍ରମୁଛି । ଆଖି ମାଡ଼ି ମାଡ଼ି ପଡ଼ୁଛି । ରମା ତଳେ ବସି ମଶାରି ଭିତରେ ହାତ ଗଳାଇ ଗୋଡ଼ ଚିପୁଛି । ମଲ୍ଲୀ-ଫୁଲର ମହକ ବାଜୁଛି ନାକରେ । ମନ ଉଲସି ଉଠୁଛି । ରମା ମଲ୍ଲୀ ମାଳ ଗଭାରେ ବେଢ଼ାଇଛି ।

ସୁକାନ୍ତ ଆଖି ଖୋଲିଲା । ରମା ହାତର ପରଶ ନୁହେ ତ । ସୁକାନ୍ତ ମୁଣ୍ଡ ଟେକି ଚାହିଁଲା । ବୁଝିଲା । ଏ ନୁହେ ଜୟପୁର, ଇଏ ଫୁଲନଗଡ଼ା ବଙ୍ଗଳା । ସତେ ତ, ଦୂରରୁ ଜଳ ପ୍ରବାହର କ୍ଷୀଣ କଳକଳ ଧ୍ୱନି ଶୁଭୁଛି । ଝିଙ୍କାରିର ସ୍ୱନ । ବିଜୁଳି ଆଲୁଅ ବିଜୁଳି ପଙ୍ଖା ନାହିଁ । ରମା ବହୁ ଦୂରରେ ଅଛି ।

ପାଖରେ ଅଛି ଶୋଭାବତୀ ।

ସୁକାନ୍ତ ତାକୁ ପାଖକୁ ଡାକି ନାହିଁ । ବରଂ ଦୂରେଇ ରଖିଛି । ସେ ନିଜେ ନିଜେ ଆସିଛି । ସହ ନୃତ୍ୟ ଦେଖାଉଛି । ଅତ୍ୟାଗ୍ରହୀତା ଘରଣୀ । ସ୍ତ୍ରୈଣ ଓ ମଦ୍ୟପର ପତ୍ନୀ । ନିଜକୁ ସମର୍ପି ଦେବାକୁ ଯେ ସତତ ଆଗଭର, ସେଇ ସେ ଶୋଭା-ବତୀ, ଆକର୍ଷଣର ଚଳନ୍ତି ପ୍ରତିମା । ପଦ ମଣ୍ଡାଳୁଛି, ସେବା କରୁଛି ।

ମଥା ଉପରେ ହାତ ରଖି ଧୀରେ ଧୀରେ ମୁଣ୍ଡଟିକୁ ପଛ ଆଡ଼କୁ ଅଲଗା କୋଇଁଲେ । ଆଉ ହାତରେ ଧରିଥିବା ଔଷଧ ଗ୍ଲାସଟି ରମାର ଓଠରେ ଲଗା-ଇଲେ । କଅଁଳେଇ କହିଲେ, ଟୋକି ଦଅନ୍ତୁ ତ । ଆଜି ରାତିରେ ଏତିକି ଆପଣ-ଙ୍କର ଶେଷ ପାନ ଔଷଧ । ନିଦ ହୋଇଯିବ । କାଲି ସକାଳକୁ ଜର ଭଲ ହୋଇ

ଯାଇଥିବ । ମୁହଁର ଫୁଲ କମିଯିବ । ଠାକୁରଙ୍କ ଦୟାରୁ ଆପଣ ସମ୍ପୂର୍ଣ୍ଣ ଆରୋଗ୍ୟ ହେବେ । ହଁ, ଢୋକନ୍ତୁ ।

ରମା ହାତ ଟେକି ଔଷଧ ଗ୍ଲାସଟି ଧରିବାକୁ ମନ କଲା । ସେ ଅନୁଭବ କଲା, ହାତ ହାତ ଉଠି ହେଉନାହିଁ । ବାହୁରେ ଡାକ୍ତରବାବୁ ବାରମ୍ବାର ଇଞ୍ଜେକ୍ସନ ଦେଇଛନ୍ତି । ଫୋମେଣ୍ଟ କରିବାକୁ କହିଥିଲେ । ସମସ୍ତେ ସେ କଥା ଭୁଲି ଯାଇଛନ୍ତି । ହାତ ହରଜ ହୋଇଛି । ଯେଉଁ ହାତରେ ସେ ଥର୍ମୋମିଟରଟି ମୁହଁରେ ଧରିଥିଲା, ସେ ହାତଟି ମଧ୍ୟ ଉଠାଇ ପାରୁ ନାହିଁ । ନିରସ୍ତ ହେଲା । ଔଷଧ ଢୋକିଲା । ମୁହଁ ବିକୃତ କଲା । ଅତି କଟୁ ।

ହଲଧର ଗ୍ଲାସଟି ହରି ହାତକୁ ବଢ଼ାଇ ଦେଲେ । ରମାକୁ ଚାହିଁ ହସ ହସ ହୋଇ କହିଲେ, ଅତି ତିକ୍ତ ନା ?

ଅଜାଣତରେ ରମାର ଫୁଲିଲା ଓଠ ଓ କୁଞ୍ଚିତ ଆଖିରେ ଫୁଟି ଆସୁଥିଲା । ମଳୀ କଢ଼ର ଆଭା । ମଥା ଉପରର ବସନ ପିଟି ଉପରକୁ ଖସି ଆସିଛି । ଫିଟି ପଡ଼ିଥିବା କବରୀ ଅଡ଼ୁଆ ଅସନା ହୋଇ ଦୋହଲୁଛି ।

ସେ କହିଲା, ହଁ. ଚିରେଇତା ପରି ।

ହଲଧର ହସି ଉଠିଲେ ।

ନିଜ ତୁଣ୍ଡରୁ ଖସି ପଡ଼ିଥିବା କଥା ଓ ପଦ ଓ ଆଗରେ ଉଭା ଜଣା ଅଜଣା ପର ପୁରୁଷର ଶବଦ ହସ ସଚେତ କଲା ତାକୁ ବେଶୀ ଘାତ କଲା । ସେ ଧାର୍ଯ୍ୟ ସ ସ୍ଥିର ଗମ୍ଭୀର ହେଲା । ଆଖି ସଜଳ ହେଲା । ମନ ଭୁକି ଉଠିଲା, ତୁମର ସେବା ମୋର ଲୋଡ଼ା ନାହିଁ, ତୁମେ ମୋ ପାଖରୁ ଦୂରେଇ ଯାଅ । ମୋତେ ଶାନ୍ତି ଓ ନିଷ୍ଠୁରରେ ମରିବାକୁ ଛାଡ଼ିଦିଅ । ତୁମ୍ଭ ଓ ଇସ୍ପାତ ନୁହ ନାକ ପୁଡ଼ାର ନିଶ୍ୱାସ । ତୁମେ ତାଙ୍କୁ ଚୋରି କରି ନେଇଛ । ତୁମର ପ୍ରିୟତମା ତାଙ୍କୁ ଉପହାର ଦେଇଛ । ସେମାନଙ୍କୁ ଫେରାଇ ଦିଅ । ଯାଅ, ଯାଅ—

ଲୁହ ଧାରେ ଗଡ଼ି ଆସିଲା ।

ହଲଧର ବଚଳତ ହେଲେ । କହିଲେଇ କହିଲେ, ଅପଣ ପିଲଙ୍କ ପରି କାନ୍ଦୁଛନ୍ତି କାହିଁକି ? ବେଶୀ କଷ୍ଟ ହେଉଛି ? ଧୈର୍ଯ୍ୟ ଧରନ୍ତୁ । ମୁଁ ଯାଇଁ ଜୟଶ୍ରୀଙ୍କୁ ଡାକି ଦେଉଛି । ସେ ଆପଣଙ୍କ ପାଖରେ ଥିବେ । ମୁଁ ଡାକ୍ତରଙ୍କୁ ନିଜେ ଯାଇ ନେଇ ଆସିବି । ଗୋମତୀ ଦେବୀଙ୍କୁ ମଧ୍ୟ ସଙ୍ଗରେ ଆଣିବି । କାଲି ସକାଳୁ ସୁକାନ୍ତ ବାବୁଙ୍କ ପାଖକୁ ମୋର ଗାଡ଼ି ପଠାଇ ଦେବି । କାମ ଅଧା ରଖି ସେ ଫେରି ଆସନ୍ତୁ । ଆପଣ ଆଉ ବସନ୍ତୁ ନାହିଁ ଶୋଇ ପଡ଼ନ୍ତୁ ।

ହଲଧରଙ୍କର ବ୍ୟସ୍ତ ଭାବ ଦେଖି ରମା ନିଜର ସନ୍ଦେହ ମିଶା ଭାବନା ପାଇଁ ନିଜକୁ ଅପରାଧିନୀ ମଣିଲା । ଲୁହ ଧୂଆ ମୁହଁ ଅଳପ ଟେକି କହିଲେଇ ଗ୍ରହିଲା । ହଲଧରଙ୍କର ମୁଖଟି ଶୁଖିଲା ଦିଶୁଛି । ଦୁଇ ଆଖିରେ ଅନିଦ୍ରା ଜନିତ କ୍ଲାନ୍ତିର ମଳିନତା ।

ସେ ଧୀରେ କହିଲା, କଷ୍ଟ ହେଉ ନାହିଁ । ଭଲ ଲାଗୁଛି । ଅତି କଟୁ ଔଷଧ ଖାଇଲେ ମୋ ଆଖିରୁ ପାଣି ଝରେ ।

ଡାକ୍ତରଙ୍କ କହିବା, ସେ ଏଥର ଅତି ମିଠା ଔଷଧ ଦେବେ । ଆପଣ ଶୋଇ ପଡ଼ନ୍ତୁ । ମୁଁ ଜୟଶ୍ରୀଙ୍କୁ ଡାକି ଦେଉଛି । ସେ ପାଖରେ ରହିବେ ।

ହଲଧର ମଶିଣାକୁ ଜୋର ପରଦା ଟେକି ଆଉ ଘରକୁ ପାଦ ବଢ଼ାଇଲେ ।

ରମା କହିଲା, ଆପଣ ସାରାରାତି ଜାଗି ରହିଲେଣି । ଦେହ ଖରାପ ହେବ । ଯାଆନ୍ତୁ ଶୋଇବେ । ହରି ତ ପାଖରେ ଅଛନ୍ତି । ଜୟଶ୍ରୀଙ୍କୁ ଏତେ ରାତିରେ ଉଠାଇବେ କାହିଁକି । ପିଲା ହଉଥିବ ଉଠିଲେ ରଡ଼ି ଧରିବେ ।

ହଲଧର ପଲଙ୍କ ପାଖକୁ ଫେରି ଆସିଲେ । ଖୁସି ହୋଇ କହିଲେ, ବେଶ୍, ତାହାହିଁ ହେବ । ଆପଣ ଆଗ ଶୋଇ ପଡ଼ିବେଟି । ଏଇ, ଆଲୁଅ ଲିଭାଇଲି ।

ହଲଧର ମଶାରି ଠେଲିଲେ । ସ୍ୱିଚ୍ ଟିପି ଆଲୁଅ ଲିଭାଇଲେ । ମଝି ଘରକୁ ଆସି କହିଲେ । ହରି, ତୁମେ ବାରଣ୍ଡା କବାଟ ବନ୍ଦ କରିବ ଆସ । କାନ୍ଦୁକୁ ଆଉଜି ଘୁଙ୍ଗୁଡ଼ି ମାରୁଥିଲ ଏଥର ଚେଇଁ ରହିବା ତୁମର ପାଳି । ଆବଶ୍ୟକ ହେଲେ ଯାଇ ଆମ ଘରେ ଡାକିବ ।

ହଚ ଉତ୍ତର ଦେଲ, ହଉ ଥକ୍କା ।

ହଲଧର ଚ୍ଲଗଲେ । ହଚ ଦାଣ୍ଡ କବାଟ ବନ୍ଦ କଲ । ଶବଦ ହେଲ । ମଝି ଘରର ଆଲୁଅ ଲଭାଇ ସେ କବାଟ ଆଉଜାଇ ବାରଣ୍ଡାକୁ ଗଲ । ସବୁ ଶୂନ-ଶାନ । ପଲଙ୍କ ଉପରେ ରମା ଅନ୍ଧାରରେ ଭୂନ ହୋଇ ବସି ରହିଲ । ମୁଣ୍ଡ ଭ୍ରମି-ବାକୁ ଲଗିଲ । ଯେଉଁ ହଲଧର ତାକୁ ଅପମାନ ଦେଇ ପ୍ରତ୍ୟାଖ୍ୟାନ କରିଥିଲେ, ଯିଏ ଜଗଦ୍ଜନନୀ ମନ୍ଦିର ଭିତରେ ତା ଉପରେ କୁତ୍ସିତ ଦୃଷ୍ଟି ପକାଇଥିଲେ, ଏ କଅଣ ସେଇ ହଲଧର ? ବନ୍ଧୁ ପତ୍ନୀ ବୋଲି ନିଃସହାୟ ଦେଖି ଉଦ୍ବିଗ୍ନ ହୋଇ ଉଠି ବସିଥିଲେ ?

ସେ ତାଙ୍କୁ କଥା କହୁଛି । ଲଜ ଓ ସଙ୍କୋଚର କବାଟ ଖୋଲିଛି । ସତେ ଯଦି ସେ ଭଲ ହୋଇଯାଏ କାଲି ପୁଣି ସେଇ ହଲଧର ଅଗେଇ ଆସି ଆଳାପ ଆରମ୍ଭ କରିବେ ନାହିଁ ତ ? ଥରେ ସେ ମୁହଁ ଖୋଲିଛି, ଆଉ ନୀରବ ରହିପାରିବ ନାହିଁ । ସେ ନିଜେ ଜୟଶ୍ରୀଙ୍କ ଆଗରେ ସବୁ କହିବେ ।

ଜୟଶ୍ରୀ ପ୍ରଘଟ କରିବେ । ପଚାରିବେ, ଢଳେ ଫୁଲେଇ, ପାଟି ବନ୍ଦ କରି-ଥିଲୁ ପରା, ହେଉ ହେଉ ନ ହେଲ ବରଲୁ କଥା କହିଲୁତ ?

ସୁକାନ୍ତ ପଚାରିବେ,—କଅଣ ପଚାରିବେ ? ହଲଧର ବାବୁ ଉମର ଦେହ ଛୁଇଁ ମନର ଏଉମାନ ମେଣ୍ଟାଇଛନ୍ତି । ଡାକ୍ତର ନହେଲେ ବ ଆଶାୟୀ ମଣିଷ ଡାକ୍ତରୀ କରନ୍ତି ।

ମଲନାହିଁ ଯାହା ।

ରମା ତକିଆ ଉପରେ ମୁଣ୍ଡ ଦେଇ ଶୋଇଲ । ଭାବିଲ, ହଁ, ସେତ ମରିବାକୁ ଯାଉଛି । ବଞ୍ଚିବ ନାହିଁ ସେ କାହା କଥା ଶୁଣିବ । ଗତ କଥା ସ୍ୱାତ ସପନ

ହୋଇଛି । ହଲଧର ଭାଆର ବଢ଼ିଭାଇ ପରି । ସେବାକଲେ, ଔଷଧ ଖୋଇଲେ, ଆକତି କହିଲେ । ସେ ତାଙ୍କୁ କଥା କହୁନଥିଲ ଭଲ କଲ । ଏଥିନେଇ ଅରୁଣ୍ଣୁ ପରୁଗ୍ଣ ଲଗିବ କାହିଁକ ?

ରାଜକେମା ବୟଃସ୍ଥା ହୋଇଛନ୍ତି । ସ୍ୱୟମ୍ବର ହେବ । ପିତା ଶହେ ରାଜାଙ୍କୁ ନିମନ୍ତ୍ରଣ ପଠାଇଛନ୍ତି । କେତେ ପିତା ପୁଣି ପଣ ରଖିଛନ୍ତି । ରାଜା ଓ ରାଜ ପୁତ୍ରଗଣ ସ୍ୱୟମ୍ବର ସଭାରେ ସମବେତ । ସେମାନଙ୍କ ମଧ୍ୟରୁ ଅନେକ ବିବାହିତ । କାହାର କାହାର ଏକାଧିକ ପତ୍ନୀ । କିଏ କିଏ ପୁତ୍ରକନ୍ୟା ମାନଙ୍କର ଜନକ । ଆଶା ଓ ଆଗ୍ରହରେ ମନ ଜରଜର, ଦେହ ଥରଥର । ରୂପ, ସ୍ୱାସ୍ଥ୍ୟ, ଚରିତ୍ର, ବିଦ୍ୟାବୁଦ୍ଧି, କୌଶଳ, ଧନ, ରାଜ୍ୟ ଓ ପ୍ରଭୃତ୍ୱ ମଧ୍ୟରୁ କିଏ କାହିଁର ଅଧିକାରୀ । ନିଜ ବଡ଼ିମାରେ ସମସ୍ତେ ବଳୀୟାନ୍ । ତେଣୁ, ସମସ୍ତେ ଆଶାୟୀ ।

ଭୁବନ ମୋହିନୀ ମେନକା କି ଉର୍ବଶୀ ରୂପିଣୀ ତରୁଣୀ ଶୋଭାର ତରଙ୍ଗ ଛୁଟାଇ ସଖୀ ଗହଣରେ ଧୀରେ ଧୀରେ ଆଗେଇ ଆସୁଛନ୍ତି । ହାତରେ ବରଣମାଳା ସଲଜ୍ଜ ନେତ୍ରରେ ଏଣୀ ଶୃହାଣୀ । ଭରପୂର ଆକର୍ଷଣ । ସବୁ ରାଜା ଓ ରାଜପୁତ୍ରଙ୍କର ସ୍ନାୟୁରେ ତଡ଼ିତ୍ର ପ୍ରବାହ ଛୁଟାଇଛି । ଛାତିର ସ୍ପନ୍ଦନ ଆଶା ଦୁରାଶାରେ ଡେଙ୍ଗ-ଡେଙ୍ଗା ।

ଏଇ ସେ ରାଜକେମା, ଧୀର ତରଙ୍ଗଟିଏ ପରି ଚାଲି ଆସୁଛନ୍ତି । ମୋ'ର ବେକରେ ବରଣ ମାଳା ଦେବେ । ହାତଧରି ମୋ'ର ସଙ୍ଗରେ ଯିବେ । ମୋ'ର ରାଣୀ, ଅଙ୍କଶାୟିନୀ, ଆହ୍ଲାଦଦାୟିନୀ ।

ଲୋଭିଲା ଦୃଷ୍ଟି କାମରଶ୍ମିରେ ଶୋଭାଙ୍ଗୀର ତନୁକୁ ବେଢ଼ାଇ ଦେଉଛି ପରସ୍ତ ପରସ୍ତ ।

ରାଜକେମା ଜଣକ ବେକରେ ବରଣ ମାଳ ଦେଲେ । ସେଇ ଯେ ଭାଗ୍ୟବାନ୍ । ଅନ୍ୟମାନେ ବିଫଳ ମନୋରଥ । ଆଶା ହଜିଛି । ଲୋଭିଲା ଦୃଷ୍ଟିର କାମନା ଅପସରିଛି । ସେଠାନେ ନିମନ୍ତ୍ରିତ ଅତିଥି । ସେମାନେ ବନ୍ଧୁ । ଯୁଗଯୁଗର ପ୍ରଚଳିତ ରୀତି ଓ ସଂସ୍କୃତି ଆଶାୟୀ ପ୍ରବୃତ୍ତିର ଗତି-ବଦଳାଇଛି । ରାଜକେମା ବନ୍ଧୁ-ପତ୍ନୀ । ସେ ଭଗିନୀ-ପ୍ରତିମ । ସ୍ନେହ, ସମ୍ମାନ ଓ ଆଶୀର୍ବାଦ ତାଙ୍କର ପ୍ରାପ୍ୟ ।

ସେ ଯୁଗର ଆଦର୍ଶ ଯାଇଛି । ସ୍ୱୟମ୍ବର ହେଉଛି ପ୍ରଦୂଷର । ସଭା ମଣ୍ଡପ ଲେଡ଼ା ହେଉ ନାହିଁ । କନ୍ୟା ମାନେ ସ୍ୱଦେହରେ ସମବେତ ହେଉ ନାହାନ୍ତି । ପ୍ରତିଭୂତିର ତଡ଼ଲ ହେଉଛି । କନ୍ୟା ପିତା ମାନଙ୍କର ଦେବାଶକ୍ତିର ପ୍ରତି-ଯୋଗିତା । ବିଜୟୀ ବୀର ପାଖରେ ଆଜି ହୃଦୟ ଦାନ । ଏ ଯୁଗର ପୁଅ । ଦୂରରୁ ଥରେ ଚାହିଁ ଦେଲେ ମନ ଖୁସି ହେବ । ସେଇଠି, ଯଥା ରାବଣସ୍ୟ ମନୋଦଶା ।

ଭୁବନେଶ୍ୱର । ପାର୍ବତୀ ମନ୍ଦର । ଦେଖାପରିଖା । ଆସିଲ ନାହିଁ ମନକୁ ? ଜୟପୁର । ଜଗଜ୍ଜନନୀ ମନ୍ଦର । ଅନ୍ୟର ପତ୍ନୀ ହୁଇ ସନ୍ତାନର ଜନନୀ । ମନକୁ ପାଇଲ ? ପର ବନିତାର ତନୁକୁ ସେ ଦୃଷ୍ଟିରେ ବେଢ଼ାଉଥିଲେ । ରୋଗିଣୀ ରମାର କୋଠରୀ ଭିତରେ ସେଇ ହଳଧର, ସ୍ନେହଶୀଳ, ସେବାରତ ସୋଦର । ସେ ବଞ୍ଚ-ରକ ବା ପ୍ରତାରକ ?

ରମା ଆଜି ଏକାକିନୀ । ଆଖିକୁ ନିଦ ଆସୁନାହିଁ । ମନରେ ଉଚ୍ଚାଟ । ଔଷଧ ବ୍ୟର୍ଥ ହେଲ ପରା ! ମୁହଁ ମାଡ଼ିମାଡ଼ି ପଡ଼ୁଛି । ମଥା ଭ୍ରମୁଛି । ପଲଙ୍କ ଉପରେ ଅନ୍ଧାରରେ ହାତ ଏପାଖ ସେପାଖ ହେଉଛି, ଖୋଜୁଛି ତାଆର ସଂସାର । ପିଲ ଦୁହେଁ ପାଖରେ ନାହାନ୍ତି । ଜୀବନ ଦୋସର ଧରା ଦେଉ ନାହାନ୍ତି । ସେ ଦୂରରେ, କେତେ ଦୂରରେ— ।

ପାଖରେ ଶୋଭାବତୀ । ମଶାରି ଭିତରେ ଅଧେ ଦେହ ପଶିଛି । ନଇଁଛି । ଧୀରେ-ଧୀରେ କେଶ ସାଉଁଳୁଛି । କଳା ମିଚମିଚ ସୁଗୋଲ ଚକଣ ମୁହଁଟି ପାଖେଇ ଆସୁଛି, ଦୂରେଇ ଯାଉଛି । ନିଶ୍ୱାସର ଧକ୍‌କା ଉଷୁମ କପାଳରେ ଲଗୁଛି । କବ-ରୀର ମଲ୍ଲୀ ମାଳରୁ ଭାସି ଆସୁଛି ସୁବାସ । ଶରୀର ଉଲ୍ଲସି ଉଠୁଛି ।

ସୁକାନ୍ତର ତାତିଲ ତନୁରେ ଉଷ୍ଣ ରକ୍ତ ପ୍ରବାହ । ଖରତର ଶ୍ୱାସ । କାମନା ଜର୍ଜର ଅବଳ ଅଗ୍ରହ ବେଢ଼ାଇ ଧରୁଛି ଯୌବନ ପ୍ରତିମା । ଧାରଣାରେ ନିବିଡ଼ ବନ୍ଧନ ।

ହାତ ଉଠୁ ନାହିଁ । ମନ ଗହନରୁ ସଙ୍କୁଚିତ ଗଢ଼ା ପୁରୁଷକାର ଧକ୍କାର ଉଠୁଛି । ସେବାରତା ନାରୀ ସେ, ହେଉପଛେ ଅବହେଳିତା, ଅଭ୍ୟାଗତା ପତ୍ନୀ ! ସେ ଗୃହେ ଟିକିଏ ଆଦର, ସ୍ନେହ ଓ ସହାନୁଭୂତି । ସେତିକି । କିନ୍ତୁ, ସେ ନୂଏଡ କୌଶଳୀ ସୁବୁଦ୍ଧିଙ୍କର ଖେଳ କଣ୍ଢେଇ । ବିଷ-କନ୍ୟା । ସଂଯମୀର ଯୋଗଭଙ୍ଗ କରିବାକୁ ପ୍ରେରିତା ଉର୍ବଶୀ । ସହାନୁଭୂତିରେ ସେ ଜରଜର ହୋଇ ସେବା କରୁ ନାହିଁ । ତାରୁଣ୍ୟର ନାଗଫାଶରେ ସେ ପରସ୍ତ ପରସ୍ତ ଗୁଡ଼ାଇ ଦେଉଛି । ଫଣା-ଟେକିଛି । ନିଶ୍ୱାସର ଲହଡ଼ୀ ବାଜୁଛି ମୁହଁରେ । ହାତ ବଢ଼ାଇ ବେଢ଼ାଇ ଧରିଲେ ଫଣାଟି ନଇଁ ଆସିବ ଛାତି ଉପରକୁ । କୋମଳ ଦଂଶନ । ବିଷ ଚହଟିବ । ନିଜ ବିଡ଼ମ୍ବନାର ମରଣ ହେବ ।

କାହିଁ ସେ ଅଗାଧୁ, ମୀତ ଓ ଅମୀତର ମଝିରେ ଠିଆ ବେବନ୍ଦସ୍ତ ସତର୍କ ପ୍ରହରୀ ? ସୁବୁଦ୍ଧିଙ୍କର ପଦ୍ମତୋଳାରେ ସେ ମଧ ବଶ ହୋଇଛି ? ସେବା କରିବାକୁ ସର୍ପିଣୀ ଶୋଭାବତୀକୁ ସୁଯୋଗ ଦେଇଛି ?

ଗଭୀର ମଲ୍ଲୀମାଳ ମହକ ଉଠୁଛି । ଦେହ ମନ ଉଚ୍ଚାଟ କରୁଛି । ହାତ ହଠାତ୍ ଆପେ ଆପେ ଉଠୁଛି । ଭଲ ପଣିଆର ସବୁ ତର୍କ ପଛରେ ପଡ଼ୁଛି । ଶୋଭା-ବତୀର ଶୀତଳ ମାଂସଳ ହାତ ପାପୁଲିକୁ ସେ ମୁଠାଇ ଧରିଛି । ଶୋଭାବତୀ ଟାଣି ନେଉ ନାହିଁ । ସେ ନିଶ୍ଚଳ, ସେ ନୀରବ ।

କାନରେ ବାଜୁଛି ଆଉ ଜଣଙ୍କର ଭାଷା, ମନା ନ ମାନିବାର ଫଳ ପାଇଲ ତ ? ଟିକିଏ ଅପେକ୍ଷା କଲନାହିଁ ? ରାଗ ଡମଡମ ହୋଇ ମନ ଇଚ୍ଛା ମତେ ଶୋଧିଲ । ବାସୀ ଖଣ୍ଡା ପଖାଳ ଖାଇ ଅଫିସକୁ ଗଲ । ତମର ସବୁ ରାଗ ରୋଷ, ଅଭିମାନ, କଟୁକଥା ଫୋପଡ଼ା କଚଡ଼ା ମୁଁ ହଜମ କରିଛି । ସେ ସବୁ ମୋର ଦେହସହା ହୋଇଛି । ଅଦିନଆଁ ବାସୀ ପଖାଳ କଂସାକଚ ତୁମେ ହଜମ କରି ପାରିଲ ନାହିଁ । ଦେହର ତାତିରେ ଖଇ ଫୁଟିବ । ଆଉ ଦିନେ ଅବାଧ ହେବ ନାହିଁ । ନିଅ, ଉଷୁମ ବାଲିଁ ପାଣି ପିଇଦିଅ ।

ପିଇବ ନାହିଁ ଯାଅ । 'ତୁମେ ମତେ ଉଲ୍ଟିଗୁଣା ଦେଇଛ । ତୁମର ମାଇପି ଜାତିଙ୍କ ସ୍ୱଭାବ ମୁଁ ଜାଣେ । ନଇ ପଡ଼ିଲେ ବେଲ ଉଣ୍ଡି ବାନ୍ଧିଏ ଥୋଇବ । ମତେ

ଜର ହେଲଉ ତୁମର କଅଣ ଯାଉଛି ? ମୁଁ ମୋ'ର କଷ୍ଟ ପାଉଛି । କାଲି ସକାଳେ ଅନ୍ଧାର କଂସାଏ ବାସୀ ପଖାଳ ଖାଇବ ! ଜର ବଢୁ, କମୋକଅଁ ହେଉ, ସନ୍ନପାତ ହେଉ । ସେଇଠୁ—

ତୁନିହ କହୁଛି । ହାଣ୍ଡିରେ ପାଣି ଚୋରାଣି ଅଛି ଯେ ମତେ ଉତ୍ରାଇବ ? ସବୁ ମୁଁ ଶେଷ କରି ଦେଇଛି । ହଉ ହେଲ, ସବୁ ଦୋଷ ମୋର । ମୋ କଥା ମୁଁ ଫେରାଇ ନେଉଛି । ନଅ, ପିଇ ଦେବଟି, ମୋ ସୁନାଟି ପରା ।

ସୁକାନ୍ତ ଅଣ୍ଟ ହୋଇଛି । କୁଳୁକୁଳୁ କରି ଅନାଇଁ ରହିଛି । ପାଖରେ ବସିଛି ବାଇଅଣୀ ରମା । ଫୁରୁଫୁରୁ କେଶ । ଶୁଖିଲ ମୁହଁ । ଫକା ଆଖି । ମଇଲ ବସନ । ଗୋଟିଏ ହାତ ସୁକାନ୍ତର ଦେହ ଆଉଁସୁଛି । ଆର ହାତରେ ବାର୍ଲି ଗିଲସ ।

ସଞ୍ଜ ପହରୁ ସେ କାମରେ ଲଗିଛି । ଆଉ ପଲଙ୍କରେ ପିଲ ହଦେଁ ଶୋଇ ପଡ଼ିଲେଣି । ରମା ତା'ର ପାଦ ସେକୁଛି । ଅଞ୍ଚଳରେ ପୋଛି ଗରମ ମୋଜା ପିନ୍ଧାଇ ଦେଇଛି । ଦେହ ହାତ ଘସି ଦେଇଛି । ମଥା ସାଉଁଳିଛି । ଅସଜଡ଼ା ଅଲରା କେଶରୁ ମଲ୍ଲୀ ଫୁଲର ବାସ ଛୁଟୁ ନାହିଁ । ମନବନରୁ ସଜ ସତେଜ ପ୍ରେମ କୁସୁମର ମହକ ଛୁଟିଛି । ସେ ଆଜ ଭାମିନୀ ନୁହେ । ସେ ଆଜ ସେବକା, ଭଗିନୀ ।

ସୁକାନ୍ତ ମୁଣ୍ଡ ଟେକି ଉଠିଲ । ଗିଲସରେ ଓଠ ଲଗାଇ ଗରମ ବାର୍ଲି ଛକ-ଛକ କରି ପିଇଲ । ପଣତରେ ଓଠ ପୋଛି ରମା କହିଲ, ଏଥର ତୁନି ହୋଇ ଶୋଇ ପଡ଼ । ସକାଳକୁ ଝାଡ଼ ଝୁଡ଼ ହୋଇ ବସିବ । ଶୋଇ ପଡ଼ତ, ମୁଁ ଚଦରଟି ଘୋଡ଼ାଇ ଦିଏ ।

ସୁକାନ୍ତ ସୁନାପିଲଟି ପରି କଥା ମାନିଲ । ରମାର ହାତ ଛାଡ଼ିଲ ନାହିଁ । ତୁଣ୍ଡ ଖୋଲିଲ ନାହିଁ । ରମା ଜାଣେ, ସେ କଅଣ ଚାହୁଁ ଛନ୍ତି । ମୁହଁ ନୋଇଁଲ । ହସହସ ଆଖି । କହିଲ, ବଡ଼ ଅଲଜୁକ । ସୁକାନ୍ତର ତାଞ୍ଚିଲ ଚବୁକରେ ଗୋଟିଏ ଚୋକ । ମୁହଁ ଟେକିଲ । ଲାଜରେ ଓଠ ପତା ଥରି ଉଠୁଛି । କହିଲ, ଶୋଇ ପଡ଼ ଏଥର ।

ସୁକାନ୍ତର ହାତ ମୁଠା ହୁଗୁଳା ହେଲ । ଶୋଭାବତୀ ହାଁତ ପାଝୁଲ ଟାଣି ନେଲ । ମଶାରି ଭିତରୁ ମୁହଁ ପଦାକୁ କାଢ଼ିଲ । ଟେବୁଲ ପାଖରେ ଠିଆହୋଇ ସେ ଡ଼ାକ ଛାଡ଼ିଲ । ଅଗାଧୂ ବାବୁ, ସାହେବଙ୍କର ନିଦ ଭାଙ୍ଗିଲଣି । ବାଲିଁ ପାଣି ଦେବାକୁ କହି-ଥିଲ ପରା ।

ଶୋଭାବତୀ ପଦାକୁ ଗଲ । ହସର ଶବଦ କାନରେ ବାଜିଲ ।

ସୁକାନ୍ତର ଛାତି ଥରଥର ହୋଇ କମ୍ପିଲ । ଶୋଭାବତୀ ଉପହାସ କରୁଛି । ଶୋଭାବତୀ ପ୍ରତିଶୋଧ ନେଇଛି । ସତେକି ସେ ଜଣାଇଁ ଦେଉଛି, ମୁଁ ପ୍ରେମ କଙ୍ଗାଳୁଣୀ ସତ, ମୁଁ ନିଜକୁ ଯାଚଯାଚ ବିତରଣ କରେ ନାହିଁ । କାହାରି ପ୍ରେମରେ ମୁଁ ପଡ଼େ ନାହିଁ । ନିଜକୁ ମୁଁ ଭଲ ପାଏ । କଳାମିଚ, ଫୁରଫୁଟି-ମୁଣ୍ଡୀ, ସିଙ୍ଘାଣି-ନାକୀ, ମଇଳା ଅସନା ଯେଉଁ ଲଙ୍ଗୁଳୀ ଦରଲଙ୍ଗୁଳୀ ଝିଅଟି ମାନେ ମାଟିକାହୁଅରେ ଘାଣ୍ଟି-ଚକଟି ହେଉଥିଲେ, ତାଙ୍କରି ଭିତରୁ ମୁଁ ଜଣେ । ପାଖକୁ ଲଗିଲଗି ଗଲେ ନାକ-ଟେକି ଯେଉଁ ମାନଙ୍କୁ ଆକଟ କରି କହ, ଇସ୍, ଛୁଇଁବୁ ଛୁଇଁବୁ ଦୂରେଇ ଯା, ସମସ୍ତେ ସେମାନେ ମୋଓରି ଭିତରେ ଠୁଳ ।

ଆକର୍ଷଣର ଚଳନ୍ତି ପ୍ରତିମା ତୁ !

ହୋଇଥିବ ଗୋ, ନିଜେ ମୁଁ କରି ନାହିଁ ! ସମୟ ମତେ ବଡ଼ କରିଛି । ସର୍ବାଙ୍ଗରେ ଭରପୂର ସ୍ୱାସ୍ଥ୍ୟ ଭରିଛି । ମୋଓରି ଦେହରେ ତାରୁଣ୍ୟ ସଗର୍ବରେ ଶିଖର ତୋଳିଛି । ନୟନରେ ଅପାଙ୍ଗ ଖଞ୍ଚିଛି । ବଦନରେ ସରଗ ଲେପିଛି । ମନ ମୋଓରି ଛେଉଛେଉକା । ଏ ଦେହ, ଏ ଯୌବନ କ୍ଷୀରପୁରି ଖାଇ ପୁଷ୍ଟ ହୋଇ ନାହିଁ । ମାଟି ତଳର କନ୍ଦା, ବୃକ୍ଷଲତାର ପତ୍ର, କଢ଼, ପୁଷ୍ପ ଓ ଫଳ, ଆମ୍ବ ଟାକୁଆ, ଡେଙ୍ଗୁଳି ମଞ୍ଜି, ମାଣ୍ଡିଆ, ଜହ୍ନା, ବଣର ପଶୁ ପକ୍ଷୀଙ୍କର ମାଂସ, ପାଣି ଓ ପଙ୍କର ଗେଣ୍ଡା କୋଚିଆ, ଆମ୍ବପତ୍ର ଠୋଲ ଭିତର କାଇ, ଖଜୁରି ଗଛର ପୋକ, ହୁଙ୍କା-

ତଳର ଉଇଟାଙ୍କୁ, ଗାତ ଭିତରର ମୂଷା ଓ ଚେମଣୀ ; ଏ ସବୁ ତ ତେମେ ଘୃଣା କର । ଏସବୁ ଖାଇ ଗଢ଼ି ଉଠିଛୁ, ବଢ଼ି ଉଠିଛୁ ଯେଉଁ ଯୌବନ ଚଳଚଳ ମାଂସଳ ଦେହଟି ତାଆର ସ୍ପର୍ଶ ପାଇଁ ହାତ ବଢ଼ାଇଲ । ହାତ ଧରିଲ । ହୁଗାଳ ଦେଲ ଘୃଣାରେ ?

ଉତ୍ତେଜିତ ସୁକାନ୍ତ ପଲଙ୍କ ଉପରେ ଉଠି ବସିଲ । ଆଉ ଘରୁ ଶୋଭାବତୀର ପାଟି ଶୁଭୁଛି, ଅଗାଧୁ ବାବୁ, ଉଠନ୍ତୁ, ସାହେବଙ୍କୁ ବାର୍ଲିପାଣି ଦେବ । ଉଠ । ମୋ ହାତରୁ ସେ ପିଇବେ ନାହିଁ । ଓହୋ, କେଡ଼େ ନିଦମ ତମର । ହାଃ ହା-ହା—

ଯୌବନର ଗର୍ବରେ ଗର୍ବିତା ସେ ତରୁଣୀ, ଉପହାସ କରୁଛି । ସେ ଜଣାଇଁ ଦେଉଛି, ତୁମେ ମତେ ଉପେକ୍ଷା କରି ନିହ ଗୋଡ଼ରେ ଅଡ଼େଇ ଦେଇ ନାହଁ । ମୁଁ ତୁମର ସର୍ବାଙ୍ଗରେ ଆନନ୍ଦ ଜାଳିଛି । ତୁମୁକୁ ଜଳ ପୋଡ଼ ପାଉଁଶ ହେବାକୁ ଛାଡ଼ି ଦେଇ ଆସିଛି । ପ୍ରମାଣ ଦେଇଛି ତୁମର ବିଦ୍ୟାବୁଦ୍ଧି, ତୁମର ପଦମର୍ଯ୍ୟାଦା, ଧନ ପ୍ରଭୁତ୍ୱ ଓ ସବୁ ବଡ଼ ପଣିଆଁ ଗୋଟିଏ ପାଖରେ ଗଦା କରି ରଖି, ଆଉ ପାଖରେ ଠିଆ ହୋଇଛି ଅତି ନିରିମାଖିରେ ତାରୁଣ୍ୟ, ବଣର ଫୁଲରେ ସେ ମହକି ଉଠୁଛି । ବଡ଼ ଭଏ ଅନୁଭବ କଲ ତ ? ପରାଜିତ ହେଲତ ?

ନାହିଁ, ନାହିଁ ମନ ତେଜି ଉଠିଲ । ସୁକାନ୍ତ ମଣିର ଚେତ ପଦାକୁ ଆସିଲ । ଦେହର ଜ୍ୱର ଦେହର ବ୍ୟଥା ଉପଶମ ହୋଇଛି, ଭେଦିଛି ସ୍ନାୟୁରେ । ଭାବନା ପ୍ରତିଶୋଧର ବିଷରେ ଜର୍ଜରିତ । ମଲ୍ଲୀ ଫୁଲର ବିଷାକ୍ତ-ବାସନା ପ୍ରକୋଷ୍ଠ ଭିତରେ ଭରି ରହିଛି ।

ସୁକାନ୍ତ ଚେୟାରରେ ବସିଲ । ଆଲୁଅ ତେଜିଲ । ଭାବିଲ, ଉଦ୍ଧତ ନାଗ-ଣୀର ଫଣା ନୋଇଁବ । ଯୌବନର ତୁଙ୍ଗ ଶୃଙ୍ଗ ଭାଙ୍ଗି ଚୂର୍ଣ୍ଣ କରିବ । ହସିଲ ଅପା-ଙ୍ଗକୁ ନୋଇଁ ଆଣିବ ତଳକୁ । ସେ ପରାଜୟ ସ୍ୱୀକାର କରିବ ନାହିଁ । ସେ ହେବ ବିଜୟୀ !

ହାତରେ ବାର୍ଲି ଗ୍ଲାସ ଧରି ନିଦ ମଳମଳ ଅଗାଧୁ କୋଠରୀରେ ପଶିଲ । ତା ପଛରେ ଶୋଭାବତୀ । ଉଜ୍ଜ୍ୱଳ ଆଖିରୁ ତାଚ୍ଛିଲ୍ୟର ହସ । ଦର ହସିଲ ଓଠରେ ବିଜୟିନୀର ଗର୍ବ । ସଚେତନ ପ୍ରଶ୍ନ ପଚାରୁଛି । ବିଜୟୀ ହେବ ?

ଦୁଇହାତ ଗଳାରେ ବେଢ଼ାଇ, ନିବିଷ୍ଟ ଭାବରେ ହୃଦୟରେ ଭରି ଫୁର୍‌ଫୁର୍‌ ମୁଣ୍ଡୀ, ହସହସ ମୁହଁୀ, ରମା କହୁଛି ମନ ଉଦ୍ୟାନର ନିଭୃତ କୁଞ୍ଜରେ, ହେ ମୋର ଦେବତା, ହେ ମୋର ସର୍ବସ୍ୱ, ତୁମେ ବିଜୟୀ ବୀର। ପ୍ରଲୋଭନକୁ ପାଦରେ ଆଡ଼େଇ ବିଜୟୋଲ୍ଲାସରେ ସଗର୍ବରେ ଫେରି ଆସିଛ। ମୋ'ର ଆନୁଗତ୍ୟର ଦୃଢ଼ତାରେ ତୁମର ଚଞ୍ଚଳ ଥରଥର କାମନା ସ୍ଥିର ହୋଇଛି। ମୋର ତରଳ ସରଳ ଦୃଷ୍ଟିରେ ତମ ମନର ଆବିଳ ପ୍ରବାହ ନିର୍ମଳ ହୋଇଛି। ମୋଓଠ ସ୍ପର୍ଶରେ ତୁମର ତପତ ରକତ ଶୀତଳ ହେବ।

ସୁକାନ୍ତ ଅଗାଧ୍‌ ହାତରୁ ଗ୍ଲାସ ନେଲ। ଶୋଭାବତୀର ଦର ହସିଲ ମୁହଁକୁ ଚାହିଁଲ। ସୁକାନ୍ତର ସେହି ଦୃଷ୍ଟିର ଆଲୋକ ସାଥିରେ ସତେକି ରମାର ଉଦାରତା ଜୀବନ ଲଭି ଆଗେଇ ଯାଇଛି।

ଶୋଭାବତୀ ତଳକୁ ଚାହିଁଲ।

ଜୟଶ୍ରୀ ଚମକି ଉଠିଲେ। ଆଖି ଖୋଲିଲେ। ଭୟଙ୍କର ସ୍ୱପ୍ନଟା ଭାଙ୍ଗି ଯାଇଛି। ତଥାପି, ଛାତି ଥରଥର କମ୍ପୁଛି। ସେ କଣେଇ ଚାହିଁଲେ। ଝରକା ପରଦାର ଆର ପାଖେ ଉଷସ୍‌ର ଶୀତଳ କୋମଳ ଉଷତ ଆଲୁଅ ଢେଉ ଖେଳିଲଣି। ଘର ଭିତରେ ନେଳିଆ ବିଜୁଳି ଆଲୁଅ ନିସ୍ପ୍ରଭ ହଗିଲଣି। ବିଜୁଳି ପଙ୍ଖାର ଘର୍‌ଘର୍‌ ଶବଦ କାନରେ ବାଜୁଛି। ପଲଙ୍କର ଗୋଟିଏ କଡ଼ରେ କୁନୁ ଚିତ ହୋଇ ଶୋଇଛି। ଇରା ତାଙ୍କର ଗୋଡ଼ତଳେ କଡ଼େଇ ଶୋଇଛି। ଯାହାଙ୍କ ନାମରେ ସେ ଏଡ଼େ ଭୟଙ୍କର ସ୍ୱପନ ଦେଖିଲେ, ସେ ପାଖରେ ନାହାନ୍ତି।

ସେ ଉଠି ବସିଲେ। କେତେ ଅଡ଼ର କେତେ ସମୟର ସମ୍ଭବ ଅସମ୍ଭବ ମିଶାମିଶି ଘଟଣା ସପନ ରାଇଜରେ ଘଟି ଗଲ। ମନେ ନାହିଁ। ମନେ ପଡ଼ୁଛି ଶେଷ ଘଟଣାଟି। ଅଜନାଗ୍ନି ଅରଣ୍ୟ ଭିତରେ ଅବଡ଼ା ଖାବଡ଼ା ଅଣଓସାରି ସାପୁଆ

ରାସ୍ତା । ଖର ବେଗରେ ମଟର ଛୁଟିଛି । ହଳଧର ବାବୁ ନିଜେ ଚଳାଉଛନ୍ତି । ପାଖରେ ବସିଛନ୍ତି ସେ । ପିଲଗୁଡ଼ାଏ ପଛସିଟ୍‌ରେ ବସି ପାଟିଭୁଣ୍ଡ କରୁଛନ୍ତି ! କୁନ ଓ ଇରା ମଧ୍ୟ ଅଛନ୍ତି । ରାସ୍ତା ମୋଡ଼ରେ ବଡ଼ ପଥର । ଗାଡ଼ି ବାଜୁଛି ସେହି ପଥ-ରରେ । ଓଲଟି ପଡ଼ୁଛି ।

ସମସ୍ତେ ଅଛନ୍ତି । କାହାର ଦେହରେ ଆଞ୍ଚ ଲାଗିନାହିଁ । ଗାଡ଼ି ଚୂରମାର ହୋଇଛି । ସମସ୍ତେ ତ ଥିଲେ, ହଳଧରଙ୍କର ଦେଖା ନାହିଁ ଯେ । ସେ କୁଆଡ଼େ ଗଲେ ? ସଞ୍ଜ ଅନ୍ଧାର ଘୋଟି ଆସୁଛି । ଜୟଶ୍ରୀ ବାଇଆଣୀ ପରି ଏଣେ ତେଣେ ଧାଉଁଛନ୍ତି । ଚତ୍କାର କରୁଛନ୍ତି । ଅରଣ୍ୟ ଭିତରୁ ଅସ୍ତବ୍ୟସ୍ତ ହୋଇ ଖୋଲବାଲ ହୋହଲଇ ରାସ୍ତା ଉପରକୁ ଧାଇଁ ଆସୁଛି ରମା । ତା ପଛରେ ସୁକାନ୍ତ । କିନ୍ତୁ, ହଳଧର କାହାନ୍ତି ? ଏ ବଣେ କେଉଁଠୁ ଆସିଲେ ?

ବଡ଼ ରାସ୍ତା ହଜି ଯାଇଛି । ଜଙ୍ଗଲ ଭିତରେ ଶଗଡ଼ ଗୁଳାରେ ଗୋଟିଏ ବଳଦ ଗାଡ଼ି ଠିଆ ହୋଇଛି । ପିଲଗୁଡ଼ିକ ତାଆର ଭିତରୁ ପାଟିଭୁଣ୍ଡ କରୁଛନ୍ତି । ସୁକାନ୍ତ ଓ ରମା କୁଆଡ଼େ ଛପି ଗଲେଣି । ଗାଡ଼ି ଭିତରୁ ମୁହଁ ଗଳାଇ କୁନ ଡାକ ଛାଡୁଛି, ମାଉସୀ, ମାଉସୀ— । ଇରା ରଡ଼ି ଛାଡ଼ୁଛି । ଗାଡ଼ିଆନ୍ ଗାଡ଼ି ଚଳାଉଛି । ହଳଧର ଗଲେ କାହିଁ ? ଅନ୍ଧାର ଘନେଇ ଆସୁଛି । ସେ ପଛରେ ପଡ଼ିଛନ୍ତି । ଗାଡ଼ି ଦୂରେଇ ଯାଇଛି । ସେ ଚିତ୍କାର କରି ପଛରେ ଧାଉଁଛନ୍ତି । ପଥର ଝୁଣ୍ଟି ତଳେ ପଡ଼ୁଛନ୍ତି । ହାତ ଧରି ରମା ଉଠାଉଛି । ଜୟଶ୍ରୀ ଉଠି ପାରୁ ନାହାନ୍ତି ।

ଦେହ ଅବଶ ଲାଗୁଛି । ଦେହ ହାତ ଥରୁଛି । ସେ ଧୀରେ ଧୀରେ ଉଠି ବସିଲେ । ମଶାରି ଟେକି ପଦାକୁ ଆସିଲେ । ହଳଧର ତ ପଲଙ୍କରେ ନାହାନ୍ତି । ରାତସାରା ରମା ପାଖରେ ଜଗି ବସିଥିବେ । ଯାଉଛି କହି ତାଙ୍କୁ ସେ ବସାଇ ଦେଇ ଆସିଥିଲେ । ନଘୋଡ଼ ନିଦ ଘୋଟିଗଲା । ସେ ଆସି ଉଠାଇଲେ ନାହିଁ କାହିଁକି ?

ଜୟଶ୍ରୀ ମଝି ଘରକୁ ଆସିଲେ । ଶାଢ଼ୀ ପଣତ ତଳେ ଘୁସୁରୁଛି । କେଶ ବାସ ଅଲରା । ମଝିଘରର ଆଲୁଅ ଲିଭିଛି । ଧୀରେ ଧୀରେ ବିଜୁଳି ପଙ୍ଖା ଘୂରୁଛି । ଫିକା ପହାନ୍ତାର ଦରବିକଶିତ ମଲ୍ଲୀ ଫୁଲିଆ ଆଲୁଅ ଦୁଇ ପାଖର ଖୋଲ

ଝରକା ବାଟେ ପ୍ରକୋଷ୍ଠରେ ପଶୁଛି । ଅଳପ ଆଲୋକିତ ହୋଇଛି । ଆରାମ ଚଉକିରେ ଗୋଡ଼ ଲମ୍ବାଇ, ମୁଣ୍ଡତଳେ ତକିଆ ଦେଇ ସେ ଶୋଇ ପଡ଼ିଛନ୍ତି ।

ଖଟତଳେ ଉଲ୍ଲାସର ଛଳଛଳ ଉଚ୍ଛଳ ତରଙ୍ଗ । ଜୟଶ୍ରୀଙ୍କର ଓଠରେ ବିମଳ ହସର ରେଖା । ବୀର ଶୃଙ୍ଖଳିଆ ସପନର ପ୍ରଭାବ ଅପସରିଲା । ପ୍ରାଣାଧିକ ସ୍ୱାମୀ ତାଙ୍କର ଏଇଠି ଅଛନ୍ତି । କାଳେ ନିଦରେ ବ୍ୟାଘାତ ଘଟିବ ବୋଲି ସେ ପାଖକୁ ଯାଇ ଉଠାଇ ନାହାନ୍ତି । ପଲଙ୍କରେ ନ ଶୋଇ ଗୋଟାଏ ଚଉକି ଉପରେ ଶୋଇ ରାତି କଟାଇଛନ୍ତି । କେମିତିକା ମଣିଷ ସେ । ନିଜେ ପଛେ ଅସୁବିଧା ଭୋଗିବେ ଅନ୍ୟର ଅସୁବିଧା ସେ କରାଇଦେବେ ନାହିଁ ।

ରମା ପାଖରୁ କେତେବେଳେ ଫେରିଲେ ? କିଏ ତାଆର ଉତ୍ତାପ ଦେଖିଲା? କିଏ ଔଷଧ ଦେଲା ? ହଁ, ନଟବର ବାବୁ ଡାକ୍ତର ଆସିଥିବେ । ତାଙ୍କ ସଙ୍ଗରେ ଗୋମତୀ ଅସିଥିବେ । ରମା ପାଖରେ ସେଇ ବସିଥିବେ । ସେ ନିଶ୍ଚୟ ଭଲ ହୋଇ ଗଲଣି ।

ବୁଇ ପିଲାର ମାଆ ହୋଇ ମଧ୍ୟ ପିଲାବୁଦ୍ଧି ଯାଇ ନାହିଁ । ପିଲାଙ୍କ ପରି କାନ୍ଦଣା । ବେକ ଗୁଡ଼ାଇ ଧରି ଖନେଇ କହୁଥିଲା, ମୁଁ ମରିବି ଲୋ ଭଉଣୀ, ସେଏତ ଟୋକା ମଣିଷ, ନୂଆ ସଂସାର କରିବେ । ଆଉ କେତେ ପିଲା ପିଚିକା ହେବେ । ମୋ କୁନୁଇମାନଙ୍କୁ କିଏ ମଣିଷ କରିବ ?

ଜୟଶ୍ରୀଙ୍କର ଆଖିରୁ ଲୁହ ଗଡ଼ିଲା । ରୋଗଣା ଫୁଲିଲା ମୁହଁଟିକୁ କାନିକୁ ଆଉଜାଇଲେ । ମୁଣ୍ଡ ଓ ପିଠି ଆଉଁସି ଦେଇକରି କହିଲେ କାନ ପାଖରେ, ବାଇ-ଆଣୀଟା, ସାମାନ୍ୟ ରୋଗକୁ ଏତେ ଡରୁଛୁ ? ଭଲ ହୋଇଯିବୁ ଯେ ।

ଭଲ ନ ହେଉ । ମୁଁ ସେଇଆ ଚାହେଁ ।

ଏପରି କଥା କୁହନା ରମା ।

ତାହାଲ ଆଖିର ତତଲ ଲୁହ ଜୟଶ୍ରୀଙ୍କର ବାହୁ ଉପରେ ପଡ଼ଲ । ରମା କହଲ, ସ୍ୱାମୀ ଦେବତାଙ୍କର ମନଜାଣି ସେବା କରିବାକୁ ଯେତେ ହାଇଁପାଇଁ ହେଲେ ବି ମୋ'ଓର ସବୁ କାମରେ ସବୁରେ ଲେ, କେଉଁଠି କଅଣ ଦୋଷ ତ୍ରୁଟି ରହି ଯାଏ । ସେ ସିନା ଟିକଏ ବିରକ୍ତ ହୁଅନ୍ତି । ପୁଣି ସବୁ ଭୁଲ କ୍ଷମା କରନ୍ତି । ସତ, ମୁଁ ଭାବେଁ, ତାଙ୍କ କ୍ଷମା, ଆଦର ଓ ସ୍ନେହର ଉପଯୁକ୍ତ ପାତ୍ରୀ ମୁଁ ନୁହେ । ମୋ ମନରେ ଏତିକି ଦୁଃଖ ରହିଯିବ ।

ବିରକ୍ତ ହୋଇ ଜୟଶ୍ରୀ କହିଲେ, ଛି, ଛି, ଏହି କଥା ତୁମେ ମନକୁ ଆଣୁଛ ? ଶୋଇବଟି । ମୁଁ ପାଖରେ ବସିଛି । ସମସ୍ତଙ୍କର ଦେହ ମୁଣ୍ଡ ହୁଏ କି ତମର ଆଜ ନୂଆ ହେଉଛି ? ସେ ପାଖରେ ନାହାନ୍ତି ବୋଲି ତୁମେ ଝୁରି ହେଉଛ । ସେଇଥି ପାଇଁ ଏପରି ଅଭିମାନଅାଁ କଥା ତୁମ ମୁହଁରୁ ବାହାରୁଛି । ସୁକାନ୍ତ ବାବୁ ତୁମକୁ ଅତି ସ୍ନେହ କରନ୍ତି, ଏକଥା ସମସ୍ତଙ୍କୁ ଜଣା । ମତେ ତ ଅଛପା ନାହିଁ । ବାପ ପରି ଶାସନ କରନ୍ତି । ଭାଇପରି ଖେଳିବ ଲଗାନ୍ତି ଓ ଚିଡ଼ାନ୍ତି । ସାନଭାଇ କି ଟିକି ପୁଅ ପରି ଅଳ କରନ୍ତି । ଆଉ, ଜାଣି କରି ତ ସେ ଲୁନୁଇବାଙ୍କର ବାପ । ତେମେ ଶୋଇ ପଡ଼ବଟି ।

ଜୟଶ୍ରୀ ରମାକୁ ଧୀରେ ଧୀରେ ବିଛଣାରେ ଶୁଆଇ ଦେଲେ । ସଫା ଗୁଦର ଘୋଡ଼ାଇ ଦେଲେ । ଆଉଜ ବସି ଦେହରେ ହାତ ପକାଇଲେ ।

ରମା, କ୍ଷୀଣ ସ୍ୱରରେ କହିଲ, କାଲେ ମୁଁ ନଥିବି । ସେ ଆସିଲେ କହିଦେବ ଏ ଜୀବନରେ ତାଙ୍କର ମନ ମନାଇଁ ସେବା କରି ପାରିଲି ନାହିଁ । ଠାକୁରଙ୍କୁ ଜଣାଣ କରଛି । ଆସନ୍ତା ଜନମରେ ମୁଁ ସେତକ କରି ପାରିବି ସେହି କ୍ଷମତା ମତେ ସେ ଦେବେ ।

ବାଇଅଣୀଟା, ସୁନାମୁଣ୍ଡା ସୁକାନ୍ତ ଉପରେ ଅଭିମାନ କରି ଏଣ୍ତ ତେଣୁ ଭାବି ମନ ଖରାପ କଲେ ରୋଗର କୋପ ବଢ଼ିବ । ସୁନା ଭଉଣୀଟି, ଚୁପକରି ଶୋଇ ପଡ଼ । ଲୁନୁଇବାଙ୍କର ଯତ୍ନ ମୁଁ ନେଉଛି । ତାଙ୍କ କଥା ତୁ ଭାବ ନା ।

ଷତ ସାର ରମା ଏକା ରହଲ କ ?

ହଲଧର ବାବୁ ନଜେ ପାଖରେ ରହଲେ ନାହିଁ କ ମୋତେ ଉଠାଇ ଦେଲେ ନାହିଁ ? କେତେ ନଶ୍ଚିନ୍ତ ମଣିଷ । ଆରାମରେ ଶୋଇ ସେ ଘୁଙ୍ଘୁଡ଼ି ମାରୁଛନ୍ତି । ଯେଉଁ ରମାଙ୍କୁ ଘରଣୀ କର ଆଣିବାକୁ ମନ ଆଗ୍ରହରେ ହମହମ ହୋଇ ପାଦ୍‌ଙ୍କ ମନ୍ଦରକୁ ଧାଇଁ ଯାଇଁଥିଲେ ସେଇ ରମାତ ଇଏ । ମୋ:ଫସଲଆଣୀ ଝିଅ ବୋଲ ପସନ୍ଦ ନ ହେଲ, ସେତ ଭନ୍ନ କଥା । ଝିଅଥିଲେ ପୁଅଥିଲେ କେତେ ଜାଗାରେ ସମ୍ବନ୍ଧ ପଡ଼େ । କେଉଁଠି କଅଣ ଘଟେ, ବେଦକୁ ବର ବାହୁଡ଼େ । ସମସ୍ତେ ଘର ସଂସାର କରନ୍ତି । ଆନନ୍ଦରେ ବେଳ କଟାଇବାକୁ ଚେଷ୍ଟା କରନ୍ତି ।

କେଉଁଠି କେବେ କାହାର ସମ୍ବନ୍ଧ ପଡ଼ିଥିଲ । କ କାରଣରୁ ଭାଙ୍ଗିଥିଲ ଏ-ସବୁ ଘଟଣା କେବେ କପର ମନେ ପଡ଼େ । ଭାବବାକୁ କୌତୁକ ଲଗେ । ହସ-ଖୁସି ବେଳରେ ସ୍ୱାମୀ ଆଗରେ କ ସ୍ତ୍ରୀ ଆଗରେ ଫୁଲେଇ ହୋଇ କହବାକୁ ମଜାଲଗେ । ନ ହେଲ ବର କ ନ ହେଲ କନଆଁ ଉପରେ ରାଗରୋଷ ଅଭମାନ କ ଘୃଣା ଆସେ ନାହିଁ ।

କଏ କେଉଁଠି ।

ଦରମୁକୁଳତ ଆଲୋକର ଅଦେଖା ଅନନ୍ତ କଳକା ପ୍ରସ୍ଫୁଟିତ ହୋଇ ଆସି-ଲଣି । କଅଁଳା କୁଲୁକୁଲୁଆ ଉଶ୍ୱାସ ଉଦ୍‌ବିଗ୍ନ ସରଳ ଲପନରେ ଧୀରେ ଧୀରେ ଲେପନ ହେଲଣି ପ୍ରଭୂଷର ଉଷତ ହସ । ଦରୋଟି ବଚନ, ଅଜଣା ବହଗ କଣ୍ଠରେ ଲେଚନର ଗତ ପରଧି ଆର ପାଖରୁ ଭାସି ଆସି କାନରେ ବାଜୁଛି, ମୋଚନ କରୁଛି ସବୁ ଗୋପନ ଶୋଚନ । ପ୍ରକୋଷ୍ଠ ଭତରେ ସଜ ଆଲେକର ଲଜଲଜ ଅବାଧ ପ୍ରବେଶ । ଏଥର ଦବସ ବକଶି ଉଠିବ, ସକାଳ ହେବ । ତଥାପି, ତାଙ୍କର ନଦ ଭାଙ୍ଗିଲ ନାହ । କେଡ଼େ ସୁନ୍ଦର ମନ ପୁଲକା ଦଶୁଛି ତାଙ୍କର ଭାବନା-ହୀନ ନଶ୍ଚିନ୍ତ, ନଦ୍ରିତ ଆନନ୍ଦ ।

ଉଠାଇବ, ପଣ୍ଟରିବ, କାହିଁକି ରମାକୁ ଅବହେଳା କଲ, ମୋତେ ଉଠା-ଇଲ ନାହିଁ । ନିଜେ ହେଲେ ପାଖରେ ରହିଲ ନାହିଁ । ମରଣ ଯାତ୍ରୀକୁ ଏକା ଛାଡ଼ି ଦେଇ ଆସିଲ ? ସେ ତୁମର ଘୃଣାର ପାତ୍ର ନୁହେଁ, ଅନୁକମ୍ପାର ପାତ୍ର । ଜୟ-ପୁରରେ ଅକସ୍ମାତ୍ କ ଦେଖା । ପାର୍ବତୀ ମନ୍ଦିର ଭିତରେ ଯେଉଁ ମୋଫସଲିଆ ଝିଅ-ଟିକୁ ଦେଖି ଛି କରି ହଟେଇ ଆସିଥିଲ, ସେ ଆଉ ଜଣେ ରମା । ଇଏ ତୁମର ପତ୍ନୀର ବାନ୍ଧବୀ । ତୁମର ବନ୍ଧୁର ପତ୍ନୀ । ନିଷ୍ଠୁର ।

ଛାତି ତଳେ ଛପି ଛପି ପତ୍ନୀଙ୍କର ଅବମିକା ମୁଣ୍ଡ ଟେକି ଖିଲ୍‌ଖିଲ୍ ହସୁଛି, ଝୁଜୁ ବୁଜୁ ହେଉଛି । ମୋ'ଓର ସଂସାର ସୁନ୍ଦର ଓ ସୁଖର । ମୋ'ଓର ଦୋଷର ସୁଧର ଓ ଉଦାର । ଶୋଇଲା ମୁହଁରେ ବୋକଟିଏ ଦେବାକୁ ମନ ଉଚ୍ଛନ୍ନ ।

ଜୟଶ୍ରୀଙ୍କର ମୁହଁ ନଇଁ ଆସିଲା । ଜୟଶ୍ରୀଙ୍କ ମୁହଁ ପାଖେଇ ଆସିଲା । ହଲଧରଙ୍କର ଡାହାଣ କପାଳ ଉପରେ ଅସ୍ପଷ୍ଟ ସିନ୍ଦୁର ବିନ୍ଦୁ । ଲମ୍ବି ଯାଇଛି ଆନ୍ଦୁର ଅସ୍ପଷ୍ଟ ଗାର । ଜୟଶ୍ରୀଙ୍କ ଆଖିରେ ବିସ୍ମୟ । ମୁହଁ ଗମ୍ଭୀର ହେଲା । ମନରେ ଅସନା ଭାବନାର ଢେଉ, ଉଠୁ ପଡ଼, ଚଂଚଳ । ଛାତି ଥରଥର । ସେ ମୁହଁ ଟେକି ଠିଆ ହେଲେ ।

ନାକ ପୁଡ଼ା ଥରାଇ କ୍ରୋଧ ଉଠିଲା । ମନର ନୟନ ଆଗରେ କେତେ ଦୃଶ୍ୟ ଭାସିଗଲା । ଦରମଲା ସାପପରି ଭାବନା ଛଟପଟ ହେବାକୁ ଲଗିଲା । ଜଗନ୍ନାଥ ମନ୍ଦିର । ହଲଧରଙ୍କର ଥରଙ୍କୁ ଥର ବାଙ୍କୁଲୀ ଚାହାଁଣୀ । ରାଜ ପଥରେ ଓଲଟି ଦୃଷ୍ଟି, ପରିହାସ କଥା । ରୋଗଣା ରମା ପାଇଁ ବ୍ୟାକୁଳତା । ପାଖେ ପାଖେ ଉନ୍ନିଦ୍ର ରଜନୀ । ସେଇଥି ପାଇଁ ସେ ଉଠାଇଲେ ନାହିଁ । ମରଣ ଯାତ୍ରୀ ରମା କଅଣ ଏଇଆ ଚାହିଁଥିଲା ? ଶେଷ ମୁହୂର୍ତ୍ତରେ ଟିକିଏ ସ୍ନେହ, ଗୋଟିଏ ଚୁମ୍ବନ । ପାର୍ବତୀ ମନ୍ଦିରରେ ଚାରି ଚକ୍ଷୁର ମିଳନ, ଥରକୁ ଥର । ମିଥ୍ୟାବାଦୀ ପସନ୍ଦ ନ ହେଲା ବୋଲି ବାହା-ଘର ଭାଙ୍ଗି ନ ଥିଲା ପରା, ଦେଏଣ ନେଏଣର ସମାଧାନ ହେଲା ନାହିଁ ବୋଲି ଯଉତୁକରୁ ଲେଉଟିଲା ଜୀବନ ହଟେଇ ଗଲା । ତଥାପି ମନ ଝୁରୁଛି ? ଏତେ ଅକୃତଜ୍ଞ ?

ଜୟଶ୍ରୀଙ୍କର ହୁଇ ଆଖି ସଜଳ ହେଲା । ଆଲୁଅର ଶୁଭ୍ର ପାଖୁଡ଼ା ଖୋଲି

ଖୋଲି ଆସୁଛି । ଜାଗରଣର ଢେଉ ମାଡ଼ି ମାଡ଼ି ଆସୁଛି । ଶବଦର ପାରାବାରରେ ତରଙ୍ଗ ଉଠିଲଣି ।

ଜୟଶ୍ରୀ ଥରିଲା ହାତରେ କବାଟ ଆଉଜାଇଲେ । କାହାରି ନିଦ ଭାଙ୍ଗି ନାହିଁ । ଦୁଇ ଖେପାରେ ସୁକାନ୍ତ ବାବୁଙ୍କ ଘର ବାରଣ୍ଡାରେ ଠିଆ ହେଲେ । କେଶ-ବାସ ଉଲୁଟି ପଡ଼ୁଛି । କବାଟରେ ହାତ ମାରି ଡାକିଲେ ରଙ୍ଗିଆ ରଙ୍ଗିଆ—

ପାଗଳ ନିଦ ଭାଙ୍ଗିଲା । ଆଖି ଖୋଲି ହେଉ ନାହିଁ । ଅତି ଦୁର୍ବଳ ଲାଗୁଛି । ଶୁଣି ଥରୁଛି । କିଏ ଡାକୁଛି ? ରମ ଆଖି ଖୋଲିଲା । ଘର ଭିତରେ ବାହାରରୁ ଶୀତଳ ଆଲୁଅ ହସି ଉଠିଲଣି । କିଏ ଡାକୁଛି ? ଜୟଶ୍ରୀ ! କବାଟ ଖୋଲିଲା । ସେ କଅଣ କହୁଛନ୍ତି । ରଙ୍ଗିଆ ଉତ୍ତର ଦେଉଛି । ଡାକ୍ତର ବାବୁ କି ତାଙ୍କ ଘର ମା ଆସି ନାହାନ୍ତି । ଆମ ମାଆଙ୍କୁ ମୁନସଫ ବାବୁ ଔଷଦ ଖୋଇଲେ । କେତେ ରାତିରେ ତ ଗଲେ । ନାଗାଗଙ୍କୁ ଥାଏ । ମାଆଙ୍କର ନିଦ ଆଉ ଭାଙ୍ଗି ନାହିଁ । ଆପଣଙ୍କୁ ଉଠାଇ ବାକୁ କେହୁ ଯାଇ ନାହିଁ ।

ମତେ ତ କାଲ ନିଦ ଘୋଟି ଗଲାରେ ରଙ୍ଗିଆ ।

ଜୟଶ୍ରୀ ରାତି ନ ପାହୁଣୁ ଆସି ପହଞ୍ଚିଲେଣି । ଉତ୍ତମ ମଣିଷ । ପର ଆପଣା ଭେଦ ଜ୍ଞାନ ନାହିଁ । ପିଲା ଦଉଟିକୁ ନଜର କରୁଛନ୍ତି । ସେମାନଙ୍କର ନିଦ ଭାଙ୍ଗି ନ ଥିବ । ହଲଧର ବାବୁଙ୍କ କୋଳରେ ଶୋଇ ଦେଇ ସେ ଆସିଥିବେ । କୁଆରୁଙ୍କୁଣୀ ସେ ହେଲେଣି । ଏଥର ଷଠୀ ମନ ତରଳିବ । କଅଁଳା ପିଲା କୋଳରେ ଦେବ । ପର ପିଲାଙ୍କୁ ଯେ ମୋଓର କରେ ଷଠୀ ବୁଝେଇ ତାକୁ ଶରଧା କରେ । ଯାଚ କରି ଦିଏ । ଜୟଶ୍ରୀ ଜନନୀ ହେବେ ।

ସେଇଆ କର ମା ଜଗଜ୍ଜନନୀ, ତେମେ ପରା ଷଠୀ ବୁଢ଼ୀଈ ।

ରମା ଧୀରେ ଧୀରେ ଉଠି ପଲଙ୍କ ଉପରେ ବସିଲ । ଜୟଶ୍ରୀ ଘରେ ପଶିଲେ। ମଶାରିର ଗୋଟିଏ ପାଖ ଉଠାଇ ମଶାରି ଉପରେ ରଖିଲେ । ଆଖିରେ ଅବାଧ ଲୋତକ ଛଳଛଳ ହେଉଛି । ଅଳୁହା ଈର୍ଷାର ଘୂର୍ଣ୍ଣିବାୟୁ କେତେ ଶ୍ରେଷ୍ଠ ବଡ଼ ଭାବନାର ଆବର୍ଜନା ମନ ମଇଦାନରେ ଟେକା ଭଉଁରି ଖେଳାଇ ଚଞ୍ଚଳ ସ୍ତମ୍ଭ ସୃଷ୍ଟି କରିଛି ।

ଅପା ।

ରମା ଡାକୁଛି । ନୂଆ ଡାକ ! ଜୟଶ୍ରୀଙ୍କର ଛଳଛଳ ଆଖି ଆଗରେ ଦଶି ଯାଉଛି ରୋଗଣୀ ରମାର ଫୁଲିଲ ମୁହଁ । ଅଲରା କେଶ । ଦର ଫୁଙ୍ଗୁଲା ଦେହରେ ଦର ମଇଳା ବାସ । ଆଖିରେ କଜଳ ନାହିଁ । ସିନ୍ଥାରେ ବାସୀ ସିନ୍ଦୂର ଗାର କିନ୍ତୁ କପାଳରେ ସେ ସିନ୍ଦୂର ଚିହ୍ନ ନାହିଁ, ବିନ୍ଦୁ ନାହିଁ । ସଜ ସକାଳର ପବିତ୍ର ନିର୍ମଳ ଶୀତଳ କଅଁଳ ଆଲୁଅ ଭଳି ଝଳି ଉଠୁଛି ରମାର ଓଠ ଦପାଳରେ ହସ ।

ସେ ଚାହିଁ ରହିଲେ । ମନର ଘୂର୍ଣ୍ଣିବାୟୁ ମଥା ନୋଇଁ ଆସିଲ । ଚଳନ୍ତାର ଆବର୍ଜନା ଦୂରକୁ ଫିଙ୍ଗି ହୋଇ ପଡ଼ିଲ । କାନ୍ଥ ଆଡ଼କୁ କଣେଇଁ ଚାହିଁଲେ । କାନ୍ଥାରେ ଟଙ୍ଗା ହୋଇଛି ବଡ଼ ଆଇନା । ଝଟକେଇଛି । ନିଜ ମୁହଁ ପ୍ରତି ଫଳୁଛି । ମଥାର ସିନ୍ଦୂର ଟୋପାରୁ ଲମ୍ବି ଯାଇଛି ଅସ୍ପଷ୍ଟ ସିନ୍ଦୂର ଗାର । ଯେଉଁ ମୁହଁଟି ଆଖିରେ ପଡ଼ିଲ, ସେଇଟି ସଚେତ ଜୟଶ୍ରୀର ନୁହେଁ, ହଳଧରଙ୍କର ।

ସେହିପରି ସେ ଥାଉ । ପୋଛିବାକୁ ହାତ ବଢ଼ାଇବ ନାହିଁ । ପତ୍ନୀତ୍ୱର ବିଜୟ କେତନ । ସବୁ ପତ୍ନୀଙ୍କୁ ତ ଅବଗତ ।

ରମା ହସୁଛି । ହସ ନୁହେଁ, ଅଭିନନ୍ଦନର ପୁଷ୍ପ ବୃଷ୍ଟି । ପତ୍ନୀତ୍ୱର ଅହମିକାର ଅର୍ଚ୍ଚନା । କିନ୍ତୁ, କେତେ ଅବଳ କେତେ ଦୁର୍ବଳ ମୋର ମନ । ହସିଲ ସନ୍ଦେହର ମୃଗତୃଷ୍ଣା କାହିଁକି ଭାବନାକୁ ଚେଉ ଚେଉକା କଲ ? ନିଜ କଳୁଷିତ ସନ୍ଦେହର ପ୍ରତିବିମ୍ବ ଦେଖିଲି । କାହା ପାଖରେ ଆଗ କ୍ଷମା ଚାହିଁବ ?

ଅପା !

ରମା !

କାବା ହୋଇ କଅଣ ଦେଖୁଛୁ ।

ତୋତେ ହିଁ ଦେଖୁଛି । ତୋଓରେ ଅନ୍ଧର ବାଲ୍ୟଶ୍ରୀ ଜନନୀ ପଣିଆଁ । ତୋଓର ଅସନା ମଇଳା ଶୋଗଣା ରୂପ ତଳେ, କେଉଁ ବିମଳ ସୁନ୍ଦର ମନ ମୋହନ ସୁଢ଼ୋଳ ଅଉଟିଳ ଝଟକିଲ ରୂପ । ଅପା ବୋଲି ଡାକିଲି ପରି । ବଡ଼ ଭଉଣୀର ସମ୍ମାନ ଦେଲି,—

ବାକ୍ୟ ସରୁନ ନାହିଁ । ଜୟଶ୍ରୀ ରମା ପାଖରେ ବସିଲେ ରମାର ହାତଟି ଧରିଲେ । ଦେହରେ ଜର ନାହିଁ । ମୁହଁର ଫୁଲ କମି ଆସିଲଣି । ରମା ଭଲ ହୋଇ ଉଠୁଛି । ସେ ଭଲ ହୋଇଯିବ । ସୂକାନ୍ତ ଗସ୍ତରୁ ଫେରି ଦେଖିବ କଅଣ ଏଇ ଅନ୍ଧର ବାଲ୍ୟଶ୍ରୀକୁ ।

ଜୟଶ୍ରୀ ରମାର ଅଲସ କେଶରେ ହାତ ସାଉଁଳଲେ ।

ତମ ଆଖିରେ ଲୁହ କାହିଁକି ?

କହି ପାରିବ ନାହିଁ । ମୋତେ ତୁ କ୍ଷମା କରିବୁ ?

କାହିଁକି ଅପା ? ପିଲା ଦିଓଟିକୁ ଛାତରେ ପକାଇ ଶୋଇ ପଡ଼ିଥିଲି । ସେମାନେ ଉଠି ଜଞ୍ଜାଳ କରିବେ ବୋଲି ତମକୁ ନ ଉଠାଇ ସେ ନିଜେ ଆସି ଜଗି ରହିଥିଲେ । ଔଷଧ ଦେଲେ । ଶୋଇ ପଡ଼ିବାକୁ ମୋତେ ଆକଟି କହି ସେ ଅଧରାତି ପରେ ଚାଲିଗଲେ । ତେମେ ଶୋଇ ପଡ଼ିଲ, ଆସି ପାରିଲ ନାହିଁ ବୋଲି ମୋ ପାଖରେ କ୍ଷମା ନ ଚାହିଁ ତମ ହଳଧରଙ୍କ ପାଖେ କ୍ଷମା ଚାହଁ ।

ସେଇଆ କରିବ । ତୁ ଏତେ ହସୁଛୁ କାହିଁକି ?

ତେମେ ବି ଅନିଦ୍ରା ଥିଲ କି ? ତମ ମୁହଁ କହୁଛି ।

କପାଳ ଉପରେ ରମାର ଆଖି ।

ଦୁଷ୍ଟ ।

ଲୁଚି, ମିଠା ଓ ଚେହା ପ୍ରସ୍ତୁତ ହେଲେଣି । ଗୋମତୀ ନିଜେ ପ୍ରାତଃକୃତ୍ୟ ସମାପନ କଲେଣି । ସକାଳ ସୂର୍ଯ୍ୟର ଆଲୋକ ଘର ବାହାରେ ଢେଉ ଖେଳାଲଣି । ତଥାପି ଡାକ୍ତରଙ୍କର ନିଦ ଭାଙ୍ଗି ନାହିଁ । ତାଙ୍କୁ ଥରେ ଦେଖି ଆସିବାକୁ ଗୋମତୀଙ୍କ ମନ ଉଚ୍ଛନ୍ନ ହେଉଛି । ରାତରେ ସେ କି ଡାକ୍ତର କେହି ଯାଇ ପାରିନ ଥିଲେ ।

ଅମର ବାବୁଙ୍କର ଆଉ ଗୋଟିଏ ପୁଅ ହୋଇଛି । ସେହି କାଠ ଫଳକୁ ଗୋଟିଏ । ଝିଅଟିଏ ପାଇଁ ଇନ୍ଦିରା କେତେ ବ୍ୟାକୁଳ ହେଉଥିଲା । ଦେବାଦେବୀଙ୍କ ପାଖରେ ମାନସିକ କରିଥିଲା । ତା ମନ କାମନା ପୂର୍ଣ୍ଣ ହେଲା ନାହିଁ । ସେ ଏବେ ଚାରି ପୁଅର ମା ।

ରାତିସାରା ଡାକ୍ତର ଅମର ବାବୁଙ୍କ ଘରେ ଜଗି ବସିଛନ୍ତି । ଲେଡ଼ି ଡାକ୍ତର ଛୁଟିରୁ ଫେରି ନାହାନ୍ତି । ଶୁଣା ଯାଉଛି ଶୀଘ୍ର ତାଙ୍କର ଶୁଭ ପରିଣୟ ହେବ । ସେ ଆଉ ଛୁଟି ବଢ଼ାଇବେ କି ସରକାରୀ ଚାକିରିରୁ ଇସ୍ତଫା ଦେଇ ଘର କରଣା କରିବାକୁ ଯିବେ । ବର୍ଷବର୍ଷ ଧରି ଅଗାଧ ପରିଶ୍ରମ କରି ଓ ସହସ୍ର ସହସ୍ର ଟଙ୍କା ଖରଚ କରି ଯେଉଁ ବିଦ୍ୟା ଓ ଦକ୍ଷତା ସେ ଅର୍ଜନ କରିଥିଲେ, ସେଥିରେ ଜଳାଞ୍ଜଳି ଦେବେ । ଗୋଟିଏ ହାତରେ ଛୁଞ୍ଚି ଓ ଆର ହାତରେ କରଛୁଲି ଧରିବେ । ପୁରୁଣା ବିଦ୍ୟାକୁ ଭୁଲି, ନୂଆ ବିଦ୍ୟା ଶିଖିବେ ।

ବୈଜ୍ଞାନିକ ଯନ୍ତ୍ରପାତି ଲୋଡ଼ା ହେବ ନାହିଁ । ଡିପ୍ଲୋମା ସଙ୍ଗେ ସେ ଗୁଡ଼ିକ ସାଇତା ହୋଇ ରହିବ । କାଳକ୍ରମେ କଳଙ୍କ ଲଗିବ । ମୋଟା ମୋଟା ବହି ଗୁଡ଼ିକ ପୋକ କାଟିବେ । ସେ ହେବେ ଜଙ୍ଗଲ ଅଫିସରଙ୍କ ଘରଣୀ । ମିସ୍ ବେହେରା ହେବେ ମିସେସ୍ ରାଓ ।

ସେ ସୁଖରେ ରହନ୍ତୁ ଗୋମତୀ, ଏଗାରଟି ପୁତ୍ର ଓ ଚାରୋଟି କନ୍ୟାଙ୍କର ଜନନୀ ହେଉନ୍ତୁ । ନିଜଘରେ ଶ୍ରେଷ୍ଠ ହସ୍ପିଟାଲ୍ ଖୋଲି ଭୁଲି ଯାଉଥିବା ଡାକ୍ତରଙ୍କ ଶବ୍ଦ ଗୁଡ଼ିକରୁ ଯଦେ ଅଧେ ଉଦ୍‌ଗାର ଆତ୍ମସନ୍ତୋଷ ଲଭ କରନ୍ତୁ ।

ମୋତେ ଅତି ଅସୁବିଧାରେ ପକାଇ ଗଲେ । ଇନ୍ଦିରା ଦେବୀ ବୁଝିଲ । ପେଟ ଭିତରେ ପିଲାଟି ସ୍ଥାନଚ୍ୟୁତ ହୋଇଛି । ନର୍ସ ଜଗି ବସିଥିଲେ ମଧ୍ୟ, ମୋତେ ବି ରହିବାକୁ ପଡ଼ିବ । ଅମର ବାବୁ ଆଶଙ୍କାରେ ଛଟପଟ ହେଉଛନ୍ତି ।

ତୁମେ ଅନିଦ୍ରା ରହି ପଡ଼ିଛ, ଇନ୍ଦିରାକୁ ବଞ୍ଚାଅ । ରମାକୁ ଥରେ ଦେଖି ଆସିବ ନାହିଁ ?

ସେ ଶୋଇ ପଡ଼ିବେ । ସୁସ୍ଥ ହୋଇ ଯିବେ । ହଳଧର ବାବୁ ଲୋକ ପଠା-ଇଲେ, ତା'କୁ ମୋ ପାଖକୁ ଅମର ବାବୁଙ୍କ ଘରକୁ ପଠାଇ ଦେବ ।

ରାତି ପାହାନ୍ତି ନଟବର ବାବୁ ଫେରିଲେ । ଗୋମତୀ ଜଗି ବସିଥିଲେ । ଡାକ୍ତର ଖୁସିହୋଇ ସମ୍ବାଦ ଦେଲେ, ମା ଓ ପୁଅ ଭଲ ଅଛନ୍ତି । ଝିଅ ନ ହୋଇ ପୁଅ ହେଲ ବୋଲି ଇନ୍ଦିରା ମୁହଁ ଶୁଖାଇଲେ । ଅମର ବାବୁ ଅତି ଖୁସି । ଭବିଷ୍ୟ-ତରେ ତାଙ୍କୁ ଯୌତୁକ ଦେବାକୁ ପଡ଼ିବ ନାହିଁ । ପୁଅର ବାପ ସେ, ଯୌତୁକ ଧନ ତାଙ୍କର ପ୍ରାପ୍ୟ । ପୁଅ ଗୁଡ଼ିକ ମଣିଷ ହେଲେ ନିଲମ ଡକାର ସୁବିଧା ସୁଯୋଗ ମିଳିବ ।

ଗୋମତୀଙ୍କର ମନ୍ଦ ମନ୍ଦ ଆଖିରେ ହସିଲ ସନ୍ଦେହ । ଡାକ୍ତର ପ୍ରକାରା-ନ୍ତରରେ ତାକୁ ଭର୍ତ୍ସନା କରୁଛନ୍ତି । କହୁଛନ୍ତି, ତିନୋଟି ଝିଅ ତ ସଂସାରକୁ ଆଣିଲ । ତାହିଁରୁ ଗୋଟିକୁ ପୁଅ କରି ଗଢ଼ି ପାରିଲ ନାହିଁ ? ହେଉ, ଭବିଷ୍ୟତରେ ଯୌତୁକ ଦେବାକୁ ଧନ ସଂଚ ରଖ । ବେପରବାଏ ଓ ମୁକ୍ତ-ହସ୍ତ ହୋଇ ଖରଚ କର ନାହିଁ । ସଂଚୟର ପରିମାଣ ନାହିଁ । ଝିଅ ବାହାଘରର ନିଲମ ଡାକ କେତେ ଉପରକୁ ଚଢ଼ିବ । କେହି ଜାଣନ୍ତି ନାହିଁ ।

ଲିଲି, ମିଲି ଓ ବେବୀ ପଲଙ୍କ ଉପରେ ନିଶ୍ଚିନ୍ତରେ ଶୋଇଛନ୍ତି । ଗୋମତୀ କଣେଇଁ ଚାହିଁଲେ । ପୁଅ ହେଉ ବା ଝିଅ ହେଉ ବୋଲି ସେ କେବେ କେହିଁ ଦେବା ଦେବୀ ପାଖରେ ମାନସିକ କରି ନାହାନ୍ତି । ଡାକ୍ତର ବାବୁ ନଣ ଦାଢ଼ି ଖଣ୍ଡ ବାରାଣସୀ ତୀର୍ଥରେ ସେତକ କଟାଇବାକୁ ପଣ କରି ନାହାନ୍ତି । ପେଟ ଭିତରେ ଛୁଆ ବୁଲିଲେ ମନଟି ତାଆରି ପାଖେ ପାଖେ ବୁଲେ । ଉଆଁସୀ ଅନ୍ଧାର ଭିତରେ

ଦେଖିବାକୁ ଚାହେଁ, ପୁଅ କି ଝିଅ । ଲିଲି ମିଲି ବେବିଙ୍କୁ ସେ ପୁଅ ମାନଙ୍କଠୁଁ ବଳି ମଣିଷ କରିବେ !

ଗୋମତୀ ହସିଲେ । କହିଲେ, ପୁଅଝିଅ ବିଚାର ପରେ ପଡ଼ିବ । ତୁମେ ଆଗ ବିଶ୍ରାମ ନିଅ ।

ଖରା ପଡ଼ିଲାଣି । ଡାକ୍ତରଙ୍କର ନିଦ ଭାଙ୍ଗି ନାହିଁ । କୁନୁ ଓ ଇରାକୁ ସଙ୍ଗରେ ନେଇ ସୁକାନ୍ତ ବାବୁଙ୍କର ଚାକର ରଙ୍ଗିଆ ରାସ୍ତା ଉପରେ ଆସୁଛି । ତାଆର ଚାଲିରୁ ଜଣା ଯାଉଛି ଉଦ୍‌ବିଗ୍ନତାର କାରଣ ନାହିଁ । ରମା ଭଲ ହୋଇ ଆସୁଛି । କେଜାଣି, ଡାକ୍ତରବାବୁଙ୍କୁ ଡାକିବାକୁ ଆସୁ ନାହିଁ ତ ? ଯିବାକୁ କହି ଆସିଥିଲେ, ଯାଇ ପାରିଲେ ନାହିଁ । ଅଭିମାନିନୀ ରମା ଭୁଲ୍ ବୁଝିବ ନାହିଁତ ?

ଦାଣ୍ଡ ଅଗଣାରେ ଗୋମତୀ ରଙ୍ଗିଆକୁ ଅପେକ୍ଷା କରି ରହିଲେ । କୁନୁ ଧାଇଁ ଧାଇଁ ଆସୁଛି । ତାକୁ ଦେଖି ଲିଲି ମିଲି ରାସ୍ତା ଆଡ଼କୁ ଛୁଟି ଯାଉଛନ୍ତି । ବେବୀ ମଧ୍ୟ ଯିବାକୁ ଉଚ୍ଛନ୍ନ ହେଲାଣି । ଗୋମତୀ ତାଆର ହାତଧରି ଅଟକାଇ ରଖିଛନ୍ତି । କୁନୁକୁ ସେ କୋଳେଇ କରିବେ । ବେବୀ ହେବ ସୁକାନ୍ତ ବାବୁଙ୍କ ବୋହୂ । ଏ ସବୁ ଦୂରର କଥା । ରମାକୁ ଛଳେଇ କହିବା ସାର—ମୋ ବବକୁ ତୁ ବାହା ହେଲୁ । ତୋ ବରକୁ ଯଦି ସମୁଦ ନ କରେଁତ, ତୁ ମୋ ନାମ ଧରିବୁ ନାହିଁ ।

ହସ ହସ ରମାର ଥିରିଥିର କଥା ଶୁଭି ଯାଉଛି, ହଁ, ମୋର ସେଥିରେ ରାଜି । ଏବଠୁଁ ମୋ ଲକ୍ଷ୍ମୀ ବୋହୂକୁ ମତେ ଦେଇ ଦିଅ । ତୁଳସୀ ପତ୍ର ପାଣି । ଯିଏ ତମକୁ ହଇହୋ ବୋଲି ଡାକି ଯାଉଁଣ ଆସୁଣୁ ଡାକୁ ଥାଆନ୍ତେ, ସେ ତମର ସମୁଦି ହେବେ । ମାନ୍ୟ ମହତ୍ତ୍ୱ ରଖି କଥା କହିବେ । ଧନ୍ୟଧନ୍ୟ ପ୍ରଶଂସା କରି ଗୁଣ ଗାଇବେ । ମୁଁ ବି ତମ ନାମ ନ ଧରି ସମୁଦୁଣୀ ବୋଲି ଡାକିବି ।

ସୁକାନ୍ତବାବୁ କଅଣ ସତରେ ଅଇଁଗୁଣିଆଁ ଲୋକ ? ନାଇଁ, ନାଇଁ, ସବୁ ଗେରସ୍ତଙ୍କ ପରି ସେ ଟିକିଏ ଖିଲିବି ଲଗାନ୍ତି । ଘରଣୀ ମାନଙ୍କର ହସିଲ ମୁହଁକୁ ଗମ୍ଭୀର କରିବା, କାନ୍ଦୁରି କରିବା ଓ ଆଖିରୁ ଲୁହଧାର ଗଡ଼ାଇବାକୁ ବେଳେ-ବେଳେ ଗେରସ୍ତ ମାନଙ୍କର ଆଗ୍ରହ ହୁଏ । ଆଖିରୁ ଦି ଧାର ଲୁହ ନ ଝରିଲେ ପର ଘରୁ ଥିଅର ବାପ ମା, ଭାଇ ଭଉଜ ଓ ସେମାନଙ୍କର ସ୍ନେହ ଶ୍ରଦ୍ଧା ମନେ ପଡ଼ନ୍ତା ନାହିଁ । ସରଳମନା ରମାଟି ମୁହଁ ଖୋଲି କହିଦିଏ । ଆଉମାନଙ୍କର ଅଭିମାନ ପେଟ ଭିତରେ କୁହୁଳୁ ଥାଏ ।

ରଙ୍ଗିଆ ଅପି ପଢ଼ିଲାଣି । ପିଲ ଦିଓଟିଙ୍କୁ ଗାଧୋଇ ପାଧୋଇ ଭଲ ଜାମା ପିନ୍ଧାଇ ବୁଲାଇ ପଠାଇଛି ରମା ? ସୁକାନ୍ତ ବାବୁ ଅଧରାତିରେ ଫେରି ଆସିଲେଣି ? ଇଞ୍ଜିନିୟର୍ ଲୋକ, କାଳ ବେଳ, ଖରାବରଷା, ଆପଦ ବିପଦ ମାନନ୍ତି ନାହିଁ । ରମା କହେ, ତାଙ୍କ କଥା କଅଣ କହିବଲେ ଭଉଣୀ, ପାଠୁଆ ହୁଣ୍ଡାଙ୍କୁ ବାଟବିଶ୍ୱାସ ନାହିଁ । ବସିଲଠୁଁ ଉଠି ପଳାନ୍ତି, କେବେ ଫେରିବେ କେହି ଜାଣନ୍ତି ନାହିଁ । ତରତର ହଦେ କହିଲେ, ଫାଉଁ କରି ଉଠନ୍ତି । ମୋର ଦେହ ସହା ହେଲଣି ।

ଛୁନ୍ ଧାଇଁ ଆସୁଛି ପାଖକୁ । ତାକୁ ଧରି କାଖ କରି ମୁହଁରେ ବୋକ ଦେବାକୁ ଗୋମତୀ ବେଞ୍ଚର ହାତ ଛାଡ଼ି ଆଗେଇ ଗଲେ । ପୁଅଟିଏ ସେ ।

ବନ ପଥରେ ଜିପ୍ ଗାଡ଼ି ଧାଇଁଛି । ଡ୍ରାଇଭର ପୁନମ୍ ସିଂ ଷ୍ଟିୟରିଂ ଧରି ଅଛି ସତର୍କତା'ର ସହିତ । ଖାଲଢ଼ିପ କଟାଇ ଝିଟ୍‌କୋଗିଆ ବାଙ୍କବାଙ୍କିଆ ଉଠାପଡ଼ା ଅସମ-ପୂର୍ଣ ରାସ୍ତାରେ ଗାଡ଼ି ଚଳାଇଛି । ମଦନଶା ସମ୍ପୂର୍ଣ୍ଣ ଛାଡ଼ି ନାହିଁ । ଆଖି ରଙ୍ଗିଲ ଦିଶୁଛି । ଗୁଣ୍ଡ ଗୁଣ୍ଡ ହୋଇ ଗୋଟିଏ ଗୀତର ଦିଗୁରି ପଦ ଆବୃତ୍ତି କରୁଛି ।

ଛୋଟିଆ, ଦୁର୍ବଳ, ଛବିଶି ପଇଁତିରିଶ ବର୍ଷିଆ ଯୁବକ । ମୁଣ୍ଡରେ ଲମ୍ବ କେଶ । ଫ୍ରେଂଞ୍ଚକଟ୍ କଳା ମିଚମିଚ ନଣ । ଗୋରା ଭୁଲ୍‌ଭୁଲିଆ ମାଇଚି ମୁହଁକୁ ସୁନ୍ଦର

ଦଶୁଛି । ଆଖି ଲକ୍ଷିଛି ରାସ୍ତା ଉପରେ । ଭଲ ଡ୍ରାଇଭର୍ ବୋଲି ତାଆର ଖ୍ୟାତି ଅଛି । ମଟର ଗାଡ଼ିର ଯନ୍ତ୍ରପାତି ସମ୍ବନ୍ଧରେ ଭଲ ଧାରଣା ଅଛି । କ୍ଲିନର୍ ପଦରୁ ସେ ଉଠିଛି । ମେକାନିକ୍ ହେବ ବୋଲି ଆଶା କରୁଛି । ଅଳ୍ପ ଘରର ପୁଅ, ଖରଚ ପ୍ରତି ନଘା ନାହିଁ ।

ଡେଙ୍ଗୁ ଡେଙ୍ଗୁକା ଛୋଟବଡ଼ ଅରଣ୍ୟ ଘେରା ପାହାଡ଼ ମାଳର କଡ଼େକଡ଼େ ରାସ୍ତା । ଅସଂଖ୍ୟ ଛୋଟ ବଡ଼ ନାଳ । ଉପରେ କାଠ ପୋଲ । କେତେ ନାଳ ଉପରେ ପୋଲ ନାହିଁ । କେତେ ସ୍ଥାନରେ ପୋଲ ଭାଙ୍ଗିଛି । ରାସ୍ତାକୁ ବୁଲାଇ ନିଆ ହୋଇଛି । ପୁରୁଣା ଗାଡ଼ିକୁ ପୁନାମ୍ ସିଂ ସତର୍କତାର ସହିତ ଚଳାଇଛି । ସବୁ ହୁଗୁଲା । ବ୍ୟାଟେରି ନଷ୍ଟପ୍ରାୟ । କେଉଁଠି ଦଗାଦେବ, ରଥ ଅଟକିବ, କିଏ କହିବ ? ଇଞ୍ଜିନ୍ ଥରେ ବନ୍ଦ ହେଲେ, ତାକୁ ଷ୍ଟାର୍ଟ କରିବା କାଠିକର ପାଠ । ସେଲ୍‌ଫ ଧରୁ ନାହିଁ । ଠେଲି ଠେଲି ଷ୍ଟାର୍ଟ କରିବାକୁ ପଡ଼ିବ ।

ବଡ଼ ସକାଳୁ ସେମାନେ ଶୃଙ୍ଖଳଗୁଡ଼ା ଛାଡ଼ିଥିଲେ । ସୁକାନ୍ତର ଦେହରେ ଅଳପ ତାତି ଥିଲା । ହରି ପିଅନ୍ ସତର୍କ କରିଥିଲା, ଖରା ପଡ଼ିଯିବା । ପାହାନ୍ତିଆ ପବନ ଜଳୁଆ ଦେହରେ ଲାଗିଲେ ଜର ବଢ଼ିବ ଆଜ୍ଞା, ଦୁଇଘଣ୍ଟା ଡେରିକରି ଗଲେ ଆମର ଗୁଡ଼ଘର ପିମ୍ପୁଡ଼ି ଖାଇ ଯିବେ ନାହିଁ । ସୁକାନ୍ତ ଅଳପ ହସି କହିଲା, ମୋ ପାଇଁ ଚିନ୍ତା କର ନାହିଁ, ରୋଗବଇରାଗ ମୁଁ ମାନେ ନାହିଁ । ଡରିଲେ ସେମାନେ ଡରାଇବେ, ମାଡ଼ି ବସିବେ । ବାହାରି ପଡ଼ିତ ।

ବଡ଼ ଲୋକଙ୍କୁ ଉତ୍ତର ନାହିଁ । ଠୋକାଠାକରା ଅଣ୍ଡୁଆ ଅଫିସର ଚନ୍ଦ୍ର ସୂର୍ଯ୍ୟ ମାନନ୍ତି ନାହିଁ । ବାରମ୍ବାର ଦେଖିଲେ ମଧ୍ୟ ମନରେ ଚେତନା ପଶେ ନାହିଁ । ଗୃଲରେ ବାବା । ଆଗ ସିଟ୍‌ରେ ଡ୍ରାଇଭର୍ ପାଖରେ ସୁକାନ୍ତ ବସିଲା । ପଛ ସିଟ୍‌ରେ ହରି । ଦୁଇ କଡ଼ରେ ବେଡ଼ିଂ, ସୁଟ୍‌କେଶ, ଫାଇଲ୍ ଓ ନକସା ବିଡ଼ା । ସର୍ଭେ କରିବାର ଯନ୍ତ୍ର ପାତି, ରୋଷାଇ ବାସନ ଉପକରଣ ଓ କାଠ ପେଡ଼ିରେ ଭର୍ତ୍ତି ହୋଇଥିବା ବାସନକୁସନ, ଇତ୍ୟାଦି ।

ଶୃଙ୍ଖଳଗୁଡ଼ା ଅନେକ ଦୂରରେ ରହିଲାଣି, ସେମାନେ କୋଡ଼ିଏ ମାଇଲ୍ ଆଗେଇ ଆସିଲେଣି । ଶୃଙ୍ଖଳ ଗୁଡ଼ା ନାଳ, ଜଳ ଭଣ୍ଡାର, ଗ୍ରାମ ମୁଣ୍ଡ ବଙ୍ଗଳା,

କାନ୍ତରଙ୍କ ସୁବୁଦ୍ଧି, ଓଭର୍‌ସିଅର ଅମ୍ବିକା ବାବୁ ଓ ଶୋଭାବତୀ ପ୍ରତ୍ୟକ୍ଷରୁ ପରୋକ୍ଷ ହେଲେଣି । ଛତୋଷ୍ଟ ଦିନର କର୍ମ, ଶ୍ରମ, ଭାବନା, ଉଦ୍‌ବିଗ୍ନତା, ଉତ୍ତେଜନା, ରହସ୍ୟ,ଦ୍ୱନ୍ଦ୍ୱ, ଦମନ ଓ ଶମନ ପ୍ରତ୍ୟକ୍ଷର ଉହାଡ଼ରେ ପରୋକ୍ଷର ବିସ୍ତୀର୍ଣ୍ଣ ପ୍ରାନ୍ତରରେ ଅସ୍ପଷ୍ଟ ଓ ସ୍ୱପ୍ନିଳ ହେଲେଣି ।

ସେହି ସ୍ୱପ୍ନିଳ ସମଷ୍ଟି ଉପରେ ମନଗହନରେ କେତେ ଉପରକୁ ମଥା ଟେକିଛି ସଫଳତାର ଆଲୋକ ସ୍ତମ୍ଭ ! ଖୋଲନ୍ ଗୁଡ଼ା ଜଳ ଭଣ୍ଡାର, ଖୋଲନ୍ ଗୁଡ଼ା ନାଳରେ ପ୍ରବାହିତ କଲକଲ ଜଳର ହସହସ ଫେନିଳ ପ୍ରବାହ, ସାଫଲ୍ୟର ଶୁଭ୍ର, ଶୀତଳ, ଶୋଭନ ଆଲୋକରେ ଝଟକି ଉଠୁଛି । ଜଳ ମାଡ଼ୁଛି । ଦିଶି ଯାଉଛି ଅଗାମୀ ଭବିଷ୍ୟତର ମୋହନ ରୂପ । ଶସ୍ୟ ଶ୍ୟାମଳ ହଗହଜା କେଦାର । ଦିଶି ଯାଉଛି ଅଗାମୀ ନରନାରୀଙ୍କର ହସିଲ ମୁହଁ, ନାଚଲ ଗୋଡ଼ । କାନରେ ବାଜୁଛି, ସେମାନଙ୍କର ମନ ପୁଲକା ଲହଡ଼ିଆ ଗୀତ, ବାଦ୍ୟର ତାଳେ ତାଳେ ଡେଙ୍ଗ ଡେଙ୍ଗକା— ।

ସୂର୍ଯ୍ୟ କେତେବେଳୁ ଉଠିଲେଣି , ପାହାଡ଼ ମାଳର ସବୁଜ-ସାଗର ସେପାଖେ ସେ ଲୁଚି ରହିଛନ୍ତି । ମାଳୁଆ କାଳିଆ ଓ ଫକ୍‌କାଳିଆ ବାଦଲ ଆକାଶ ଛାତରେ ପାଲଟାଣି ଭାସି ଯାଉଛନ୍ତି । ପବନ ହେଲଣି ଶୀତଳିଆ । ଦୂର ପର୍ବତର ଡେଙ୍ଗଡେଙ୍ଗକା ମଥାମାଳ ଧୂଆଁଳିଆ ଦିଶୁଛି । ବାଦଲ ତଳକୁ ନଇଁଛି । ବରଷା ହେଉଛି । ବର୍ଷ ତହଟଲ ପରେ ସେ ମଡ଼ ଆସିବକି ? ବରଷା କୁଟେ ଭାବନା ନାହିଁ । ଖୋଲନ୍‌ଗୁଡ଼ା ନାଳର ଫୁକାର ଗୁଡ଼ିକ ଅଧା ଖୋଲ ହୋଇଛି । ଅଧିକ ପାଣି ଆସିଲେ ଅମ୍ବିକା ବାବୁ ସେଗୁଡ଼ିକ ଅନ୍ତର ଖୋଲଇ ଦେବେ । ସେ ପାଖ ନାଳର କବାଟ ବନ୍ଦ କରାଇବେ । ଖଲସୀ-ନାଳରେ ପାଣି ଛୁଟିବ । ଭୟ ନାହିଁ ।

ଯାଉ ଯାଉ ଗାଡ଼ି ଉଠାଣୀ ବାଟରେ ଅଟକି ଯାଉଛି । ଠେଲ ଠେଲ ଷ୍ଟାର୍ଟ କରବାକୁ ସମୟ ଲଗୁଛି । ସୁକାନ୍ତ ଓ ହର ଗାଡ଼ିକୁ ଆଗକୁ କି ପଛକୁ ଠେଲ-

ଠେଲି କ୍ଲାନ୍ତ ହୋଇ ପଡ଼ିଲେଣି ! ଡ୍ରାଇଭର ସୁନାମ୍ ସିଂ ବାରମ୍ବାର ଗାଡ଼ିର ବନେଟ ଖୋଲି ସଜାଡ଼ିବାକୁ ଚେଷ୍ଟା କରୁଛି । ମନେମନେ ସେ ହସୁଥିବ । ଡେରି-କରି ବାହାରି ଥିଲେ ବାଟରେ ଗଲି ଆଇଲି ଲୋକଙ୍କର ସାହାଯ୍ୟ ମିଳନ୍ତା । କାହାରି ଦେଖା ଦର୍ଶନ ନାହିଁ ।

ଅଚଳ ଗାଡ଼ିକୁ ଦୁର୍ବଳ ଅଘାଧୁ ପିଅନ ଓ ଜଗୁଆ ଅବାଧ ହାକିମଙ୍କୁ ଠେଲିବାକୁ ପଡ଼ୁଛି । ନୋହିଲେ ଅପେକ୍ଷା କରି ବସ । କେତେବେଳେ ଗ୍ରାମଲୋକେ ହାବୁଡ଼ିବେ, ଗାଡ଼ି ଠେଲିବେ, ଗାଡ଼ି ଚାଲିବ । ହାକିମଙ୍କର ରାଗ ମରୁଛି । ଅତି ଦୁର୍ବଳ ଅଧାଖାଇଆ ପରି ଦିଶିଲେ ମଧ୍ୟ ସେ କିଛି କହୁ ନାହାନ୍ତି । ତୁଣ୍ଡ ଖୋଲିଲେ କାହିଁକି କଥା । ଜୟପୁର ପହଞ୍ଚିଲେ ତେଜ ବାହାରିବ । ଜଙ୍ଗଲିଆ ଘାଟି ରାସ୍ତାରେ ଅଧେବାଟ ନ ଆସୁଣୁ ସାରଥିର ଅସମର୍ଥତା ପାଇଁ ତା ଉପରେ କୋପ କରିବାକୁ ଓ ଲାଲ ଆଖି ଦେଖାଇବାକୁ ମନରେ ଶଂକା ଆସୁଛି ।

ଉଠାଣୀ ବାଙ୍କୁଲି ରାସ୍ତାରେ ଗାଡ଼ି ଧୀରେ ଧୀରେ ଚାଲିଛି । ବାଆଁ ହାତ ଖାଖ ଖଣ୍ଡୀ, ଡାହାଣହାତ ଗଭୀର ଉପତ୍ୟକା, ଝୋଟ ନାଳର ବୁଲଣିଆ ଅବସ୍ଥିତି । ବାଘମାମୁଁର ବିହାର କ୍ଷେତ୍ର । ବଡ଼ ବଡ଼ ଚମ୍ପା ଗଛର ବଣ । ଗଛ ଗୁଡ଼ିକର ଗଣ୍ଡିକୁ କୁଣ୍ଢାଇ ଧରିଲେ ହାତ ପାଇବ ନାହିଁ । ଉପତ୍ୟକାର ତଳୁ ଉଠି ରାସ୍ତା ପଞ୍ଜନ ମୁଣ୍ଡ ଟେକିଛନ୍ତି । ହଳଦିଆ ଫୁଲ ପ୍ରତି ଗଛରେ ଭରି ହୋଇଛି । ଉତ୍କଟ ମହକରେ ଦଶଦିଗ ଚହଟି ଉଠୁଛି । ବଣ ଦେବୀଙ୍କର କ୍ରୀଡ଼ା ସ୍ଥଳୀ ।

ରମାର ଚମ୍ପା ଫୁଲରେ ଶରଧା ।

ସେ ଆସୁଛି । ଦିନର ଆଲୁଅ ଲିଭିଲିଭି ଯାଉଛି । ରମା ଆଜ ଆଲୁଅ ବାଲ୍ୟ ହୋଇ ନାହିଁ । ନିଜ ହାତରେ ନିଜକୁ ସଜାଇଛି । ଗଭାରେ ଗୁଞ୍ଜାଇଛି ଚମ୍ପା ଫୁଲର ମାଳ । ଥିରିଥିରି ଲଜଲଜ ଚାଲି । ଗୋଟିଏ ହାତରେ ଜଳଖିଆ ପ୍ଲେଟ । ଆର ହାତରେ ପାଣିଭରା କାଚଗ୍ଲାସ । ରମା ମହକି ଉଠୁଛି । ହସହସ ସରମିଲି ମୁହଁ । ତାଆରି ଦୁଇ ପିଲାର ଜନନୀ । ସୁକାନ୍ତର ମୁହଁକୁ ଭଲକରି ସେ ଚାହୁଁ ନାହିଁ । ମଣୁଛି ସତେକି, ନିଜକୁ ସଜାଇବା ଲଜ୍ଜାର କଥା, ଗୋଟାଏ ଅପରାଧ ।

ଗୋମତୀ  ଆସି ଯିବେ  ପରା । ପଚାରିବେ ହସହସ ହୋଇ,  କଣେଇ କଣେଇଁ ଚାହିଁ, ଆଜ  କାହିଁକି ରଜ ସଜବାଜ ଗୋ, ମଥୁରାରୁ  ଫେରିବେକି ନଟ-ନାଗର, ମୋ ସୁକାନ୍ତ ସୁନ୍ଦର ?

ଉମା ର ଥିର କଥା କାନରେ ବାଜୁଛି, ଏମିତି ସେ କହନ୍ତି ମ, ଏମିତି ଗୋମତୀ ତୁମକୁ ଉପହାସ କରନ୍ତି । ତମକୁ ସେ ଅତି ସ୍ନେହ କରନ୍ତି ଗୋ ।

ଆକାଶରେ କଳାଧୂମର ମେଘ । ତପନ ଲପନ ଲେପନ କରୁଛି । ପବନର  ବେଗ ହୋଇଛି ସଘନ । କୋରାପୁଟର ଅଡ଼  ପାହାଡ଼  ମାଳର ମଥାନ  ମାନ  ଧୂଆଁଳିଆ ବାଦଲ ଜାଲରେ ବେଷ୍ଟିତ ହେଲଣି । ବରଷା ହେବ କି ? ମାଳୁଆ  ମେଘ ଏମିତ ଅସ୍ଥନକ ମାଡ଼ି ଆସେ, ଛୁଟି ଦେଇ ଯାଏ । କିନ୍ତୁ, ବର୍ଷା ଋତୁର ଦିନ  ଆସିଲଣି । ରଜ ସଂକ୍ରାନ୍ତି ପାଖେଇ ଆସିଲା । ମୋଟେ ତିନଦିନ ଅଛି ।  ଧରିତ୍ରୀ  ଜନନୀ ରଜ-ସ୍ୱଳା ହେବେ । ବର୍ଷା ଲାଗି ରହିବ । ମେଘମାଳ ଦଳକୁ ଦଳକୁ ନଇଁ ଆସୁଛନ୍ତି ।

ଦ୍ୱିପ୍ରହର ଗଡ଼ି ଗଲଣି ।

ଗୋମତୀ ଝରକା ବାଟେ ଆକାଶକୁ ଚାହିଁଲେ । ମନ  ଦକଦକ  ।  ତାଙ୍କର ତିନିଝିଅଙ୍କୁ ସଙ୍ଗରେ ଧରି ଜୟଶ୍ରୀ ଇନ୍ଦିରାର ଟିକି ପୁଅକୁ  ଦେଖିବାକୁ  ଯାଇଛନ୍ତି । ଲୁନୁ ଓ ଇରାଙ୍କୁ ମଧ୍ୟ ସଙ୍ଗରେ ନେଇଛନ୍ତି ।  ଦୁଇଟି ରିକ୍ସାରେ  ବସି  ସେମାନେ ଗଲେ । ପାର୍ବତୀ ସଙ୍ଗରେ ଯାଇଛି । ଟିକି ପୁଅଟିଏ ଦେଖିବାକୁ  ବଡ଼  ପିଲମାନେ ହମହମ ହେଲେ । ଇରା ଜୟଶ୍ରୀଙ୍କର କୋଳ ଛାଡ଼ିଲା ନାହିଁ ।  ସେ ଆପେ  ବେବୀକୁ ନେଇ ଛାତରେ ଜାକିଚଲେ ।

ଆଗରୁ ସେ ଅଗ୍ରହ ଜଣାଇଁ ଦେଲେଣି, ଏବର୍ଷ ଏ ଚାରିଝିଅ ଆମ ଘରେ ରଜ ପାଳିବେ । ମୁଁ ତାଙ୍କୁ ସମ୍ଭାଳିବି, ତାଙ୍କ ସଙ୍ଗେ  ଖେଳିବି । ସେମାନେ ମତେ

ଆଦର ଚଲେଣି  କେହି ନାହିଁ କରିବ ନାହିଁ କହୁଛ । ନାସ୍ତିକଲେ  ମୋ ଅଗ୍ରହ ସିନା ଭାଙ୍ଗିବ ଜଗନ୍ନାଙ୍କ ମନ ବ କଡ଼ା  ହେବନି । ଅଜନ୍ନ ସେ  କେତେ  ବଦଳ କଲେଣି ।  ନା, ମୁ ସେ କଥା କହିବ ନାହିଁ ।

ହୁଅ ରୁକ୍ମିଣୀ ସେ ହେଲଣି ଗୋ ରମା,  ଏଥର  ଠାକୁର ତା  କୋଳରେ ବଙ୍କଚେ ଦେବେ । ଜୟଶ୍ରୀର ଅଗ୍ରହ ଆମେ  ଭାଙ୍ଗିବା  ନାହିଁ  ।  କଅଣ  ହେଲକି, ଦିନ ଦୁଇଟାରେ ସେ ଏପରି ବଦଳ ଗଲ ?  ମୁହଁରେ  ସୁଗନ୍ଧ  ପଉଡ଼ର  ବୋଳା ହୋଇ ନାହିଁ, ଗାଲରେ ଗୋଲପୀ ପରଖ ବ ଓଠରେ ଲାଲ ରଙ୍ଗ  ଲେପି  ନାହିଁ । ଶେ ଡ଼ରେ ନକ୍ସାକରି ଫୁଲପକ ପକାଇ ଅଲତା ବୋଳ ନାହିଁ । ଦେହରେ  ଫିନ୍-ଫିନ୍ ପାତଳ ଜାମା ବ୍ଲାଉଜ୍ ଉପରେ ସୁକ୍ଷ୍ମୀନ ନେଲନ୍ ରଙ୍ଗୀନ୍ ଶାଢ଼ୀ ନାହିଁ ।

ଦିନରାତ ମୋ ପାଖରେ ଦୁଇପ୍ରାଣୀ ଜଗି ବସିଲେ ।  ମା ଭଉଣୀ ଓ  ବାପ-ଭାଇଙ୍କଠୁଁ ବଳ ମୋର ଚେତ ଅଚେତ ଅବସ୍ଥାରେ ସେବା କଲେ । ପିଲ ଦୁଇଟିଙ୍କୁ ମୋ ପାଖରୁ ଛାଡ଼ିଲେ ନାହିଁ । ନିଜେ ରଖିଲେ । ଏତକ ମୁଁ ଜାଣେ  ।  ଆଜି  ପାହା-ନ୍ତାରୁ ଜୟଶ୍ରୀ ମତେ ଭଉଣୀ କରିଛନ୍ତି । ସେ ହୋଇଛନ୍ତି ମୋର ଅପା ।

ସତେକି ?

ହଁ, ଗୋ । ତାଙ୍କ ସ୍ନେହ ଶ୍ରଦ୍ଧାରେ ମୁଁ କିଣି  ହୋଇ  ଯାଇଛି  ।  ଦେଖୁଛ ମତେ , ଜରୁଆ, ରୋଗଣା, ଝିଙ୍ଗାରଲ ମୁହଁ ଦେହକୁ ? ନିଜ ଦରବରେ ନିଜ  ମନ ମାଫି ସଜାଇ ଦେଇଛନ୍ତି । ମନାକଲି, ମାନିଲେ ନାହିଁ । କାଲେ ତାଙ୍କ ମନ  ଉଣା ହେବ ବୋଲି ବାଧା ଦେଲି ନାହିଁ । ଅଡ଼ୁଆ ଲାଗୁଛି । ଦରି ପାଚଲ ବ୍ରଣଠା  ଟେଣକ ଉଠୁଛି । ଆ ସି ସିନା ଖୋଲୁନଣି, ମୁହଫୁଲ  କେଡ଼େ  କଦର୍ଯ୍ୟ ଦିଶୁଛି ଗୋମଣା, ପିଲ ଦୁଇଟା ମୋ ମୁହଁକୁ ମୁହଁ ଡରୁଛନ୍ତି, କାନ୍ଦ ଉଠୁଛନ୍ତି ! ପାଖ ପଶୁ ନାହାନ୍ତି ।

ରମା ପଲଙ୍କ ଉପରେ କଡ଼େଇ ଶୋ ଇଛି ।  ପାଖରେ  ଗୋମଣା  ବସିଛନ୍ତି । ରମା ର ଅଖିରୁ ଲୁହ ଝରଲ । ବାମ ଅଖିର ଲୁହ ଟଣ୍ଡାଧାରୁଆ ନାକଦଣ୍ଡା  ଡେଇଁ ଡାହାଣ ଅଖିରେ ପଶୁଛି । ଅଖିର କଜଲ  ଧୋଇ  ଅସୁଛି । କେଡ଼େ  ଯତ୍ନରେ ଜୟଶ୍ରୀ ତ ଅର ମୁଣ୍ଡବାନ୍ଧି ଦେଇଛନ୍ତି । ଗଭାରେ ଶ୍ରୀଘର  ବଉଳ  ଫୁଲର  ମାଳ

ବେଢ଼ାଇଛନ୍ତି । ସୀମନ୍ତରେ ସିନ୍ଦୁର ଗାର । ଭ୍ରୂଲତା ମଝି କପାଳ ଉପରେ ସିନ୍ଦୁର ବିନ୍ଦୁ । ଆଖିରେ କଜଳ । ପାଦରେ ଅଳତାର ନକ୍ସା ।

ଅଳଜୁକ୍ଷୀ ଜୟଶ୍ରୀ, ସଫା ପାଟଳ ଶାଢ଼ୀ ପିନ୍ଧାଇ ଦେଇଛନ୍ତି । ଗହଣା ନାଇ ଦେଇଛନ୍ତି । ତଥାପି, ମୁହଁ ଅସନା ଦିଶୁଛି । ଫୁଲିଲା ମୁହଁ ଆଉ ପ୍ରକାର ଦିଶୁଛି । ଦଉପାଟଲି ବ୍ରଣ ଉପରେ ଔଷଧ ଲଗାଇ ଶୁଖି କଣିଆଁ ଧୋବ କନାର ପଟି ଡାକ୍ତର ପକାଇ ଦେଇଛନ୍ତି ।

ଗୋମତୀ ରମାର ଆଖିରୁ ଲୁହ ପୋଛିଲେ । ହସହସ ହୋଇ କହିଲେ, କେଡ଼େ ଉତ୍ତମ ଆମ ଜୟଶ୍ରୀ । ମୁଁ ଯାହା କରିବାକୁ ମନ କରିଥିଲି, ସେ ତାହା କରି ଦେଇଛନ୍ତି । ରୋଗୀକୁ ସଫା ସୁତୁରା ରଖିଲେ ଭଲକରି ସଜାଇ ଦେଲେ ତା ମନ ପ୍ରଫୁଲ୍ଲ ରହେ । ରୋଗ ବେଗେ ଆରୋଗ୍ୟ ହୁଏ । ଡାକ୍ତର ବାବୁ କହି-ଗଲେ ପରା, ଦେହରେ ଅଳପ ଜର ଅଛି । ବ୍ରଣଟି ଭଲକରି ପାଚିଲେ ସେ ଅପରେ-ସନ୍ କରିବେ । ପୂଜପାଣି ବାହାରି ଗଲେ ଜର ଛାଡ଼ିବ । ମୁହଁର ଫୁଲ କମିବ । ଏଥିକୁ ପିଲଙ୍କ ପରି କାନ୍ଦୁଛ କାହିଁକି ?

ତୁମେ ତାଙ୍କୁ କହି ଦିଅ, ସେ ଯାହା ଔଷଦ ଦେଉନ୍ତୁ ପଛେ ଆଉ ଇଞ୍ଜେକ୍-ସନ ଫୋଡ଼ନ୍ତୁ ନାହିଁ ।

କହି ଦେବି । ସେ କି ମୋ କଥା ମାନିବେ ? ଛୁଞ୍ଚି ଫୋଡ଼ିବାକୁ ତାଙ୍କୁ ଭଲ ଲଗେ । ଖେଳୁ ଖେଳୁ ଲିଲି ଝୁଣ୍ଟି ପଡ଼ିଲା । ଆଣ୍ଠୁର ମଳଚମ ଛିଣ୍ଡି ଟିକିଏ ରକ୍ତ ବୋହିଲା । ପିଲଟାକୁ ଫୋଡ଼ି ପକାଇଲେ । ମାଛ କାଟିଲି ବେଳେ ପନିକି ଦାଢ଼ ଲଗି ମୋ ହାତ ପାପୁଲି ଖଣ୍ଡିଆ ହେଲା । ଏଣୁ ତେଣୁ କେତେ କଥା କହି ମତେ ଭୁଲାଇଲେ । ଲମ୍ବ ଛୁଞ୍ଚିରେ ଫୋଡ଼ିଲେ । ଇନ୍ଦିରାର ପୁଅ ହୋଇଛି । ପୁଣି ସେଇ ଲମ୍ବ ଛୁଞ୍ଚିଟା ନେଇ ଯାଇଛନ୍ତି । ଆର ଜନ୍ମରେ ସେ ବିରୁଡ଼ି ଥିଲେ ।

ରମା ହସିଲା । ଧୀରେ ଧୀରେ ଉଠି ବସିଲା । କହିଲା, ତାଙ୍କୁ କହିମ, ଜୟଶ୍ରୀ ଅପାଙ୍କୁ ଦି ଶୃହ ଥର ଫୋଡ଼ିବେ । ତାଙ୍କ ଦେହର ଚର୍ବି କମିବ । ବୁହାଳିଆ ପଣ ଯିବ । ଉହାଣ୍ଟିଗିରି ଭାଙ୍ଗିବ । ଭଲଲୋକ ହେଲେବି ତାଙ୍କର ଜବରଦସ୍ତିଆ ଢଙ୍ଗ ।

ବାଧା ଦେବାକୁ ମତେ ଡରମାଡ଼େ । ଦେଖୁନ, ନାହି କରୁଣ୍ଣ, ମତେ, ବଞ୍ଚିଲ ମଣିଷଠାକୁ, ଅଦ୍ୟାଙ୍ଗିଣୀ କରି ସଜାଇଛନ୍ତି ।

ଗୋମତୀ ଚମକି ଉଠିଲେ । ରମା ଏପରି ଭାବୁଛି କି ହାନସ୍ଥିତ ସେବା ଶୁଶ୍ରୂଷା କରି ଜୟଶ୍ରୀ ଭାବିଛନ୍ତି ଯେ ରମାର କଅଣ ଭଲମନ୍ଦ ହୋଇଯିବ, ସେ ଅର୍ଦ୍ଧାଙ୍ଗିଣୀ ହେବ ? ଏଇଥି ପାଇଁ ରମାର ଆଖିରେ ଲୁହ ?

ସେ ସାମାନ୍ୟ ଗମ୍ଭୀର ହେଲେ । କହିଲେ, ତୋ'ଠରେ ଏପରି ଭାବିବା ଉଚିତ ନୁହେ । ଜୟଶ୍ରୀ ସରଳ ମଣିଷ । ମନଟି ଖୋଲା ଓ ନିର୍ମଳ । ବେଶୀ ଭାବିଚନ୍ତି ସେ କଥା କହନ୍ତି ନାହିଁ କି କାମ କରନ୍ତି ନାହିଁ । ମନକୁ ଯାହା ଆସିଲା—

ମୁଁ ଉପହାସ କରି କହିଲି । ତମ ଗୋଡ଼ ଧରୁଛି ସମ୍ବନ୍ଧିଣୀ, ଅଜାଣତରେ ପାଟିରୁ ମୋର କି କଥା ବାହାରି ଗଲା, ମତେ ସେ ଭଉଣୀ କରିଛନ୍ତି, ତାଙ୍କ ଆଗରେ କହିବ ନାହିଁ । ମୋତେ ପଛେ ମରଣ ହେଉ, ତାଙ୍କ ସ୍ନେହ ତାଙ୍କ ଆଗ୍ରହ ପାଇଁ ସେ ଅନୁତାପ ନ କରନ୍ତୁ ।

ଏଥିକୁ ପୁଣି ଆଖିକୁ ଲୁହ ଆଣୁଛ କାହିଁକି ? ଜୟଶ୍ରୀ ସରଳ ମନା । ଅଭି-ମାନକାଠା, ଦେଖୁନ, ଝଡ଼ ବରଷା ମାଡ଼ି ଆସୁଛି, ତଥାପି ମନା ନ ମାନି ପାଞ୍ଚଟି ପିଲାଙ୍କୁ ସଙ୍ଗରେ ନେଇ ଇନ୍ଦ୍ରାବତୀର ଟିକି ପୁଅକୁ ଦେଖି ବାକୁ ଯାଇଛନ୍ତି ।

ବରଷା ଛୁଟୁଛି । ଛୁଟିଛି ପ୍ରବଳ ବେଗରେ ତୋଫାନ । ବଣ ପାହାଡ଼ ଅନ୍ଧାର କରି ଘୋଟି ରହିଛି ମେଘ । ସମସ୍ତେ ତାଅରି ଉଦରେ ଆତ୍ମଗୋପନ କରିଛନ୍ତି । ସବୁ ହୋଇଛି ଏକାକାର । ରାସ୍ତାକଡ଼ ନାଳରେ ପ୍ରବଳ ବେଗରେ ଛୁଟିଛି ଜଳଧାର । ଦଶହାତ ଆଗକୁ ରାସ୍ତା ଦିଶୁ ନାହିଁ । ଆବଡ଼ା ଖାବଡା ଜଙ୍ଗଲ ରାସ୍ତାରେ ବର୍ଷା ଅନ୍ଧାରରେ ଜିପ୍ ଚଲାଇ ଆଗକୁ ନେବାକୁ ପୁନାମ ସିଂର ସାହସ ହେଉ ନାହିଁ ।

ଦୁଇ ପାଖର ଲମ୍ବିଲ ଡାଲ ସଙ୍କୀର୍ଣ୍ଣ ପଥର ମୁଣ୍ଡଉପରେ ଦୋହଲୁଛି । ତୋଫାନର ବେଗରେ ଛୋଟବଡ଼ ଡାଲ ମଡ଼ ମଡ଼ ହୋଇ ଭାଙ୍ଗି ପଡ଼ୁଛି । ଜିପ୍ ଉପରେ ପଡ଼ିଲେ ହାଡ଼ ଗୋଡ଼ ଚୂନା ହୋଇ ଯିବ ।

ପୁନାମ ସିଂର ବୁଦ୍ଧି ହଜିଲା । ବେଳ ହେଲଣି ଛଅଟା । ମେଘ ଅନ୍ଧାର ସଙ୍ଗେ ସଙ୍ଗେ ଘୋଟି ଆସିବ ଅନ୍ଧାର ରାତି । ପାଖରେ ଗାଁ ଗଣ୍ଡା ନାହିଁ । ବଣ-ରାସ୍ତାରେ ଅନ୍ୟ କାହାର ଜିପ୍ ବା ଟ୍ରକ୍ କ୍ୱଚିତ ଆସେ ଯାଏ । ଦୁର୍ଗମ ଝଡ଼ବରଷା, ବିଜୁଳି ଘଡ଼ଘଡ଼ି ଝଲସା, ଚମକା ଅବେଳରେ ଶଗଡ଼ିଆ ମାନେ ଗାଁ ମୁଣ୍ଡରେ କେଉଁଠି ଆଶ୍ରା ନେଇଥିବେ । କାହାର ସାହାଯ୍ୟ ମିଳିବ ନାହିଁ । ଜିପ୍ ଥରେ ଅଟକିଲେ, ପୁଣି ଠେଲି ଠେଲି ନକଲେ ଆଉ ଷ୍ଟାର୍ଟ ହେବ ନାହିଁ । ରାସ୍ତା ଉଠାଣି ପଡ଼ିଛି ।

ସମୁଦ୍ରର ଲହଡ଼ି ପରି ଜଳବରଷଣ ଭୁହାକୁ ଭୁହା ମାଡ଼ି ଆସୁଛି । ପୁନାମ ସିଂ ଧୀରେ ଧୀରେ ଗାଡ଼ି ଚଳାଇ ଉଠାଣି ଉପରକୁ ନେଲା । ଖୋଲା ସ୍ଥାନ ପାଇ ଗାଡ଼ି ଅଟକାଇ ଇଞ୍ଜିନ୍ ବନ୍ଦ କଲା । ଚଢ଼ା ରାସ୍ତା । ସେ ଜାଣେ, ଉଠାଣି ଉପରୁ ଲମ୍ବା ଗଡ଼ାଣି ପଡ଼ିବ, ସରିବ ବଡ଼ ନାଳ ପାଖରେ । ଆଗ ନାଳ ଉପରେ ପୋଲ ନାହିଁ । ଜିପ୍ ନାଳ ଭିତରେ ଯାଏ । ବର୍ଷା ଲାଗି ରହିଲେ ପାଣି ଫୁଲି ଉଠେ । ଶଗଡ଼ ହେଉ କି ଜିପ୍ ହେଉ ପାଣି ନ ଖସିଲେ ପାର ହେବା ସମ୍ଭବ ନୁହେଁ । କେତେ ଘଣ୍ଟା ଅଟକି ଯିବାକୁ ପଡ଼େ ।

ଜିପ୍‌ର ପୁରୁଣା ଘୋଡ଼ଣୀ ଛାତ ଠାଏଠାଏ ଫାଟି ଯାଇଛି । ଫାଙ୍କ ବାଟେ ପାଣି ଭିତରେ ପଡ଼ୁଛି । ଯେତେ ଏ ପାଖ ସେପାଖ କଲେ ମଧ୍ୟ ବିଛଣା ଓ ଅନ୍ୟାନ୍ୟ ପଦାର୍ଥକୁ ଅଗାଧୁ ଶୁଖିଲା ରଖି ପାରି ନାହିଁ । ସବୁ ଓଦା ହୋଇଛି । ସେ ନିଜେ ଓଦା ସରସର ହେଲଣି ।

ସୁକାନ୍ତର ଅବସ୍ଥା ଏକାପରି । ଜବୁଥୁ ଦେହକୁ ସେ ଆବୃତ୍ତ କରି ରଖିଛି । ମୁଣ୍ଡରେ ମଫ୍‌ଲର ଗୁଡ଼ାଇଛି । ତଥାପି, ଛାତି ଥରୁଛି । ନିଶ୍ୱାସ ଗରମ । ଦେହର ଗୋଟିଏ କଡ଼ ଓଦା ହେଲଣି । ମନ ଉଚ୍ଛନ୍ନ ହେଉଛି । ବିରକ୍ତ ଲାଗୁଛି । ଏକ ଝେପାରେ ଡେଇଁ ହନୁମାନ ପରି ବଣ - ପାହାଡ଼ ନଦୀନାଳ, ଗ୍ରାମ ଓ ପ୍ରାନ୍ତର

ପାରି ହୋଇ ଜୟପୁରର ବନ୍ଦୀ ଘରେ ଉପସ୍ଥିତ ହେବାକୁ ମନ ହେଉଛି । ସେ ନିରୁପାୟ । ସେ ଆଜି ବନ୍ଦୀ । ତାଆର ଜିପ୍ ସତେକି ଗୋଟିଏ ସେଲ୍ !

କି ଅପରାଧ ସେ କରିଛି ଏବଂ କାହାର କି କ୍ଷତି କରିଛି ? କିଏ ସେ ଅଭି-ଯୋଗକାରୀ ? କେଉଁ ବିଚାରକ ତା ଉପରେ ଓ ତାଆର ସହଯାତ୍ରୀ ଦୁହିଙ୍କ ଉପ-ରେ ଅଶୁଭକ ଦଣ୍ଡ ବିଧାନ କରିଛନ୍ତି ? ଅରଣ୍ୟ ମଝିରେ ରାସ୍ତା ଉପରେ ସେମାନେ କାରାଦଣ୍ଡ ଭୋଗୁଛନ୍ତି । ପ୍ରକୃତିହିଁ ପ୍ରହରୀ ! ବର୍ଷା ମୂଷଳଧାରାରେ ପଡ଼ୁଛି । ବିଧା, ଗୋଇଠା, ଚାପୁଡ଼ା । ବତାସ ଲଗି ଗଛଲତାର ମୁଣ୍ଡ ହଲ ବିଦ୍ରୂପ । ଘନଘନ ବିଜୁଳିର ହସିଲ ଉପହାସ । ଚଡ଼ଚଡ଼ିର ଛୁଗୁଲ ଆହ୍ୱାନ,ଆସିବୁ ପଦାକୁ ?

କଅଣ କରିବା ଅଗାଧୁ ? କେତେବେଳେ ଯାଏ ବାଟରେ ଏପରି ଅଟକି ରହିବା ? ଏ ବର୍ଷାତ ଶୀଘ୍ର ଛାଡ଼ିଲା ପରି ମନେ ହେଉ ନାହିଁ ।

ଅଗାଧୁ ଉତ୍ତର ଦେଲ ନାହିଁ । ସେ ଓଦା ହେଲଣି । ସେ ଅଭିମାନ କଲଣି । ଚମ୍ପା ଫୁଲର ପୁଡ଼ାକୁ ସଯତ୍ନରେ ବିଛଣା ଉପରେ ରଖିଲ । ତା ଉପରେ ଥୋଇଲ ବଣମଲ୍ଲୀ ଫୁଲର ପୁଡ଼ା । ଦୁଇଜାତି ଫୁଲର ମିଶାମିଶି ବାସ ଜିପ୍ ଭିତରେ ଉଚ୍ଛୁଳି ଗନ୍ଧ ଚହଟି ଉଠୁଛି । ପାଚିଲା ଆମ୍ବର ମହକ ତହିଁରେ ମିଶି ପବନକୁ ଓଜନିଆଁ କରୁଛି । ପାଚିଲା କେନ୍ଦୁ ଓ ଚାର କୋଳିର ଗନ୍ଧ ନାହିଁ । ସେ ଗୁଡ଼ିକ କାହାକୁ ଦୂରରୁ ନିମନ୍ତ୍ରଣ କରନ୍ତି ନାହିଁ । ପାଖକୁ ଗଲେ ଆଖିରେ ପଡ଼ନ୍ତି । କିନ୍ତୁ, ଏ ରଙ୍ଗ-ଢଙ୍ଗର ଗୋଲିଆ ଚାରିକଣିଆଁ ଛୋଟ ଛୋଟ ପଥର ଗୁଡ଼ିକ ନଈ ନାଳରୁ ଆହ-ରଣ କରି ଜିପ୍‌ରେ ଗଦାଇବାର ଉଦ୍ଦେଶ୍ୟ କଅଣ ? ପେପର୍ ୱେଟ୍ କରିବାକୁ ପଥର ଲୋଡ଼ା ହେଲେ ଜୟପୁର ଦାଣ୍ଡରେ ଯଥେଷ୍ଟ ଅଛି ।

ଅଗାଧୁର ନୀରବତାହିଁ ସୁକାନ୍ତକୁ ଉତ୍ତର ଦେଲା, ଆମେ ଆଦେଶର ଦାସ । ତଥାପି, ମୁଁ ସତର୍କ କରୁଛି, ଜୟପୁରରେ ଚମ୍ପାଫୁଲ ମିଳେ, ବଣ ମଲ୍ଲୀର ଅଭାବ ନାହିଁ । ଖଟା ଆମ୍ବ ବା କଅଣ ହେବ ? କେନ୍ଦୁ ଓ ଚାର କୋଳି ତମ ପିଲାଏ ଖାଇବେ ନାହିଁ । କଳା ଧଳା ନାଲି ଉପଲ ଖଣ୍ଡ ଏଣେ ତେଣେ ପଡ଼ିବ । ଦେଖିନୁ ଆଜି, ଦଶଦିଗ ଅନ୍ଧାର କରି ମେଘ ଘୋଟି ଆସୁଛି । ବାରମ୍ବାର ଜିପ୍ ଅଟକାଇ ଏ ସବୁ ଆହରଣ କରିବା ଲୋଡ଼ା ନାହିଁ । ଜରୁଆ ଦେହରେ ଜିପ୍ ଠେଲି ଷ୍ଟାର୍ଟ

କରିବାରେ କି ଆନନ୍ଦ ମିଳୁଛି ? ସମସ୍ତ ବାଜିବ । ହଇରାଣ ହେବା । ସଙ୍କାଳୁ ଆପଣ ଉପାସରେ ବାନ୍ଧିରଖିଛନ୍ତି ।

ଡ୍ରାଇଭର୍ ପୂନାମ ସିଂ ଭୂନ ହୋଇ ବସିଛି । ଚାଲକୁ ଓହ୍ଲାଇ ବାଡ଼ଖଣ୍ଡେ ଟାଣିବାକୁ ମନ ହେଉଥିବ । ଉପାୟ ନାହିଁ । ସେ କଣେଇ ଗୃହୁଁଛି । ତା'ର ଆଖି ଆଗରୁ ସାବଧାନ କରି ଦେଲଣି, ମଟେ କିଛି ପଚାର ନାହିଁ । ଅନେକ ହାକିମ ଦେଖିଲଣି । କ୍ଷଣକୁ ଗୋଟିଏ ପ୍ରକୃତି । ଏକକୁ ଆରେକ ବଡ଼ ମଣନ୍ତି । ସମସ୍ତେ ଭାବନ୍ତି, ମୁଁ ସବୁଠୁଁ ବୁଦ୍ଧିଆ, ସଚ୍ଚୋଟ, କାର୍ଯ୍ୟଦକ୍ଷ । ମୋ ବିନା କାମ ଅଚଳ ହେବ । ମୁଁ ଗଲେ ସବୁ ଭୁସୁଡ଼ି ପଡ଼ିବ । ମୁଁ, କେବଳ ମୁଁ !

ପୂନାମ ସିଂ ମନେ ମନେ ହସୁଛି । କହୁଛି, ଅଭ କେମ୍ନି ଟପୁଡ଼ିଲେ ପିତା । ଅଭ ଦସ୍ତଖାର ପଚାରସ୍ତ୍ର ନଜ ପାଖରେ ନଜେ ଦେଇ ଜର ଭୋଗୁଛି । ଭୂମର ନାଲ ଭୁସଡ଼ିବ କି ? ଅମ୍ବିକା ବାବୁ ନିଶ୍ଚିନ୍ତରେ ଘରେ ବସିଥିବେ । କାବାଟ ଝରକା ବନ୍ଦ କରି ଭଗବତ ଗୀତା ମୁଖସ୍ଥ କରୁଥିବେ । ସୁବୁଦ୍ଧି ନଜ ଘର ଭିତରେ ଆଲ୍‌ଥ ଜାଳ ଲଭର ହାର ହିସାବ କରୁଥିବେ । ବଙ୍ଗଳା ଘର ବାରଣ୍ଡାରେ ବସି ଶୋଭାବତୀ ଖିଲ୍ ଖିଲ୍ ହସୁଥିବ । ମୁଣ୍ଡରେ ଜଡ଼ାଡେଲ ବେଳ ବର୍ଷାକୁ ଗୃହ ଭାନୁଥିବ । ଉତ୍ତରର ସହଳ ସହଳ ସେ ପଳ ଇଲେ ।

ବର୍ଷାର କୋପ କମି କମି ଆସୁଛି । ପବନର ବେଗ ଊଣା ହେଲଣି । ରହି ରହିକା ବିଜୁଳିର ଝଲକ, ଘଡ଼ଘଡ଼ି । ସଞ୍ଜର ଅନ୍ଧାର ଘୋଟି ଆସୁଛି । ଶୀଘ୍ର ନ ଗଲେ ଅସୁବିଧାରେ ପଡ଼ିବାକୁ ହେବ । ପୂନାମ ସିଂ ଛତାଧରି ଆଗର ନାଳକୁ ଦେଖି ଆସିଲଣି । ଦ୍ରୁତ ବେଗରେ ବଳା ଗଣ୍ଡିଏ ପାଣି ଗଳୁଛି । ସାବଧାନତାର ସହିତ ନେଲେ ଛପ୍‌ଟି ପାରି ହୋଇଯିବ । ଅଧିକ ବିଳମ୍ବ କଲେ, ଦୂର ପାଣି ନାଳରେ ପଡ଼ିଲେ, ପାଣିର ଗଭୀରତା ବଢ଼ିବ । ସେପାଖକୁ ଯାଇ ହେବନାହିଁ । ପୁଣି

ପାଣି କମିଯାଏ ଅପେକ୍ଷା କରିବାକୁ ହେବ । କେତେ ବେଳ ଲାଗିବ କିଏ ଜାଣେ ? ଗାଡ଼ି ଚଳାଇବାକୁ ସୁନାମ ମନ କଲଣି ।

ସୁକାନ୍ତ ଆଖି ଖୋଲିଲା, ଆଖି ମଳିଲା । ବାଧ ହୋଇ ଅଟକି ଆଳସ୍ୟରେ ବେଳ କଟାଇବା ଜୀବନରେ ବହୁବାର ଘଟି ଯାଇଛି । ନିଶ୍ଚଳ ହୋଇ ବସିଲେ ଆଖି ପତା ମାଡ଼ି ମାଡ଼ି ପଡ଼େ । ତନ୍ଦ୍ରୀ କା ସ୍ୱାନନିଦ୍ରା ଲହଡ଼ି ପରେ ଲହଡ଼ି ପରି ଆସେ ଓ ଭାଙ୍ଗେ । ବାରମ୍ବାର ଉଜଳଅ ଭାବନା ଆସେ ଓ ଯାଏ । ଘଟିଲା ଘଟଣାର ସ୍ମୃତି ପାତଳ ବାଦଲ ପରି ମୁହୂର୍ତ୍ତକରେ ଘୋଟି ଆସେ, ପୁଣି ବଦଳାଇ ଭାସି ଯାଏ ଅତୀତର ବାଇଗଲା ଅବାସ୍ତବ ଭବିଷ୍ୟତକୁ । ସେ କାଳର ଅପୂରଣ ଆଶାର ସୁନେଲୀ ରଙ୍ଗରେ ରଞ୍ଜିତ ହୁଏ ନ ଘଟିଲା ଘଟଣାର ଘଟିଲା ଭବିଷ୍ୟତ । ଅଜାଣତରେ ନୀରବ ଓଠରେ ଉଦେ ଉପହାସ ଭଷା ।

ପୁଣି, ଭଯ୍ନ ହୁତାଶାର ଉତ୍କଣ୍ଠିଆ କଳାଧୂମର ମେଘ ଅତୀତର ବିଗତ ଭବିଷ୍ୟକୁ ଅମା ଅନ୍ଧାରରେ ଆଚ୍ଛାଦ ଦିଏ । ବିକଳ୍ପର ବିକଳ ବିଳାପ ବିକଟ କରେ ସେହି ଅନ୍ଧାର ଭିତରେ ବିକଟ ଘଟନ । ଛନ ଛନ ମନ ରୋଦନ କରେ । ଥର ଥର ହୁଏ ଛାତିର ସ୍ପନ୍ଦନ । ଜଳଜଳ ଚାହିଁଲା ଆଖିକୁ ବର୍ତ୍ତମାନର ଚଳନ୍ତା ଦୃଶ୍ୟ ଦେଖାଯାଏ ନାହିଁ । କାନକୁ ଶବଦ ଶୁଭେ ନାହିଁ । ଆଖିରେ ଲାଖେ ଅଜଣା ଭୟର ଛାୟା ।

ସୁନା ଝିଅଟିକା ସୁଭଦ୍ରା ବିଦ୍ରୋହ କରିଛି । ପିତା ମାତାଙ୍କର ଅବାଧ ହୋଇଛି । ସତ୍ତା ଅପାର କଥା ମାନି ନାହିଁ । ସୁକାନ୍ତର ଗଳାରେ ବାହୁ ବେଷ୍ଟନ କରି ନେହତକ ଝୁରାଇ କହୁଛି, ତମ ଛଡ଼ା ମୁଁ ଆଉ କାହାର ପତ୍ନୀ ହୋଇ ପାରିବି ନାହିଁ । ତେମେ ମୋର ଜୀବନ ସର୍ବସ୍ୱ । ମତେ ଦୂରେଇ ଦିଅନାହିଁ । ମୋତେ ସଙ୍ଗରେ ନିଅ । ନାହିଁ କଲେ ମୁଁ ଜୀବନ ହାରିବି ।

ନିଶା ଗର୍ଜୁଛି । ଝଡ଼, ବର୍ଷା ।

ସୁକାନ୍ତ ।

ମୁଁ ତାକୁ ବିବାହ କରିବି ଅପା ।

ଛି, ନିର୍ଲଜ ! ଦରିଦ୍ର ମୂଲିଆର ପୁଅ । ପରଘରେ ଥାଇ ପେଟ ପୋଷିବାକୁ ପାଠ ପଢ଼ୁଛୁ । ନିଜ ଭରଣ ଅସମ୍ଭବ । ଧନୀ ଘରର ଅଳିଅଳ ଅଜ୍ଞାନ ଝିଅର ହାତ ଧରିବାକୁ ତୋର ଲୋକହସା ଦୁଃସାହସତ କମ୍ ନୁହେ । କାଲି ସକାଳୁ ତୁ ଏ ଘରଛାଡ଼ି ଚାଲି ଯା । ତୋ କପାଳରେ ଭିକ ମାଗିବା ଯୋଗ ଅଛି । ତୋ ମୁହଁ ଚାହିଁ ଯୋଗାଏ ନାହିଁ । କୁଳାଙ୍ଗାର ଟୋକା । ରାତି ନ ପାହୁଣୁ ଏ ଘର ଛାଡ଼ି ତୋତେ ଚାଲି ଯିବାକୁ ହେବ । ନୋହିଲେ ମୁଁ ମୋ ଜୀବନ ହାରି ଦେବ ।

ସୁଭଦ୍ରା ହସି ଉଠିଲା । କହିଲା; କେହି କୁଆଡ଼େ ଯାଅନା ମାଁ, ମୁଁ ଚାଲିଯିବି। ମୋ'ର ଚିନ୍ତା ଆଉ କାହାକୁ ଲାଗିବ ନାହିଁ । ସୁଭଦ୍ରା ହସହସ ହୋଇ ଘରୁ ବାହାରି ଗଲା । ସତୀ ଅପା ତାଆର ଅନୁଗମନ କଲା ।

ସମସ୍ତେ ସେମାନେ ସମ୍ମତ ହେଲେ । ସୁକାନ୍ତ ଭଲ ପିଲା । ସୁକାନ୍ତ ମଣିଷ ହେଉ । ସୁଭଦ୍ରା ପିଲାଟା । ସେ ଚାଲାଖ ଚତୁର ହେଉ । ଭଲ ମନ୍ଦ ବୁଝୁ । ଘର-କରଣା ଶିଖୁ ।

ସୁଭଦ୍ରାକୁ ସେ ବିବାହ କରିଛି । ସୁଖ ଆନନ୍ଦରେ ଜୀବନ କଟୁଛି । ଲୁନୁ ଓ ଇରା ତା'ର ଦୁଇଟି ସନ୍ତାନ । ସମସ୍ତେ ଦିଶି ଯାଉଛନ୍ତି ତା'ର ଆଖିକୁ । ଜୟପୁର ଘର । ସୁଭଦ୍ରା ପାଖରେ ସୁକାନ୍ତ । ତା କୋଳରେ ଇରା । ସୁକାନ୍ତ କୋଳରେ ଲୁନୁ । ସୁଖର ସଂସାର ।

ଘର ଭିତରକୁ ପଶି ଆସୁଛି ରମା, ଆଲୁର ବେଶ । ଆଖିରେ ବିସ୍ମୟ । ଓଠରେ ସ୍ମିତ । ହାତରେ ଜଳଖିଆ ପ୍ଲେଟ । ପଚାରୁଛି, କିଏ ମ ସେ ?

କିଏ ? କାହାନ୍ତି ?

ସୁକାନ୍ତ ଆଖି ଖୋଲିଲା ।

ଝପ୍ ଛୁଟିଛି । ଆଲୁଅ ନିଷ୍ପ୍ରଭ । ସଳଖ କାହୁଆ ରାସ୍ତାର ବେଶୀ ଦୂର ଦେଖା ଯାଉ ନାହିଁ । ଆଲୋକର ଦୁଇଟି ସ୍ତମ୍ଭ ଅଦୂରରେ ଏକାଠି ହୋଇ ଝରିଲା ବରଷା ଭେଦ କରି ଖଣ୍ଡେ ଦୂର ଯାଏ ଉଜ୍ଜ୍ୱଳ କରୁଛି । ବୃଣ ପାହାଡ଼ ପଛରେ

ବହିଲଣି ଦୁଇ ପାଖେ ଗମ୍ଭୀର ବଲ । ଝଡ଼ ତୋଫାନ ନାହିଁ । ବରଷାର ଖବ୍ରତା କମିଛି । ବରଗୁମ୍ଫା ପାଖେଇ ଆସିଲ । ଜୟପୁର ବେଶୀ ଦୂର ନାହିଁ । ରେଡ଼ୀୟମ୍ ଡ୍ୱାଚ ସୂଚାଇ ଦେଇଛି ରାତି ଆଠଟା ଡେଇଁଲଣି । ଘଣ୍ଟାକ ଭିତରେ ଜୟପୁର ହେବ ।

ଆଜ ରାତିରେ ସେ ଦରଓଦା ହୋଇ ଫେରି ଆସିବ ବୋଲି ରମା କେବେ ଅନୁମାନ କରି ନ ଥିବ । ପିଲା ଦୁଇଟିଙ୍କୁ କୋଳରେ ପୁରାଇ ନଶ୍ଚିନ୍ତରେ ସେ ଶୋଇ ପଡ଼ିଥିବ । ଡାକ ଶୁଣି ସେ ଉଠି ଆସିବ । ଦେଖିବ, ସୁକାନ୍ତ ଫେରିଛି । ହୁଏତ ତାର ବ୍ୟାକୁଳତା ପ୍ରକାଶ ପାଇବ । ଏଁ ଖାଇବେ କଅଣ ? ଭେକରେ ତାଙ୍କର ପେଟ ଗର୍ଜୁଥିବ । ଯାଏଁ, ଚୁଲି ଲଗାଏ ।

ଶୁଣ ମ ରମା ।

ତୁମେ ଲୁଗା ଜାମା ପାଲଟି ପାଲଟି ମୁଁ ଜଳଖିଆ ଟିକେ କରି ଆଣେ । ଅଗ ଖାଇପିଇ ସୁସ୍ଥ ହୁଅ, ସେଇଠୁ ତମର ସବୁ କଥା ଶୁଣିବି । ପିଲଙ୍କୁ ଉଠା ନା । ଅରେ ଉଗିଆ, ବାବୁଙ୍କୁ ଏ ଶୁଖିଲା ଜାମା ଦେବୁଟି । ସେ ବଦଳ ପକାନ୍ତୁ । ମୁଁ ଚୁଲି ଲଗାଏଁ ।

ସେମାନଙ୍କୁ ସବୁ ଗଳ୍ପ ପରି ଲଗେ । ଅନ୍ୟମନସ୍କ ହୁଁ ହୁଁ ଜଣାଇ ଦିଏ ସେମାନେ ଅଧା ବିଶ୍ୱାସ କରନ୍ତି । ଯେଉଁ ଆପଦ ବିପଦ ସଙ୍ଗେ ଲଢ଼ି ସେଇମାନଙ୍କର ଭବିଷ୍ୟତ ପାଇଁ ଶୃଙ୍ଖଳକୁ ଜାବୁଡ଼ି ଧରିବାକୁ ପଡ଼େ ସେ ସବୁ ଭୟଙ୍କର ଘଟଣାକୁ ସେମାନେ ମଣନ୍ତି ସ୍ୱପ୍ନବାଦୀ ଲେଖକର ଆନମାନକ ଆଶାର ଅସାର କଳ୍ପନା ପରି

ରମା ସେମାନଙ୍କ ମଧ୍ୟରୁ ଅଲଗା ନୁହେଁ ।

ସୁକାନ୍ତର ଆଖି ମାଡ଼ି ପଡ଼ୁଛି ।

ଦେହ ଅଜ ଭଲ ଲାଗୁଛି ଢନ୍ତୁ ମନ ହୋଇଛି ଚଞ୍ଚଳ । ଶ୍ରୀବଦନ ହେଲ ସେ ଗଲେଣି, ଖବର ପଠାଇଲେ ନାହିଁ । ଘରର ଖବର ପାଇଲେ ନାହିଁ । ମରଣ ଭୂଆରୁ ସେ ଫେରି ଆସିଛି ଏକଥା ସେ ଶୁଣିବେ ସିନା ଜାଣିବେ ନାହିଁ । ଦେଖିବେ, ପୁରୁଣା ସଂସାର ପୂର୍ବ ପରି ଅଛି, ପୂର୍ବପରି ଚାଲିଛି । କାମ, କାମ ହୋଇ ସେ ଯାଇଥ ।

ଯାହା ସେ ହେଉନ୍ତୁ । ଜଗନ୍ଜନନୀ ତାଙ୍କୁ ସୁସ୍ଥ ଓ ନିରାପଦରେ ଫେରାଇ ଆଣନ୍ତୁ ।

କୁନୁ ଓ ଇରାକୁ ପାଖରେ ଶୁଆଇବାକୁ ଜୟଶ୍ରୀ ଅନୁରୋଧ କଲେ । ଇରାକୁ ଯେତେ ବୁଝାଇଲେ ସେ ମାନିଲା ନାହିଁ । ରମାକୁ କୁଣ୍ଢାଇ ଧରିଲା । କାନ୍ଦିଲା । ସେ ନ ଗଲେ କୁନୁ ଯିବ ନାହିଁ ବୋଲି ମନା କରିଦେଲା । ଆଲମାରୀ କଡ଼ରେ ଲୁଚିଲା । ଜୟଶ୍ରୀ ମନଦୁଃଖ କରିଥିବେ ।

ହଲଧର ବାବୁ କହିଲେ, ମାଆଙ୍କ ପାଖରେ ଥାଉନ୍ତୁ ସେମାନେ ।

ଜୟଶ୍ରୀ କହିଲେ ହଉ, ଆରେ କୁନୁ, ଅଉ ମୁଁ ତୋ ମାଉସୀ ହେବ ନାହିଁ କି ତୋ ପୁଅକୁ ଦେଖାଇବାକୁ କାଲି ନେବ ନାହିଁ । ଇରା ମୋର ଟୁନା ଝିଅ ସେ ମୋ ସଙ୍ଗେ ଶୋଇବ ।

ଇରା ରମାର ବେକକୁ କୁଣ୍ଢେଇ ଧରିଲା ।

ଅବୁଝାଙ୍କ ପିଲା ଦ'ଟା ।

ସେମାନେ ଫେରିଗଲେ । ସେମାନଙ୍କର ଋଣ ମୁଁ ସୁଝାଇ ପାରିବ ନାହିଁ । କୁନୁ ଓ ଇରାକୁ ସେମାନେ କେତେ ଭଲ ପାଆନ୍ତି । ଟିକି ଦିହେଁ ଶୋଇ ପଡ଼ିଲେଣି ।

ହରି ଓ ପାର୍ବତୀ ଆଜି ରାତିରେ ଘରେ ରହିବାକୁ ମନା କରି ଦେଲେ । ଦାଣ୍ଡ ଘରେ ଏକା ରଙ୍ଗିଆ ଶୋଇଛି । ଡର ଡର ଲାଗୁଛି । ରାତି ନଅଟା ହେଲାଣି । ବାହାରେ ଝିପିଝିପି ବର୍ଷା । ଘଡ ଘଡର ଅନ୍ଧାର ।

ରମା ଆଖି ବୁଜି ଶୋଇଛି । ତାହାଙ୍କ ଆଖି ପତା ଗୋଦରିଆ ଲାଗୁଛି । ଆଖି ତଳ ବ୍ରଣ ଉପରର ପଟ୍ଟି ଅଡ଼ୁଆ ଲାଗୁଛି । ବ୍ୟଥା କମିଲାଣି, ତଥାପି ପରାସ ଲାଗୁଛି । ନିଜ କଲା କର୍ମର ଫଳ

ସବୁ ତ ସେଇଆ । କାହିଁକି ଏପରି କଲ, ଫଳ ପାଇଲ ତ ? ଅନେକେ ଏପରି କହନ୍ତି । ନିଜ କୃତ କର୍ମ ଓ ତାହାର ଫଳକଥା ଭୁଲି ଯାଇଥାନ୍ତି । ସମସ୍ତେ ସବୁବେଳେ ସବୁକଥା ଧୀରସ୍ଥିର ହୋଇ ଭାବିଚିନ୍ତି ଫଳାଫଳ କଅଣ ହେବ ଗଣନା କରି ଆଗେଇ ପାରନ୍ତି ନାହିଁ । ଭଲ ହେବ ଭାବି କଲେ ମଧ୍ୟ ଭୁଲ ହୋଇ ଯାଏ । ଜାଣିଲା କଥା ପାସୋରି ଯାଏ । ଝୁଣ୍ଟିଲେ ମଣିଷ ବାଟ ଚଲେ । ତଥାପି, ସେ ଗୃହ୍ନ ଗୃହ୍ନ ଜଳକା ହୁଏ ।

ଘୋଡି ଆସୁଛି କ୍ଲାନ୍ତିହରା ନିଦ । ମୁଣ୍ଡ ଝାଙ୍କୁଛି । ଏତେ ଦିନ ହେଲା କାହିଁକି ସେ ଫେରିଲେ ନାହିଁ ? ନିଜକୁ ସେ ମନେ କରନ୍ତି ଅତି ବୁଦ୍ଧିଆ । ଆପଦ ବିପଦକୁ ଉପହାସ କରନ୍ତି ।

ଶୁଣ ରମା, ଭୟକୁ ଭୟ କରୁଥିଲେ ସେ ଡରାଉଥିବ । ସାହସ ଚକଟି ଆଗେଇ ଗଲେ ସେ ଅପସରି ଯିବ । ବିପଦ ଆସି ଆଗରେ ଠିଆ ହେଲେ ପରିତ୍ରାଣର ଉପାୟ ଖୋଜିବାକୁ ହେବ । ଫଳାଫଳ ଯାହା ହେବାର ହେଉଥାଉ । ମଣିଷର ଶେଷ ନିଶ୍ଚିତ ମରଣ । ଦୁଇଥର କେହି ମରେ ନାହିଁ । ମରଣକୁ ଜିତି ନ ପାରିଲେ ମୋତେ ଛାଡି ଯାଅ ବୋଲି ତାର ଚରଣ ତଳେ ମୁଁ ଶରଣ ପଶିବି ନାହିଁ । ଠାଣି ହୋଇ ମୁଁ ଠିଆ ହେବି ଜିନା । ନେଉ, ସେ ଝିମ୍ପି ନେଉ ।

ଏକି ଚୁଲି ପାଉଁଶ କଥା କହୁଛ ? ଆପଦ ବିପଦ ପାଖରୁ ଦୂରେଇ ରହିବା ଭଲ ।

ମୁଣ୍ଡ ଆଉଥରି ଗୋଳେଇ କହୁଥିଲେ ସୁକାନ୍ତ, ତୁମର ମୂଲ୍ୟବାନ ଉପଦେଶ ମାନଲେ ଏଠୁ ଆଉ ଆଗକୁ ପାଦ ବଢ଼ାଇ ହେବ ନାହିଁ । ବିପଦ ସବୁଠି ଅଛି । ଅଗ୍ନିକଣ ଯେ ଆସି ପଡ଼ୁଛି । ବୁଦ୍ଧି ହଜାଏ ଏପରି ଗୋଟାଏ ଘଟଣା ହେବ ବୋଲି ମୁଁ ତ ଆଗରୁ ଜାଣି ନ ଥିଲି । ଏଥିରୁ ବିପଦ ମଧ୍ୟରୁ ପରିତ୍ରାଣ ପାଇ ଜୀବନ ଧରି ତୁମ ପାଖକୁ ଫେରି ଆସି ପାରିବି ବୋଲି ମୋର ପରିତେ ନ ଥିଲା । ମାଲ୍‌କାନ୍ ଗିରିର ରକ୍ଷିତ ଅରଣ୍ୟ ଭିତରେ ବାଟ ହଜାଇ ଦଉଡ଼ି ସେଇଠି କଟାଇବା ଏକାକୀ ଏପରି ଧାରଣା ମୋ ମନକୁ ଆସନ୍ତା ବା କିପରି ?

ଯାହା ବାସ୍ତବ, ତୁମକୁ ସେ ଅସମ୍ଭବ ପରି ଲାଗିବ ରମା । କେତେ ତ ପାହାଡ଼ ଅରଣ୍ୟ, ନଦୀନାଳ, ଜଳ ପ୍ରପାତ ତୁମେ ଦେଖିଛ । ତୁମେ ଅବଶ୍ୟ ଅନୁମାନ କରି ପାରିବ, ଉପଲବ୍ଧି କରି ପାରିବ ଯାହା ମୁଁ ଅନୁଭବ କଲି ଯାହାର ତୁମ ଆଗରେ ପ୍ରକାଶ କରି ପାରିବି ?

ଦିନ ଦୁଇ ପ୍ରହର । ଠାଣ ଖରା ଆକାଶ ବୁକୁରେ ଭାସମାନ ଖଣ୍ଡ ବାଦଲର ଫାଙ୍କରେ ମୁହଁ ଗଳାଇ ତଳକୁ ଅନାଉଥିଲା । ବର୍ଷାଦ ମାଡ଼ି ଆସିଲେ ଘୋଟି ଆସୁଥିଲା ଛାଇ । ସୁଖ ଓ ଦୁଃଖ, ଆଶା ଓ ନୈରାଶ୍ୟ ପରି ଆଲୁଅ ଛାଇର ଗୋଡ଼ିଆ ଗୋଡ଼ି ଖେଳ । ଖୁସି ଲାଗୁଥିଲା । ମନରେ ଉତ୍ସାହ । ଜୟପୁରରୁ ପଞ୍ଚସ୍ତରି ମାଇଲ ତ ମାଲକାନ ଗିରି, ଅସାଧ ବାଟ । ଅରଣ୍ୟ, ଘାଟି ଓ ଅରଣ୍ୟ ! ସେଠି ଜଳସେଚନ ଯୋଜନା ମାନଙ୍କର ସମ୍ଭାବନା ଅନୁସନ୍ଧାନ କରିବାକୁ ମାଲକାନ୍ ଗିରି ଛାଡ଼ି ଆମେ ଅରଣ୍ୟରେ ପ୍ରବେଶିଲୁ ରମା, ସଙ୍ଗରେ ମୋର ଗୁରୁ ପାଞ୍ଚଜଣ ଲୋକ ଥିଲେ ।

କର୍ମ ସଙ୍ଗେ ସଙ୍ଗେ ଆନନ୍ଦ । ମନେ ହେଉଥିଲା ତ୍ରେତୟା ଯୁଗ ଫେରି ଆସିଛି । ରାମ ଲକ୍ଷ୍ମଣ ଓ ସୀତା ଏହି ଅରଣ୍ୟ ଭିତରେ କେଉଁଠି ଭ୍ରମୁଥିବେ । ଦେଖା ହେବ । ମାଲକାନ୍ ଗିରି ପଛେ କଥଣ ମାଲ୍ୟବନ୍ତ ଗିରି ଅଥବା ମଞ୍ଜିକା ନଗରୀ । ସତେ କଥଣ ଦଶ ଧୀରା ଶ୍ରେଷ୍ଠ ସର୍ଣଗୋଡ଼ା ନଦୀରେ ସ୍ନାନ କରୁଥିଲେ ?

କେଜାଣିବା ଶ୍ରେଷ୍ଠ ତମସା ନଦୀର କେଉଁ ନିଭୃତ ଘାଟରେ ଅସାବଧାନ ହୋଇ ସ୍ନାନ କରୁଥିବା ଅବସ୍ଥାରେ ମଲ୍ଲୀକା ନଗରୀର ରାଜକନ୍ୟା ଓ ସହଚରୀମାନେ ହସିଥିଲେ । ସତୀ ଶିରୋମଣି ସେମାନଙ୍କୁ ଅଭିଶାପ ଦେଇଥିଲେ, ତୁମେ ମାନେ ମୋତେ ଉପହାସ କଲ । ମୁ ଅଭିଶାପ ଦେଉଛି ତୁମେ ଉଲଙ୍ଗ ରହିବ, ବସନ ପିନ୍ଧିଲେ ଛିଡ଼ି ଫାଟିଯିବ ।

ସେଇଥି ପାଇଁ ସେମାନେ ଉଲଗ୍ନ । କେବଳ ଲଜ୍ଜା ଘୋଡ଼ାଇବାକୁ ଚାରି-ଆଙ୍ଗୁଳ ଚଉଡ଼ାର ଶ୍ରେଷ୍ଠ କନା କି ବକଲ ଖଣ୍ଡେ ଅଗ ପାଖେ ଅଣ୍ଟାରୁ ଝୁଲନ୍ତି, ଦୁଇ ଜଙ୍ଘର ମଝିରେ, ଅଣ୍ଟା ଉପର ଯାଏ । କେତେ କାକୁତି ମିନତି ପରେ ଜଗଜ୍ଜନନୀ ତାଙ୍କ ଅଭିଶାପକୁ ଏତିକି କୋହଳ କଲେ ।

ସେମାନେ ବଣ୍ଡା ପରଜା, ବାଲିର ଆଶ୍ରମ ବାଲିମେଲା ପାଖ ପାହାଡ଼ ମାଳ ଉପରେ ସେମାନଙ୍କର ଗ୍ରାମ ଗୁଡ଼ିକ । ସେମାନେ ମଲ୍ଲିକା ନଗରୀରୁ ଦଶ କୋଷ ଦୂର ବାଲି ମେଲା ପାହାଡ଼ ଉପରକୁ ପଳାଇ ଗଲେ । ଯେଉଁମାନେ ଏବେ ସତୀ ନଦୀ, ତମସା ଓ ସେ ଦଉଁଟି ମିଶିଥିବା ଯଠରୁ ନଦୀର ଦୁଇ ପାଖରେ ବାସ କରନ୍ତି ସେମାନେ ଅନ୍ୟ ଜାତିର ଲୋକ, କୋୟା କନ୍ଧ ।

ଏ ସବୁ କଥଣ ସତ କଥା ? ବିଶ୍ୱାସ ହେଉ ନାହିଁ କି ମିଛ ବୋଲି ମନେ କରିବାକୁ ସାହସ ହେଉ ନାହିଁ ।

ମିଛ ହେଉ କି ସତ ହେଉ, କିମ୍ବଦନ୍ତୀ ଚଳି ଆସିଛି, ରମା, ସେମାନେ ଏ କଥା କହନ୍ତି । ସେମାନେ ଏହା ବିଶ୍ୱାସ କରନ୍ତି । ସେମାନଙ୍କର ଏହି ବିଶ୍ୱାସ ମିଥ୍ୟା । ଏ ଧାରଣା ଭଙ୍ଗାଇବାକୁ ଚେଷ୍ଟା କରି ଅନେକ କର୍ମଚାରୀ ସେମାନଙ୍କୁ ବସନ ପିନ୍ଧାଇବାକୁ ଚେଷ୍ଟା କରି ବିଫଳ ହୋଇଛନ୍ତି । ନାରୀମାନେ ମୁଣ୍ଡର କେଶ କାଟି ଲଣ୍ଡା ହୁଅନ୍ତି । ସେମାନେ କଳା ବା ଅଳ୍ପ ଶ୍ୟାମଳା ।

ଅତି ଅସଜା, ଅଶୋଭନ ଦିଶୁଥିବେ ତ ।

ତୁମ ଆଖିର ଅଖିକୁ ରମା, କିନ୍ତୁ ସେମାନେ ବି କିଭି ହୁଅନ୍ତି । ପତି ସୁହାଗିନୀ ହୁଅନ୍ତି । ଜନନୀ ହୋଇ ମାତୃତ୍ୱର ଠେକି ରଖନ୍ତି । ଦାମ୍ପତ୍ୟ ଜୀବନର ପବିତ୍ର

ପଥରୁ କାମ କାମନାର ଅରମାକୁ ଗୋଡ଼ ବଢ଼ାଇଲେ ନାହମାନଙ୍କରେ, ବହୁବର୍ଷର ଘରଣୀ ଓ ବହୁ ପୁତ୍ର କନ୍ୟାଙ୍କର ଜନନୀ ହୋଇଥିଲେ ମଧ ତାଆର ଓ ତାର ସ୍ନେହର ଗଣ୍ଡିରୁ ମୁଣ୍ଡ ଅଲଗା ହୁଏ । ଜଣା ପଡ଼ିଲେ ସ୍ୱାମୀ ହିଁ ଏହା କରେ । ରକ୍ତାକ୍ତ ମୁଣ୍ଡ ଦଉଡ଼ି ଭୁଇ ହାତରେ ଧରି ସେ ନିଜେ ଆସି ଥାନାରେ ଉପସ୍ଥିତ ହୁଏ । ଦୁଃଖ ନାହିଁ ବ ମନରେ ଅନୁତାପ ନାହିଁ । ପ୍ରଗାଢ଼ ପ୍ରେମର ଏହା କଅଣ ନମୁନା ନୁହେଁ କି ରମା ?

ହଁ ପ୍ରଗାଢ଼ ସ୍ନେହ । କାହିଁକି ସେ ଅନ୍ୟ ପୁରୁଷର ସ୍ନେହକୁ ଗ୍ରହଣ କଲା ଓ ଅରମାକୁ ଗୋଡ଼ ବଢ଼ାଇଲା ସେକଥା କେହି ଅନୁସନ୍ଧାନ କଲକି ? କେଉଁ ନାରୀ କେବେ ତାର ସନ୍ତାନ ମାନଙ୍କର ପିଅର ଓ ଅନ୍ୟ ମନୋହାରଣୀର ହୃଇଟି ରକ୍ତାକ୍ତ ମୁଣ୍ଡ ହାତରେ ଧରି କେଉଁ ଥାନାରେ ଉପସ୍ଥିତ ହେବାର ସମ୍ବାଦ ପାଇଛକି ?

ରକ୍ତାକ୍ତ ମୁଣ୍ଡ ! ରକ୍ତ ଦଶୁନାହିଁ, କେବଳ ଦଉଡ଼ି କଟା ମୁଣ୍ଡ ଟେବୁଲ ଉପରେ ରଖା ହୋଇଛି । ଥାନା ଘର ଲୋକାରଣ୍ୟ । ଟେବୁଲ ଆର ପାଖରେ ପୋଲିସ ଦାରୋଗା ବସି କଅଣ ଲେଖୁଛନ୍ତି । ଟେବୁଲ ଏ ପାଖେ ଠିଆ ହୋଇଛନ୍ତି —କିଏ ସେ ?

ଛାଇ ନିଦ ଭାଙ୍ଗିଗଲା । ଥରଥର କମ୍ପୁଛି ଛାତି ।

ରମା ଆଖି ଖୋଲିଲା । ଘର ଭିତର ଅନ୍ଧାର । ଝିପି ଝିପି ବରଷାର ଶବଦ ଶୁଭୁଛି । ମୁଣ୍ଡ ଭ୍ରମୁଛି । ହାତ ଅଣ୍ଟାଳିଲା । ପାଖରେ ଇନ୍ଦୁ ଶୋଇଛି । ନୂଜୁ ନୂଜ ହେଉଛି । ତା ଆରକଡ଼େ ନୁନୁ । ଅନ୍ଧାର ଭୟଙ୍କର ଦଶୁଛି । ତକିଆ କଡ଼ରୁ ଖୋଜି ଖୋଜି ଟର୍ଚ୍ଚ ଟେକି ଆଲୁଅ ଜାଳାଇଲା । ମଶାରି ଟେକି ହାତ ଗଳାଇ ଚାରି ଆଡ଼ ଦେଖିଲା । ସବୁ ସେମିତ ପୂର୍ବ ପରି ରହିଛି । ସେ ବଞ୍ଚିଛି । ପିଲାଟି ମାନେ ପାଖରେ ଶୋଇଛନ୍ତି । ଜୟଶ୍ରୀ ଓ ହଳଧର ତ କେବେଠୁ ବେଳୁ ଗୁଲି ଗଲେଣି । ସେମାନେ ନିଶ୍ଚିନ୍ତରେ ନିଜ ଘରେ ଶୋଇଥିବେ ।

ହଳଧର ଭଲଲୋକ । ସ୍ନେହୀ, ଭଦ୍ର ଓ କର୍ତ୍ତବ୍ୟ ପରାୟଣ ! ସେ କାହିଁକି ଏ ପରି ଭୟଙ୍କର ଧାରଣାର ସ୍ୱପ୍ନ ଦେଖିଲା ?

ତୁମେ ହସି ହସାଇ ପାର, ଅଭିମାନ କରି କନ୍ଦାଇ ପାର କି ବିରକ୍ତ କରି ପାର । ଘର କୋଣରେ ରହିବା ଲୋକ ତୁମପରି ଜାଣିବ, ବାହାର ଦୁନିଆଁରେ ଆଉପାଉ ହେଉଥିବା ଲୋକ କେବଳ ଆନନ୍ଦ ଓ ଫୂର୍ତ୍ତିରେ ବେଳ କଠାନ୍ତି ନାହିଁ ! ଦୁଃଖ କଷ୍ଟ ସହନ୍ତି । ବିପଦରେ ପଡ଼ି ଶେଷ ହୋଇଗଲେ ଖବର ପାଅ ଯେ ଚାଲି ଗଲେ, ଆଉ ଫେରିବେ ନାହିଁ । ସେତେବେଳେ ବିପଦର ଗୁରୁତ୍ୱ ବୁଝ । ବିପଦରୁ ଉଦ୍ଧାର ପାଇ ଫେରି ଆସିଲେ ଘଟଣାଟି କାବା ହୋଇ ଶୁଣ । ଗୁରୁତ୍ୱ ଉପଲବ୍ଧି କରି ପାର ନାହିଁ ।

କିପରି ତୁମେ ବୁଝିବ ? ଏତେ ଅବତାରଣିକା ନ ଦେଇ ଘଟଣାଟି ଟୁନା ପୁଅ ପରି କହି ଦିଅ ତ ।

ଉପାସ ଭୋକରେ ମାଲକାନ୍ ଗିରି ଜିଲ୍ଲାର ଜଙ୍ଗଲ ଭିତରେ ବୁଲିଲୁଁ । କହନ୍ତି, ସେଠି ପଲପଲ ଭାଲୁ, ଗୋଟିଏ ବି ଆଖିରେ ପଡ଼ିଲା ନାହିଁ । ବାଘ ଅଛନ୍ତି, ଏ ସମ୍ବାଦ ପାଇଥିଲୁଁ । ଲୋକେ କହିଲେ, ଦୁଇଟା ବଳଦ ଝାଣି ନେଲେଣି । ତଥାପି ଆମେ ଡରିଲୁ ନାହିଁ । କାମ ଶେଷ କରି ଫେରି ଆସୁଁ, ଅସିଲା ତୋଫାନ । ବର୍ଷା ବୁନ୍ଦା ଝାଡ଼ିଲା ।

ସମସ୍ତେ ଅଟକିଗଲେ । ବଣ ମଝିରେ ଚେନାଏଁ କୃଷିଜମି । ମଝିରେ ସ୍ରୋତ ନାଳ । ମାଛ ଧରିବାକୁ ଅରଣ୍ୟ ସେପାଖ ଗ୍ରାମର ଲୋକେ ବନ୍ଧ ବାନ୍ଧି ପୋଲୁଅ ବସାଇଛନ୍ତି । ଜଗି ବସିବାକୁ ଜଙ୍ଗଲର କଡ଼ରେ ଟିକିଏ କୁଡ଼ିଆ କରିଛନ୍ତି । ଉପରେ ଟାଙ୍ଗର ଛାଉଣି । ଚାରିପାଖ ଖୋଲା । କୁଡ଼ିଆ ଭିତରେ ଦେଢ଼ହାତ ଉଚ୍ଚର ବେଞ୍ଚ ପରି ପୀଠ । ଛଅହାତ ଲମ୍ବ ଓ ମୁଠାଏ ଚଉଡ଼ା ! ଦଳେ ଗୁଡ଼ିଖଣ୍ଡି କାଠ ପୋତି କାଠ ଉପରେ ବାଉଁଶ ପକାଇ ବସିବାକୁ ଏପରି କରିଛନ୍ତି ।

ବର୍ଷା ପଡ଼ିଲା । ଓଦର କୋଟ ଓ ଟୋପି ପିନ୍ଧିବାକୁ କୁଡ଼ିଆ ଭିତରକୁ ଗଲି । ପଛ ଲୋକେ ଅଟକିଗଲେ । ଚାଲିବାକୁ ସେଇଠି ବନ୍ଦେଇ ଯାଇଛୁ । ପ୍ରସ୍ତୁତ ହେବାକୁ ମୋତେ ଦଶ ମିନିଟ ଲାଗିଥାଇ ପାରେ । ଚିନ୍ତା ନାହିଁ, ସେମାନେ ଆଗେଇ ଯାଉନ୍ତୁ, ମୁଁ ବଡ଼ ପାହୁଣ୍ଡ ପକାଇ ଅତି ଶୀଘ୍ର ଯାଇ ସେମାନଙ୍କ ସଙ୍ଗେ ମିଶି ଯିବ ନଯ । ସେଇଆ କଲି ।

ହାତଠାରି ଆଲୁଅ ଲିଭାଇଲା । ଟର୍ଚ୍ଚ ଆଲୁଅ ଜଳଥା କଡ଼ରେ ରଖିଲା । ନୂଆ
ବସିଲା ଝରକାପାଖରେ । ତଥାପି ଦେହ ଥରୁଛି । ମୁଣ୍ଡ ଭରୁଛି । ବାହାରେ ବର୍ଷାର
କୋପ ବଢ଼ିଛି । ଅନ୍ଧାରିଆରେ ଆଖିରୁ ଝରୁଛି ଲୋତକ ଧାର ।

ବର୍ଷା ହୁଉଛି । ବଡ଼ ରାସ୍ତାରେ ଜୀପ୍ ଛୁଟୁଛି । ଆଉ ଉଦ୍ଭ୍ରାନ୍ତ ନାହିଁ । ଗାଡ଼ି ଜୟ-
ପୁରରେ ପହଞ୍ଚିବ ସୁରକ୍ଷିତରେ । ଏ ବର୍ଷଟରେ ଡ୍ରାଇଭର ହଠାତ୍ ହୁଲେଇ ଦେଲା । ଅଗାଧ
ଘମାଘୋଷ ଘାରୁଥିଲା ଓ ଉଠାପକା ରାସ୍ତାରେ ନାଚୁଥିବା ଚନ୍ଦ୍ରିକା ଜଦ ସଙ୍ଗେ ଭାବନା
ପଥ ଭାଙ୍ଗୁଥିଲା । ସମତଳ ଚିକ୍କଣ ରାସ୍ତାରେ ଦେହ ନହଲିଲେ ମଧ୍ୟ ଆଖିକୁ ତନ୍ଦ୍ରା
ଆସୁ ନାହିଁ । ସେ ରାସ୍ତାକୁ ଚାହିଁଛି । ଆଲୁଅ ପଡ଼ନ୍ତେ ଝର ଝର ବର୍ଷାର ଧାରକୁ
ଦେଖୁଛି । କୋଳଉପରେ ରଖିଥିବା ଚମ୍ପାଫୁଲର ମହକ ଏବେ ସେ ଉପଲବ୍ଧି
କଲାଣି । ମହୁଲା ବଣମଲ୍ଲୀ ଫୁଲ ଝାରର ନରମ ଗନ୍ଧକୁ ଚମ୍ପାର ଗନ୍ଧ ବୁଡ଼ାଇ ଦେଉଛି ।
ଓଦା ତ ସେ ହୋଇ ସାରିଛି । ଦେହକୁ ଶୀତଳ ଲାଗୁଛି । ଲାଗୁଥାଉ ।

ଅରେ, ବୋରିଗୁମ୍ମା ଗ୍ରାମ ପଛରେ ରହିଲା । ଡେଇଁମାଇଲି ରହିଲା ଜୟପୁର ।
ଜାମା ଭିଜି, ମୁଣ୍ଡରେ ମଫଲର ବାନ୍ଧି ପଛକୁ ଆଉଜା ଇଞ୍ଜିନିୟର ବାବୁ ଶୋଇ-
ଛନ୍ତି ପରା ! ଅଗାଧ ଚାହିଁ ରହିଲା ।

ଶୋଇ ନାହିଁ ସେ ଶ୍ରୀକାନ୍ତ । ଆଖି ବୁଜିଛି । ମନରେ କେତେ ଭାବନା
ଖେଳୁଛି । କେତେ ଦୃଶ୍ୟ ଦେଖୁଛି । ଗତ ଓ ଆଗତକୁ ଭାବିକ ଧାଇଁ ଯାଉଛି ।

ତେଣୁ ଶ୍ରେଷ୍ଠ କଥାରେ ଡେଇଁ ମାଇପି ହେଲ ଅଭିମାନ କର ନମା, ବେଟା
ଷଣ୍ଢ ମୁହଁ ଲଦ । ତୁଣ୍ଡ ଖୋଲି କିଛି ନ କହିଲେ ମଧ୍ୟ ତମ ମାନଙ୍କର ଆଖି, ନାକ,
ଓଠ, ଗାଲ ଓ ଚାଙ୍ଗ କହିଦେବ ତେମେ ବିରକ୍ତ ହୋଇଛ ପାଟକୁ ଗୁଳିଯାଅ
ବୋଲି ନିର୍ଦ୍ଦେଶ ଦେଉଛ । ଅତି ବିରକ୍ତ ଲାଗେ । କଜିଆ କରିବାକୁ ମନ ହୁଏ ।
ସବୁ ଭଲ କାମକୁ ଝୁଣିବାକୁ ଓ ଅପସନ୍ଦ କହିବାକୁ ଇଚ୍ଛା ହୁଏ ।

ବର୍ଷା ଲୁହଲଣି । ଅନ୍ଧାର ହୋଇ ଆସିଲଣି । ଶୀଘ୍ର ବଡ଼ ରାସ୍ତାକୁ ବାହାରି ନ ପଡ଼ିଲେ ରକ୍ଷା ନାହିଁ । ମୋ ସହକର୍ମୀ ମାନଙ୍କୁ ଭେଟିବା ପାଇଁ ଧାଇଁବାକୁ ଲାଗିଲି । ଜଙ୍ଗଲ ଭିତରେ କେତେ ଚଲାବାଟ ପଡ଼ିଛି । ସେମାନେ ଯେଉଁ ବାଟରେ ଯାଇଥିଲେ ଅଜାଣତରେ ସେ ବାଟ ଭୁଲି ଅନ୍ୟ କେଉଁ ବାଟରେ ଗଲି । ମୋର ଡାକ ସେମାନଙ୍କୁ ଶୁଭିଲା ନାହିଁ ।

ଅନ୍ଧାର ହୋଇବା ଆଗରୁ ମୁଁ ଆସି ଗୋଟିଏ ନାଳ ପାଖରେ ପହଞ୍ଚିଲି । ତମସା ନଦୀର ଉପନଦୀ ହୋଇଥିବ । ଆର ପାଖେ ଛୋଟ ପାହାଡ଼ । ଏହା ଠିକ୍ ବାଟ ନୁହେଁ । ମୁଁ ନିଶ୍ଚୟ ବାଟ ଭୁଲିଛି । କାଠ କଟାଳିମାନେ ଯାଆସ କରି ଜଙ୍ଗଲ ମଝିରେ ବିଭିନ୍ନ ଦିଗକୁ କେତେ ବାଟ ଫିଟାଇଛନ୍ତି । ନିଶ୍ଚୟ ଗୋଟିଏ ଭୁଲବାଟ ଧରି ମୁଁ ଏଣେ ଧାଇଁ ଆସିଛି । ସର୍ବନାଶ । ହାତରେ ମୋର ହତିଆର ନାହିଁ ଠେଙ୍ଗା ବାଡ଼ି ନାହିଁ । ପାଞ୍ଚ ସେଲର ବଡ଼ ଟର୍ଚ୍ଚ ଆଲୁଅଟି ଆଉ ଜଣକୁ ଧରାଇ ଦେଇଥିଲି । ଏବେ କରେ କଅଣ ?

ହାଲୁକ ଶୁଖିଲା । ହତାଶ ହେଲି । ଭୟରେ ଗୋଡ଼ରୁ ମୁଣ୍ଡ ଯାଏ ଥରି ଉଠିଲି । ଛାତି କମ୍ପିବାକୁ ଲାଗିଲା । ବର୍ଷାର ବିରାମ ନାହିଁ । ବେଳେବେଳେ ପବନ ମାଡ଼ି ଆସୁଛି । କେତେ ପ୍ରକାର ଶବ୍ଦ କାନରେ ବାଜୁଛି । ଗଡ଼ାଣୀ ପାଣିର କଳ-କଳ । ପଡ଼ାଣି ପାଣିର ଦୁମ୍ ଦୁମ୍ । ଝର ବରଷାର ଝମ ଝମ । ଦମକା ପବନ ସନ୍-ସନ୍ । ଶୁଣି ପାରୁଛି, ନିଜ ଛାତିର ସ୍ପନ୍ଦନ । ଚମକି ଉଠୁଛି ଚପଳା । କାନ ଅତଡ଼ା ପକାଇ ଗରଜି ଉଠୁଛି ଡାଆର କଳକଳା ପର୍ବତ ଫଟା ରଡ଼ି ।

ହୁଇ ପାଖର ଗଛଲଟା ନଇଁକି ଆସି ଅଣଓସାରିଆ ଚଲାବାଟ ଉପରେ ଛାମ୍ନି ବାନ୍ଧି ହୋଇଛନ୍ତି । ମୋ ପାଦରେ ମୋଜା ନାହିଁ । ପାତଳ ନରମ ରବର ଯୋତା । ପ୍ଲାଷ୍ଟିକ ପାଇଜାମା ପାଦ ଉପରକୁ ଲମ୍ବିଛି । ଆଣ୍ଠୁ ଉପର ଯାଏ ଓଦା ସରସର । ରବର ବରଷାତି ଓଭର କୋଟ ତଳେ କାମିଜ୍ ଓ କୋଟ ଓଦା ହୋଇ ସାରି-ଲାଣି । ଜଳରେ ନୁହେଁ, ଭୟଜନିତ ଅବସ୍ଥାରେ ସନ୍ଦେହ ମରଣ କାଳିନ ଝାଳରେ ।

ଯନ୍ତ୍ର ଚାଳିତ ପିତୁଳାଟି ପରି ମୁଁ ଫେରୁଛି ସେଇ ଅଣଓସାରିଆ ଚଲା ବାଟରେ । ଦୁଇ ହାତରେ ଆଗର ଡାଳ ପତ୍ର ଆଡ଼େଇ ଚାଲିଛି । ଗୋଡ଼ରେ ଗୁଡ଼ାଇ

ହେଉଛି ଲଣ୍ଠା ପତ୍ର । ଖାଲ ଢିପରେ ପାଦ ପଡ଼ି ମୁଁ ପଡ଼ୁପଡ଼ୁ ଗଛ ଲଣ୍ଠା ଧରି ଅଟକି ଯାଉଛି । କେଉଁଠି କାଦୁଅ ବା ଫସକା ଓଦା ମାଟିରେ ପାଦ ଗଳି ପଡ଼ୁଛି । ମୁଁ ଆଣ୍ଠେଇ ପଡ଼ୁଛି । ଉଠୁଛି ଅତି କଷ୍ଟରେ । ଅଣ୍ଟା ସଳଖି ଆଗେଇ ଯାଉଛି । କଣ୍ଟା-ଝଣ୍ଟା, ଖୁଣ୍ଟା । ପ୍ରାଣରକ୍ଷା ପାଇଁ ଦୋହଲ ଉତ୍ତକଣ୍ଠା, ବିକଳ ପ୍ରଚେଷ୍ଟା ।

ଅନ୍ଧାର ଘୋଟି ଗଲଣି । ଅଭ୍ୟାସ ହେଲେ ଅନ୍ଧାରରେ ବାଟ ଝାପସା ଦିଶେ । ଆକାଶରେ ବହଳ ମେଘ । ନକ୍ଷତ୍ର ବା ଦିଶିବେ କିପରି । ଆଖି ଆଗରେ ଜୁଳୁଜୁଳିଆ ପଲ ଭାସି ଯାଉଛନ୍ତି । ମନେ ହେଉଛି, ଆଗରୁ ଧିମେଇ ଧିମେଇ ବରିଠ କାମ୍ଭ ଅଜଗର ସାପ ସେହି ବାଟରେ ଆସୁଛି । ପାଟି ଆଁ କରିଛି । ଗିଳିବ । ସାପ ଯେପରି ବେଙ୍ଗକୁ ଟେରେ । ଧୀରେ ଧୀରେ ଟିଳେ । ବେଙ୍ଗଟି ରହିରହି ଛଟପଟ ହୋଇ ଛଡ଼ଥାଏ । ଅଜଗର ସେହିପରି ଗୋଡ଼ଆଡ଼ୁ ଧରି ଗିଳିବ । ଧୀରେ ଧୀରେ । ପ୍ରାଣ ସହଜରେ ଛାଡ଼ିବ ନାହିଁ । କଲବଲ ମରଣ । କେହି ଜାଣିବେ ନାହିଁ ସୁକାନ୍ତ ଇଞ୍ଜିନିୟାର କୁଆଡ଼େ ହଜିଲେ ।

ନା, ଅଜଗର ନୁହେଁ, ପୁରୁଣା କାଠ ଗଣ୍ଡି ସିଏ । ହେଉ, ଗୋଡ଼ରେ ଛନ୍ଦି ହେଲଣି କାଳସର୍ପ । ତମ୍ପ, ନାଗ, ବା ଅହିରାଜ । ଗୋଟେ ଦାଂଶିବ । ବିଷ ଚହଟିବ । ମରଣ ହେବ । ବେଶି କଲବଲ ନାହିଁ । ଛଟପଟ ହେବାକୁ ପଡ଼ିବ ନାହିଁ । ସୁଖର ମରଣ । ସେଇ ଭଲ । କିନ୍ତୁ ଯଦି ପଛିପଛିକା ରଙ୍ଗର ଡଣା ସାପ ହୋଇଥାଏ ? ଗୋଟେ ବୋଡ଼ାଟେ ହୋଇଥାଏ ? ଅଜଗର ଗିଳା ମରଣଠାରୁ ସେପରି ମରଣ ହେବ ଅଧିକ କଷ୍ଟପ୍ରଦ । ଧୀରେ ଧୀରେ ମରଣ, ଦିନ, ମାସ ଓ ବର୍ଷ କଟିବ । ଘା ଘାଉଡ଼ରେ ଦେହ ପଚିବ, ଅଙ୍ଗ ଛିଣ୍ଡିବ । ଓହୋ, କଣ୍ଟା ଲଗାଠାଏ । ନଳୀ ଗୋଡ଼ରେ ଛନ୍ଦ ହୋଇଛି । ଦୁଇ ଗୋଟା କଣ୍ଟା ଭୁଷିଛି । ଛାଡ଼ ଗଲଣି ।

ଦୁଇଟା ଭାଲୁ ଖପ୍ ଖପ୍ ହୋଇ ପଛ ଗୋଡ଼ରେ ଗୁଳି ଗୁଳି ଆସୁଛନ୍ତି । ଦେହ ମୁଣ୍ଡ ବିଦାରି ପକାଇବେ । ମୃତ୍ୟୁ ହେଲେତ ନିଷ୍କୃତି ମିଳିବ । ବଞ୍ଚିଗଲେ, କି

ଅସୁନ୍ଦର, କ ଭୟଙ୍କର ଦଶିବ ମୋର ମୁହଁ । ଦେଖିଲେ ଲୋକେ ଡରିବେ, ଘୃଣା କରିବେ । ଦୂରେଇ ରହିବେ । ସତେକି ମୁଁ ଭାଲୁ ଠାରୁ ବ ଭୟଙ୍କର । ନାଇମ, ବୃନ୍ଦା ଦଉଛି । ମନ ମୋର ଦୁର୍ଗତି ନାଶିନୀ ଦୁର୍ଗା ନାମ ଜପ କରୁଛି । ମୁଁ ଅଟେଇ ଯାଉଛି ।

ଖସ୍ ଖସ୍ ଶୁଭୁଛି । ମହାବଳ କି ? ଝାମ୍ପ ମାରିବ । ଗୋଟିଏ ମୁହୂର୍ତ୍ତରେ ତଳେ ପକାଇବ । ଗୋଟିଏ ହାତରେ ଚୁଡ଼ାଇ ଧରି ଘଞ୍ଚରେ ଯାଇବ । ତାରି ବେଗରେ ଛୁଟିବା ମୋର ଅରଣ୍ୟ ନହିଁଲୁ । ତଣ୍ଟି ଫଟାଇ ପ୍ରାଣ ନେବ ରକ୍ତ ଶୋଷିବ । କୌଣସି ଚେଷ୍ଟା ଯାହା କରୁ । ଆଜିର ଦେଖିବାର ଶକ୍ତି କି ଦେହର ଅନୁଭବ ଶକ୍ତି ନଥିବ ତ । ମୁକ୍ତ ଆତ୍ମା ଅମ୍ବରକୁ ଉଡ଼ି ଯାଇଥିବ । ବାଘ ନୁହେଁ, ଦମକା ପବନ । ମନର ଧାରଣା ।

ଫଟାଭ ଫଟା ଚଡ଼ଚଡ଼, ସତେକି ମୁଣ୍ଡରେ ପଡ଼ିଲା ଆସି ଝଲସିଲି । ମୁହୂର୍ତ୍ତିକେ ପ୍ରାଣ ନେଇଯାଏ । ତୁଷାର ମରଣ ଆଖିରେ ଦଶିଲା ଶ୍ଳେଟ ଛୁଡ଼ିଅଛି । ଯେଉଁ ତାରୁ ମୁଁ ଯାଇଥିଲି ସେହିଠାକୁ ଫେରି ଆସିଛି । ଖୋଲା ଜାଗା କାଚ୍ଛମ୍ବା ଗଛର ତଳେ । ଆଗରେ ଅଳ୍ପ ଓସାରିଆ ଶୂନ୍ୟ ଜମି । ଶ୍ଳେଟ ନାଲ ପୂର୍ତ୍ତିହୋଇ କନକନ ପାଣି ବହୁଛି । ମନେ ହେଲା, ସବୁ ବିପଦ ଲଙ୍ଘନ କରି ମୁଁ ମୋ ନିଜ ଘରକୁ ଫେରି ଆସିଛି । ପ୍ରାଣ ରହିଛି । ପ୍ରାଣ ରହିବ ।

ଛୁଡ଼ିଆ ତଳକୁ ଆସିଲି । ସ୍ଥିର ଅଙ୍କୁ ଥରେ ଗୁହାଁଲି । ଦେହ ଥରଥର କମ୍ପୁଛି । ପାଖ ଅରଣ୍ୟ ଝାପସା ଦିଶୁଛି । ଥରଥର ହାତ ଦଉଛି ଯୋଡ଼ି କପାଳରେ ଲଗାଇଲି । ଥରିଲା କଣ୍ଠରେ ଅରଣ୍ୟ କମ୍ପାଇ ଚିତ୍କାର କଲି, ମା ଗୋ ଦୁର୍ଗେ, ଦୁର୍ଗତି ବାରିଣୀ— । ମନରେ ଶକ୍ତି ଆସିଲା । ଶ୍ଳେଟ ବେଞ୍ଚିଟି ଉପରେ ବସି ପଡ଼ିଲି । ଭାବିଲି, ମୋତେ ନ ଦେଖି ସେମାନେ ଶୀଘ୍ର ଫେରି ଆସିବେ । ଅଣ୍ଡ ଚନ୍ଦ୍ର ନାହିଁ । ବର୍ଷା ବି କମି ଆସିଲାଣି ।

ସେତିକି ବେଳେ ତୁମେ ମୋର ମନେ ପଡ଼ିଥିଲ ଝମା, ଆଉ ମୋର ବିଜୟିନୀ ପିଲା ଦଉଛି । ମଣିଲି, ତୁମର ମଙ୍ଗଳ କାମନାର ନିଶ୍ବାସ ପାଇଁ ମୁଁ ଜୀବନ ନେଇ ଏହି ପର୍ଣ୍ଣକୁଟୀରକୁ ଫେରି ଆସି ପାରିଛି । ସମସ୍ତଙ୍କ ଉପରେ ଭଗବାନଙ୍କର ଦୟା ଅଛି ।

ଏହି ସେ ଦଣ୍ଡକାରଣ୍ୟ, ଯେଉଁଠି ନରଦେହରେ ନାରାୟଣ ଶ୍ରୀରାମଚନ୍ଦ୍ର, ଜଗଜ୍ଜନନୀ ମହାସତୀ ସୀତା ଓ ମହାବୀର ତପସ୍ୱୀ ପ୍ରଭମ ଲକ୍ଷ୍ମଣଙ୍କୁ ସଙ୍ଗରେ ଧରି ବିଚରଣ କରିଥିଲେ । ଏହିପରି କେଉଁ ପର୍ଣ୍ଣକୁଟୀରରେ ପ୍ରିୟତମା ପତ୍ନୀ ଓ ପ୍ରିୟତମ-ଅନୁଜଙ୍କୁ ଧରି ନିଶା ଯାପନ କରିଥିବେ । ହୋଇଥିବ ପରା ଏହି ସ୍ଥାନଟି, ଯାହାର ପ୍ରତି କଣିକା ମୃତ୍ତିକା ରାମସୀତାଙ୍କର ଚରଣ ପରଶରେ ଜୀବନ୍ତ ଓ ପବିତ୍ର । ଦୁଇ ହାତ ଯୋଡ଼ି ପୁଣି ମୁଁ ମସ୍ତକରେ ଲଗାଇଲି ।

ବର୍ଷା କମିଛି । ପବନ ଥମିଛି । ଦୂର ଗିରିଜଳ ନାଳରୁ ଭେକ ଦଳର ଚିତ୍କାର ଶୁଭୁଛି । ଅଭ୍ୟସ୍ତ ଆଖିକୁ ଅନ୍ଧାର ଅଡୁଆ ଲାଗୁ ନାହିଁ । ପାତଳ ଦିଶୁଛି । ମନେ ହେଉଛି, ମୁଁ ଦୂରେଇ ଯାଇଛି । ଦେଖୁଛି ଏହି ପର୍ଣ୍ଣକୁଟୀର । ହାଲେଲ ମଧ୍ୟ । କୁଟୀର ଭିତରେ ପର୍ଣ୍ଣଶଯ୍ୟା ଉପରେ ଶୟନ ଭଗବାନ୍ ରାମଚନ୍ଦ୍ର । ପାଦ ଦେଶରେ ଉପବିଷ୍ଟା ଜଗଜ୍ଜନନୀ । ପାଦ ମର୍ଦ୍ଦନ କରୁଛନ୍ତି । କୁଟୀର ଦ୍ୱାରରେ ଉଗ୍ର ତପସ୍ୱୀ ଲକ୍ଷ୍ମଣ । ଜଟାଜୁଟଧାରୀ । ହାତରେ କୋଦଣ୍ଡକାଣ୍ଡ ।

ସବୁ ଉଭେଇ ଯାଉଛି ପରା, ମୁଁ ଯେଉଁଠି ସେଇଠି । ଶୀତରେ ଥରୁଛି । କିମ୍ବଦନ୍ତୀ ହୋଇ ପଡ଼େ, ବିଶ୍ୱାସ ଓ ଧାରଣାରେ ତାହା ସତ୍ୟ ହୁଏ । ମୃତ୍ୟୁଞ୍ଜୟଙ୍କ ପାଇଁ ମଧ ମୋ'ର ନର୍ତ୍ତନ, ନିଃସହାୟ-ଅବସ୍ଥାରେ ତାହା ସତ୍ୟ ହୋଇଛି । ଭୟ ଓ ବିଶୃଙ୍ଖଲ୍ୟ. ଅପେକ୍ଷା ଓ ଉଦ୍‌ବେଗତା, ପ୍ରିୟ ଜୀବନ ଓ ଅତି ପ୍ରିୟ ମରଣର ଭେଉ-ଭେଉକା ଧାରଣା ଧରି ମୁଁ ବସି ରହିଛି । ସେମାନେ ଆସିବେ । ମୁଁ ଫେରିବି ମାଲକାନଗିରି । ସେଠାରୁ ଫେରି ଆସିବି ଜୟପୁର—ଯେଉଁଠି ମୋର ପ୍ରିୟତମା ପତ୍ନୀ ଆହ୍ଲାଦିନୀ, ସୁଖ-ଦୁଃଖର ସାଥୀ ରମା ଅପେକ୍ଷା କରି ବସିଥିବ ।

ରମା ଅପେକ୍ଷା କରି ବସିଛି । ଦୁଇ ଆଖିରୁ ତତଲ ଲୁହ ଝରି ପଡ଼ୁଛି ।

ଏତେଦିନ ହେଲା ଗଲେ ଫେରିଲେ ନାହିଁ । ପୁଣି କଅଣ ଘଟିଲା ? ସବୁ-ବେଳେ ବେପରବା ଢଙ୍ଗ । ଆପଦ ବିପଦକୁ ପାସଙ୍ଗରେ ପକାନ୍ତି ନାହିଁ । ଜୀବନ-

ଥିଲେ ତ ଶୁଙ୍ଖର । ଏବେ ଲୋକ ଶୁଙ୍ଖର କରଉଛନ୍ତି । କେହିତ ତମପର ଜୀବନ ମୂର୍ଚ୍ଛା ଶୁଙ୍ଖର କରୁ ନାହିଁ ? ଘର ଭିତର ଅନ୍ଧାର ତଥାପି, ମୁଁ ଜାଣେ କାନ୍ଥରେ ହାତ ମାରି ସ୍ୱିଚ ଟିପିଦେଲ ଆଲୁଅ ଜଳିବ । ଝର୍ଚ୍ଚଟା ପାଖରେ ଅଛି । କିନ୍ତୁ, ଅନ୍ଧାର ଡର ମାଡୁଛି ନିର୍ଜନ ଅରଣ୍ୟ ଭିତରେ ଝଟ ଝଟ ଅନ୍ଧାର ରାତିରେ ତୁମେ ବେଳ କଟାଇଲ । ଏବେ ସବୁ ହେଲ । ଚେଙ୍ଗ ପାଇ ମଧ ଶିଖିଲ ନାହିଁକ ?

ଉପହାସ କରି ସୁକାନ୍ତ ହସି ଉଠୁଛି । କହୁଛି, କ୍ରନ୍ଦନ କରିବା ନାରୀର କାମ, ପୁରୁଷର ନୁହେଁ । ବିପଦକୁ ଲଙ୍ଘନ କରି ଆସିଲେ ବିଜୟ ବିପଦ ହୁଏ ବିଜୟର ଧ୍ୱଜା । ମନରେ ଆନନ୍ଦ ଅସେ, ଗର୍ବ ଆସେ ।

ତୁମେ ଜାଣ ନାହିଁ ରମା, ସେ ଭୟଙ୍କର ବେଳ କଟି ଯାଇଛି । ସବୁ ବିପଦକୁ ଜାଣି ଜାଣି ବରଣ କରି ବିଜୟର ଆନନ୍ଦ ଓ ଗୌରବ ଲାଭ କରିବାକୁ, ନୂଆ ବସ୍ତୁର ସନ୍ଧାନ କରିବାକୁ ଏବେ ମଣିଷ ତୁଷାରାବୃତ ହିମାଳୟର ଶିଖରକୁ ପାଦରେ ଉଠୁଛି, ମେରୁ ଦେଶକୁ ଯାଉଛି । ମଣିଷ ଆକାଶରେ ଉଡ଼ିଲଣି, ଭୂଗର୍ଭରେ କ ସମୁଦ୍ରର ଅତଳ ତଳେ ପ୍ରବେଶ କଲଣି । ପ୍ରଭେଦ ହେଉଛି, ସେମାନେ ଜାଣିଶୁଣି ଏହା କରନ୍ତି । ଆ ଦ ବିପଦ ଆସିବ ବୋଲି ଅନୁମାନ କରି ଯଥା ସାଧ ପ୍ରସ୍ତୁତ ହୋଇ ଯାଇଥାନ୍ତି ।

ମୋ ଉପରେ ବିପଦ ଯେ ଅଗ୍ନୁନକ ଆସି ଉପସ୍ଥିତ ହେଲ, ରମା ।

ମରୁଭୂମିର ଅପନ୍ତର ମଝିରେ ସହସା କେହି ନିକ୍ଷିପ୍ତ ହେଲେ କ ଖ୍ରେଟ ନୌକାଟିରେ କେହି ସମୁଦ୍ର ମଝିରେ ଭାସୁଥିଲେ ବଂଚିବ କ ମରିବ ଏହି ଭାବନା ଯେପରି ପ୍ରତି ମୁହୂର୍ତ୍ତରେ ତାର ମନରେ ଆଶା ନିରାଶାର ଦ୍ୱନ୍ଦ୍ୱ ଜଗାଏ, ମୋ'ଠାରେ ତାହାହିଁ ହୋଇଥିଲ । ଅରଣ୍ୟ ମଝିରେ ପର୍ଣ୍ଣ କୁଟୀର ସତେକ ସମୁଦ୍ର ମଝିରେ ତୋଫାନରେ ଦୋହଲୁଥିବା ଖ୍ରେନ ନୌକାଟିଏ । କେତେବେଳେ ବୁଡ଼ିବ ସେହି ଆଶଂକାରେ ଶ୍ୱାସ ଉଠେ ପଡ଼େ ।

ବରଷା ଥମିଲ । ପବନ କମିଲ । କ୍ରମେ ସ୍ୱଚ୍ଛ ଅଧିକ ହେବାକୁ ଲଗିଲ । ହାତରେ ବନ୍ଧା ହୋଇଥିବା ଘଣ୍ଟାକୁ ଚାହିଁଲି । ପଢ଼ିହେଲ ନାହିଁ । ଉଦ୍‌ବିଗ୍ନ

ପ୍ରଶଂସାକୁ ମନରେ ତଉଲି ଅନୁମାନ କଲି ହିଁ ତ ନଅଟାରୁ ଅଧିକ ହେବ । ସେମାନେ ଫେରିଲେ ନାହିଁ । ଏତେ ଅନୁଦାର, ଏତେ ନିର୍ଦ୍ଦୟ । ଜାଣି ଜାଣି ମୋତେ ବାଘ ସାପର ମୁହଁରେ ପକାଇ ବାକୁ ସମସ୍ତେ ଆଗରୁ ଚକ୍ରାନ୍ତ କରି ଥିଲେ କି ? ନାଇଁ, ମୁଁ କାହାରି କିଛି ଅନିଷ୍ଟ କରି ନାହିଁ । ତେବେ କାହିଁକି ?

ସତେ, କାହିଁକି ?

ଆକାଶ ଛାତିରେ ମେଘ ଫାଟି ଫାଟି ଗଲା । ଖଣ୍ଡି ଖଣ୍ଡିଆ ହେଲା । କାଁ ଭାଁ କେତୋଟି ନକ୍ଷତ୍ର ମିଟିମିଟି ହେଲେ । ପୁଣି ପବନ ମାଡ଼ି ଆସିଲା । ସାଇଁ ସାଇଁ ଶବଦ । ପତ୍ର ମାନଙ୍କରୁ ଝଡ଼ି ପଡୁଥିବା ଜଳକଣା ମାନଙ୍କର ଶବଦ ; ପାଖ ଓ ଦୂରର ଛୋଟବଡ଼ ନାଳ ମାନଙ୍କରେ ବହି ଯାଉଥିବା ପାଣିର ବିଭିନ୍ନ ପ୍ରକାର ଶବଦ ଖଣ୍ଡ ଖଣ୍ଡ ଭେକଙ୍କର କଣ୍ଠର କେଁ । ତୋଫାନ ଓ ବର୍ଷା ମାଡ଼ରୁ ବଂଚି ଯାଇଥିବା ଝିଙ୍କାରି ଦଳର ଝିମ୍ ଝିମ୍ । ସବୁମିଶି ଗୋଟାଏ ଭୟଂକର ଶବ୍ଦ ସମଷ୍ଟି ସୃଷ୍ଟି କରୁଥାଏ । କାନ ସ୍ତବ୍ଧ ହୋଇ ଯାଉଥାଏ । ଉଦ୍ବେଗ ଭାବନାର ଗତିରେ ବାଧା ଦେଉଥାଏ ।

ଅନ୍ଧାର ପାତଳ ହେଲାଣି । ଅରଣ୍ୟର ଗଛଗଛାଳି ଆଖିକୁ ସ୍ପଷ୍ଟ ଦିଶିଲାଣି । କେଉଁ ବୃକ୍ଷର ଆନ୍ଦୋଳନ ଦିଶିଲେ ଛାତି ଚହଲି ଉଠେ । ଆସିଲାକି ବାଘ ? ଝାମ୍ପି ନେବ । ଚିରି କଣା କରି ରକ୍ତ ଶୋଷିବ । ଓଃ, କି କଲବଲ ମରଣ ।

ପାଖ ଗଛ ଉପରକୁ ଉଠି ଯିବି । ବାଘ କିଛି କରି ପାରିବ ନାହିଁ । ବଡ଼ ମୋଟାଳ ଗଛ । ବେକା ପାଇବ ନାହିଁ । ଚଢ଼ିବାକୁ ବାଗ ଅ । ଛାତି ଉଣ୍ଣରୁ କେନା ବାହାରିଛି । ହଁ, ସେଇଆ କରିବି । ଦାଉ ଦାଉ ଛାତିରେ ଟୋଡ଼ାରୁ ଯୋଡା କାଢ଼ିଲି । ବରସାତି ଓ ମୁଣ୍ଡର ବରସାତି ଟୋପି ଉତାରି ବାଙ୍କେଇ ବେଞ୍ଚର ଗୋଟିଏ କଡ଼ରେ ରଖିଲି । ଦେହହାତ ଥରୁଥାଏ । ବାଘ ନୁହେଁ । କେଜାଣିବା ସେ ମୋତେ ଦେଖି ନ ପାରି ମହିଁ ଅରଣ୍ୟକୁ ଚାଲିଗଲା ।

ଏ ପାଖରୁ କଅଣ ଖସ୍ ଖସ୍ ହେଲାଣି ! ଭାଲୁ ହୋଇଥିବ । ଗଛ ଉପରକୁ ଉଠିଲେ ମଧ୍ୟ ରକ୍ଷା ନାହିଁ । ଗଛରେ ଚଢ଼ି ସେ ଘୋଷାରି ଆଣିବ । ତଳେ ପକାଇ

ସର୍ବାଙ୍ଗ ଅସ୍ତ୍ର ହେବ । କାମୁଡ଼ି ସର୍ବାଙ୍ଗ କ୍ଷତବିକ୍ଷତ କରିବ । ଆଖି, କାନ, ନାକ, ଯିବ । ମରଣ ହେବ ନାହିଁ । ଛଟପଟ, କଦର୍ଥ । ପଡ଼ିଥିବା ପାଣିକୁ ଗ୍ରହଣକଲି । ସେଇଠିକି ଗଳିଯିବ । କେବେ ପାଣିରେ ପଶିବ । ବାଘ ଭାଲୁ ଓ ଅନ୍ୟ ବନ୍ୟ ଜନ୍ତୁ ମୋର କିଛି ଅନିଷ୍ଟ କରି ପାରିବେ ନାହିଁ ।

ସାପ ବେଙ୍ଗ ଧରୁଛି । ମନେ ହେଲା, ଗୋଟିଏ ନୁହେ ଅନେକ । ବିକଳ ରଡ଼ି ଶୁଭୁଛି । ବିଲର ପାଣି ଆଡ଼ୁ ସେ ସବୁ ରଡ଼ି ଆସୁଛି । ଦେଖିକି ଗଲେ ମୃତ୍ୟୁ ଅନିବାର୍ଯ୍ୟ । ହୁଡ଼ିଆଳ ଗାତରୁ ନାଗ ଓ ଡମ୍ପ ସାପ ବାହାରି ଥିବ । ପାଦ ପଡ଼ିଲେ କାମୁଡ଼ିବ । ମନେ ହେଲା ପାଦ ପାଖରେ କଅଣ ସଳସଳ ହେଉଛି । ସାପ ହୋଇଥିବ । ଟାଙ୍ଗି ଉପରକୁ ଦୁଇପାଦ ଟେକି ଆଣିଲି ।

ରାତି ଅଧ ହେଲା । ସେମାନେ ଆସିଲେ ନାହିଁ । ଦେହ କୋଳମାଡ଼ି ଯାଉଛି । ମୋ ଭିତରେ କିଏ ଜଣେ କେବଳ ଦୁର୍ଗା ଦୁର୍ଗା ବୋଲି ଚିତ୍କାର କରୁଛି । ସେ ଚିତ୍କାର ସବୁ ମୋ କାନରେ ବାଜୁଛି । ସେ ଶବ୍ଦ ମୋର ସ୍ଥୂଳ ଦେହର ନୁହେ ଏହା ମୁଁ ଅନୁଭବ କରୁଛି । ସେଇ ଶବ୍ଦ ମୋର ସୂକ୍ଷ୍ମ, ଓ ସୂକ୍ଷ୍ମତର ଓ ସୂକ୍ଷ୍ମତମ ଦେହର ହୋଇଥିବ, ଯେଉଁ ଦେହର ମୋ ସ୍ଥୂଳ ଦେହର ମରଣ ସଙ୍ଗେ କୌଣସି ସମ୍ବନ୍ଧ ନାହିଁ । ଏ ସ୍ଥୂଳ ଜଗତ ଓ ପତ୍ନୀ ପୁତ୍ର ଓ ଧନ ସମ୍ପତ୍ତି ସଙ୍ଗେ ସମ୍ପର୍କ ନାହିଁ ।

ତୁମେ ମୋର ମନେ ପଡ଼ି ନାହଁ । କୁନୁ ଲିଲି ଓ ଅତୀତ ଓ ଭବିଷ୍ୟତ ମୋର ପାଖରେ ପଶି ନାହାନ୍ତି । ସ୍ଥୂଳ ଦେହକୁ ରକ୍ଷା କରିବାକୁ ତାଆର ଜୀବନ ମୋର ଅଜାଣତରେ ତୁଣ୍ଡକୁ ଆଦେଶ ଦେଇଥିଲା । ସେ ତୁଣ୍ଡ ଡାକ ଛାଡ଼ୁଥିଲା । କଅଣ ସେ ବନ, ଗଗନ, ପବନ, ମନ ଓ ଅବଚେତନକୁ ଥରାଇ ବୋବାଳି ଛାଡ଼ିଲା ଦେହ ଭିତରର ମୁଁ ତାକୁ ଶୁଣି ନ ଥିଲି । ସେଇ ସୂକ୍ଷ୍ମ ଦେହ, ସେହି ମୁଁ, ବିଶ୍ୱ-ଚରାଚର ବ୍ୟାପିନୀ ଜନନୀ ଦୁର୍ଗାଙ୍କୁ ସ୍ମରଣ କରୁଥିଲି । ସ୍ଥୂଳ ଦେହ ଛାଡ଼ି କେଉଁ ଅଜଣା ଅନ୍ତରୀକ୍ଷରେ ସେ, ସେହି ସ୍ନେହମୟୀ ଜନନୀର କୋଳରେ ଭ୍ରମୁଥିଲା । ଓ ଦୃଶ୍ୟ ସେ ଦେଖୁଥିଲା ଭାଷାରେ ବର୍ଣ୍ଣନା କରି ହେବ ନାହିଁ ରମା । ତେବେ ମୋର ସ୍ଥୂଳ ଦେହର ସଞ୍ଜୀବନୀ ମାତ୍ର ।

ସେପରି ତୁମେ କହନା, ମୁଁ ତୁମର ଜନ୍ମଜନ୍ମାନ୍ତରର ସାଥୀ ।

ରମା ଅସ୍ଥିର ହୋଇ ଉଠିଲା । ରମା ଖଟରୁ ଓହ୍ଲାଇ ଚାଲିକି ଆସିଲା ।

ଅନ୍ଧାର ଘରରେ ଅତୀତ କଥା କହୁଛି । ଭାବନା ଘରରେ ସେ ଆସି ପାଖରେ ବସିଛନ୍ତି । ଘଟିଲା ଦୁର୍ଯୋଗର ଅଭିଜ୍ଞତା ବର୍ଣ୍ଣନା କରୁଛନ୍ତି ।

ଶୁଣ ରମା, ମୋର ପ୍ରିୟତମା, କେତେବେଳେ ମୋ'ର ତୁଣ୍ଡର ଭାଷା ବନ୍ଦ ହେଲା, କେତେବେଳେ ଓ କିପରି ଆସି ମୁଁ ଭୂମିରେ ଶୟନ କଲି ମୋତେ ଜଣା ନାହିଁ । ମୋ'ର ମୋହ ବା କାଳ ନିଦ୍ରା ଭାଙ୍ଗିଲା ସେମାନଙ୍କର ସ୍ପର୍ଶରେ ।

ସେମାନେ ଫେରି ଆସିଛନ୍ତି । ସେମାନେ ଗ୍ରାମ ସାରା ଆଲୁଅ, ବନ୍ଧୁକ ଓ ଠେଙ୍ଗାବାଡ଼ି ଧରି ଦଳ ଦଳ ହୋଇ ଅରଣ୍ୟର କନ୍ଦ ବକନ୍ଦ ଖୋଜୁଛନ୍ତି । ଅଞ୍ଚଳରେ ଦୁଇଟି ମହାବଳ ଦେଖି ମନେ କରୁଛନ୍ତି, ଭଞ୍ଜ ମାୟାର ଆଜି ଇହ-ଧାମରେ ନାହାନ୍ତି । ତଥାପି ସେମାନେ ଖୋଜୁଥିଲେ ।

ଆଖି ଖୋଲିଲି । ଅନ୍ୟକୁ ଭର ଦେଇ ଉଠିଲି । ଗୃହୀଲ, ଗ୍ରାମ ପାହୁ ଆସୁଛି । ପାଖର ଅରଣ୍ୟ ଶୀତଳ ଆଲୋକରେ ପରିଷ୍କାର ଦିଶୁଛି । ମୁଁ ବଞ୍ଚିଛି ।

ରମା ଦୁଇହାତ ଯୋଡ଼ି କପାଳରେ ଲଗାଇଲା । ମିନତି କଲା, ମାଗୋ ଜଗ-ତ୍ଜନନୀ, ସବୁ ଶୁଭରେ ସେ ଫେରି ଆସନ୍ତୁ । ମୋର ଜୀବନ ଓ ମନ ତୁମକୁ ମୁଁ ସମର୍ପଣ କରୁଛି, ତାଙ୍କ ଅଗ ଗୋଡ଼ରେ କଣ୍ଟା ନ ବାଜୁ ।

ଜଗନ୍ନାଥ ସାଗର ମୋଡ଼ରେ ଜୟପୁର ଗଡ଼ ପୁନାମ ସିଂ ଉଣାକଲା । ଅଚଳ ଟ୍ରକ୍‌ଟିଏ ରାସ୍ତା ମଝିରେ ଠିଆ ହୋଇଛି । ଜୟପୁର ସହରର ବିଜୁଳି ଆଲୋକ ମାଳା ଦୂରରୁ ମନୋରମ ଦିଶୁଛି । ବର୍ଷା ଛାଡ଼ି ଗଲାଣି । ଆକାଶ ମେଘାଚ୍ଛନ୍ନ ଅଛି ।

ସୁକାନ୍ତ ଅଣ୍ଟା ସଳଖି ବସିଲା । ମୁଣ୍ଡରୁ ମଫ୍ଲର୍ ଖୋଲିଲା । ଝାଳ ଗମ୍‌ଗମ୍ ବୋହୁଛି । ସାମାନ୍ୟ ଜର ଛାଡ଼ ଗଲଣି ।

ମନ ଆନନ୍ଦରେ ଭୁରୁଭୁରୁ ଉଠିଲା । କାର୍ଯ୍ୟ ସମାପନ କରି ଝଡ଼ ବରଷା ଆପଦ ବିପଦ ଲଙ୍ଘନ କରି ସେ ସର୍ବ ଶୁଭରେ ଫେରି ଆସୁଛି ।

ଜୟପୁର ହେଲା । ଜିପ୍ କଲେଜ ପାଖ ଅତିକ୍ରମ କଲାଣି । ଶୀଘ୍ର ସେ ଘରେ ପହଞ୍ଚିବ । ସମସ୍ତେ ଶୋଇ ପଡ଼ିଥିବେ । ଜିପ୍ ହର୍ଣ୍ଣ ଶୁଣି ରମାର ନିଦ ଭାଙ୍ଗିବ । ଅସ୍ତବ୍ୟସ୍ତ ହୋଇ ସେ ଉଠି ଆସିବ । ଆଲୁରା ବେଶ । ମୁହଁରେ ଅଳପ ହସ । କେଡ଼େ ଭଲ ଦିଶେ । କାହାକୁ ସେ ଆଗ ଗେଲ କରିବ ?

ପିଲା ଦିଓଟି ତ ଶୋଇ ପଡ଼ିଥିବେ ।

ଜଗଜ୍ଜନନୀ ମନ୍ଦିର । ଆପେ ଆପେ ହାତ ଦିଓଟି ଯୋଡ଼ି ହେଲା । ମୁଣ୍ଡରେ ଲଗିଲା । ମନରେ କାମନା ନାହିଁ, ତୁଣ୍ଡରେ ମାଗୁଣି ନାହିଁ ।

ଭାବନାର ସଫେଦ ପରଦା ଉପରେ ଦିଶୁଛି ଗୋଟିଏ ଅଭିନେତ୍ରୀର ରୂପ । ସାତ ବର୍ଷର ଘରଣୀ ସେ ରମା । ନିର୍ମଳ ନିଷ୍କପଟ ମନ ନେଇ ଆଗରୁ ଆସିଛି । ନିରାଡ଼ମ୍ବର ରୂପ ଭେକ ନେଇ ବାସ୍ତବ ଜୀବନର କ୍ରୀଡ଼ା କରୁଛି । ଅବଗୁଣ୍ଠନବତୀ ସରମିଳା ନବବଧୂ । ହସ ହସ ଲାଜ ଲାଜ ପ୍ରେମିକା । କର୍ତ୍ତବ୍ୟ ପରାୟଣା ନିଜକୁଳ କ୍ଷମାଶୀଳା ସୁଗୃହିଣୀ । ଗମ୍ଭୀର ବଦନା ଉପଦେଶ ଦାୟିନୀ ବାନ୍ଧବୀ । କ୍ରୀଡ଼ା କୌତୁକୀ ଛମ ଛମ ମୁହାଁ ଭଗିନୀ । କଥା ଅକଥାରେ ନାହିଁ ନାହିଁ କଲା ଆକଟିଲା ମାତା, ମମତା ମୟୀ । ଭୁଲଭ୍ରାନ୍ତି ପାଇ ତରତର ଅପସରି ଯିବା ଥାଉ କିଏ, ନିନ୍ଦା ପ୍ରଶଂସାକୁ ଦେହର ମଳପରି ଧୋଇ କାର୍ଯ୍ୟବ୍ୟସ୍ତ ଲେଠେଣି ପାରି, ଗୃହର ଦାସୀ, ପୁଣି ଗୃହର କର୍ତ୍ତ୍ରୀ । ତରତରିକା ନେହୁରା ହୋଇ ଅଳିକରି, ମାଗୁଣି କରି ଭିଖାରିଣୀ । କାନ୍ଦୁରି ମୁହାଁ, ଝରିଲା-ଆଖୀ, ପର ଝିଅସରି, ଗେଲଦସରି, କଶୋସରି କନ୍ୟା ।

ସବୁତ ସେ; ରମା, ଅଗାଧ ପ୍ରେମର ଅସୀମ ପଣତରେ ବେଢ଼ାଇ ରଖିଛି, ଘୋଡ଼ାଇ ରଖିଛି ।

ଝରକା ବାଟେ ଦେଖା ଯାଉଛି ଅଗର ରାସ୍ତା । ହାଲେଲ ମଧ୍ୟ । ଜିପ୍ ଆସିବାର କ୍ଷୀଣ ଶବ୍ଦ ।

ରମା କାନ ଡେରିଲା । ଆଉ କାହାର ? ଶବଦ ବଢ଼ୁଛି । ତାଙ୍କର ଗାଡ଼ିର ଶବଦ ପରି ମନେ ହେଉଛି । ବେଳେ ବେଳେ ଏହି ଅଧରେ ସେ ଫେରନ୍ତି । ମା ମଙ୍ଗଳା ସବୁ ଶୁଭରେ ତାଙ୍କୁ ଫେରାଇ ଆଣିଛନ୍ତି ।

ହୃଦର ସ୍ପନ୍ଦନ ଦ୍ରୁତ ହେଲା । ଆନନ୍ଦ ମିଶା ଉତ୍କଣ୍ଠାରେ ଆପାଦ-ମସ୍ତକ ଥରି ଉଠିଲା ।

ରମା ଝରକା ପାଖକୁ ଗଲା । ଥରିଲା ହାତରେ ପରଦା ଆଡ଼େଇ ପଦାକୁ ଚାହିଁଲା । ବରଷା କେତେବେଳରୁ ଛାଡ଼ି ଗଲଣି । ଚିକ୍କଣ ପିଚୁ ରାସ୍ତା ଜିପ୍ ଆଲୋକରେ ଝଲସି ଉଠୁଛି । ରାସ୍ତାକଡ଼ ଆଲୁଅ ଖମ୍ବ ତ ଦୂରରେ । ତା ଆର ଅନେକ ସତ୍ତ୍ୱ ହଜାଇଛି । ହଲଧର ବାବୁଙ୍କର ଘର ଉପର ଅନ୍ଧାର ଦିଶୁଛି, କିନ୍ତୁ ବାହାରଟା ଉଜ୍ଜ୍ୱଳ ଦିଶିଲଣି ।

ଜିପ୍ ଆସି ଘର ଆଗରେ ଅଟକିଲା । ପୁନାମ ସିଂ ଡ୍ରାଇଭର ହର୍ଣ୍ଣ ବଜାଇଲଣି । ହର୍ଣ୍ଣ ନୁହେ, ଶୁଭ ଶଙ୍ଖ । ରମାର ସାରା ଅଙ୍ଗରେ ଆନନ୍ଦର ଢେଉ ଖେଳି ଗଲା । ତୃଷିତ ନୈନ ଅପଲକ । ଜିପ୍ ଭିତରୁ ବାହାରି ଆସିଲ ସୁକାନ୍ତ । ଧୀରେ କହିଲା, ଆଉ ହର୍ଣ୍ଣ ବଜାଅ ନାହିଁ । ପିଲାଏ ମୋର ଚମକି ଉଠିବେ ।

ରମାର ପାଦ ସତେକି ଶୂନ୍ୟରେ ଉଡ଼ିଲା । ସେ ଦୁଇ ଖେପାରେ କାନ୍ଥପାଖକୁ ଆସି ସ୍ୱିଚ ଟିପିଲା । ଝାଳ ଆଲୁଅରେ ପ୍ରକୋଷ୍ଠ ଉଜ୍ଜ୍ୱଳ ଦିଶିଲା । ରମା ମଝି ଘରକୁ ଆସି ଆଲୁଅ ଜାଳିଲା । ଇମ୍ପିଳ ପଣତ ତଳେ ଘୁମୁଉଛି, ପାଦ ଛନ୍ଦୁଛି । ଉଜ୍ଜ୍ୱଳ ଆଲୋକର ଢେଉ ଖେଳୁଛି । ସେ ବାହାର କବାଟ ଖୋଲିଲା ।

କାନରେ ବାଜୁଛି ଅତି ପରିଚିତ ସ୍ୱର, ତମ ମାଆଙ୍କର ନିଦ ଭାଙ୍ଗିଲଣି ଅଗାଧୁ ।

ଆଜ୍ଞା ହଁ, ଆପଣ ଏଇ ଫୁଲ୍ ଦି ପୁଡ଼ା ଧରନ୍ତୁ, ମୁଁ ଜିନିଷ ପତ୍ର ଓହ୍ଲାଏଁ ।

ରହ, ମୁଁ ରଙ୍ଗିଆକୁ ଡାକେଁ ।

ରମାର ଗୋଡ଼ ଅଟକିଲା ବାରଣ୍ଡାରେ । କଅଣ ହୋଇଛି ତାଙ୍କର ? ସ୍ୱର ଦୁର୍ବଳ ଶୁଭୁଛି । ସ୍ୱର ଥରି ଉଠୁଛି । ଉପାସ ଅଛନ୍ତି ଦିନ ସାରା କି ? କଅଣ ଖାଇବେ ? ଖୀର ଓ ପାଉଁରୁଟି ଛଡ଼ା ଘରେତ ଆଉ କିଛି ନାହିଁ ।

ହଁ, ଗୋମତୀ ଅଙ୍ଗୁର ଓ କମଳା ଲେମ୍ବୁ ଦେଇ ଯାଇଛନ୍ତି, ଜୟଶ୍ରୀ ଅପା ବେଦାନା ଓ କଦଳୀ ଦେଇଛନ୍ତି । ଟେବୁଲ୍ ଉପରେ ସବୁ ସେମିତି ରଖା ହୋଇଛି ।

ଫଳ ଖାଇବାକୁ ସେ ଭଲ ପାଆନ୍ତି ।

ଭିତର ପାଖୁ ଦାଣ୍ଡଘର କବାଟରେ ହାତ ବାଡ଼େଇ ରମା ଡାକିଲା, ରଙ୍ଗିଆ, ରଙ୍ଗିଆ । ସତେକି ତା'ର ଆକୁଳ ଡାକର ଆଗ୍ରହ ପ୍ରତିଧ୍ୱନିତ ହେଲା ବାହାର ପାଖେ, ସୁକାନ୍ତର ତୁଣ୍ଡରେ, ରଙ୍ଗିଆ, ରଙ୍ଗିଆ —

ଉତ୍ତର ଦେଇ ରଙ୍ଗିଆ ଦାଣ୍ଡ କବାଟ ଖୋଲିଲା ।

ରମା ଅପେକ୍ଷା କଲା ବାରଣ୍ଡାରେ ।

ଶୋଇଲା ଘରଭିତରୁ ମା ମା ବୋଲି କାନ୍ଦି ଉଠିଲା ଲିସା । ରମା ଧାଇଁ ଆସିଲା ତା ପାଖକୁ । ଉଠିବ ଯଦି ବାହା ଧରିବ ! ଇରାର ଟିକି ପୁଅ ଦେଖି ସେ ଅଝଟ ହୋଇଛି; ଆମର ସେମିତିକା ପୁଅ ଲୋଡ଼ା । ଭାଇ ଆଉ ମୁଁ ଖେଳିବୁଁ ।

ମନ୍ଦି ଘରେ—

ଉଜ୍ଜ୍ୱଳ ଉଚ୍ଛଳ ବିଜୁଳି ଆଲୋକରେ ଦୁହିଁଙ୍କର ବିସ୍ମିତ ବିହ୍ୱଳ ଦୃଷ୍ଟି ଦୁହିଙ୍କୁ ବେଷ୍ଟନ କଲା । ଦୁହିଁଙ୍କର ଅତୁଳ ବିକଳ ମରମ ତଳେ ବେଦନାର ସିନ୍ଧୁ ଉଦ୍ବେଳିତ ହେଲା, ହେଲା ଫେନିଲ, ଭେଙ୍ଗି ଭେଙ୍ଗିକା, ପ୍ରଶ୍ନିଳ, ଶତାବ୍ଦୀ ଦିନର ବ୍ୟବଧାନରେ ଏ କି ରୂପ ଧରିଛ ତୁମେ, ଶିର୍ଷ ଯୁଗର ପରିବର୍ତ୍ତିନ ?

ବୁକୁ ଅଣିଇ ରୁଦ୍ଧ ବେଦନାର ତୋଫାନ ପଦାକୁ ଛୁଟିଲା ।

ଥରିଲା ଓଠରେ ସ୍ମିତ ବିକଶିଲା ।

କଅଣ ତୁମର ହୋଇଛି ରମା ?

ତୁମେ କାହିଁକି ଏପରି ଦିଶୁଛ ?

ରମାର ଦୁଇ ଅଖିରେ ଛଳ ଛଳ ଲୁହ । ହସ ହସ ହୋଇ ସୁକାନ୍ତ ତାଙ୍କ ହାତ ଧରିଲା । କହିଲା, ବାଟରେ ଝଡ଼ ବରଷା, ବିଜୁଳି ଘଡ଼ଘଡ଼ି, ଆମର ଭଗାରି ହେଲା ରମା, ନୋହିଲେ ସଞ୍ଜ ଆଗରୁ ଅମେ ଫେରି ଆସି ପାରି ଥାଆନ୍ତୁ । ଆପଦ ବିପଦ ବାଧା ବିଘ୍ନ ବାଟୋଇ ଜୀବନରେ ଅନେକ ଆସେ । ସେ ଅଟକେ । ଭୟ ଓ ଉତ୍କଣ୍ଠାରେ ସେ ବିବ୍ରତ ହୁଏ । ଝଡ଼ ବରଷା ଥମେ । ଆଶା ଓ ଆନନ୍ଦର ଆଲୁଅ ମେଘ ଅନ୍ଧାରକୁ ଦୂର କରେ । ସେ ଆଗେଇ ଚାଲେ । ଆକାଶ ନିର୍ମଳ ହେଲଣି । ଲକ୍ଷକୋଟି ତାରା ହସି ଉଠିଲେଣି । ତେବେ କଅଣ ହସିବ ନାହିଁକି ?

ତୁମର ଦେହ ଉଷୁମ ଲାଗୁଛି ଯେ, ଜର ହେଲା ? ଓଦା ଜାମା ଆଗ ଉତାରି ପକାଅ । କି ସବୁ ହୋଇଛି ମ । ମୁଁ ନଆଁ ଲଗୀ ନ ମଲି କାହିଁକି ? ଭୁଲ ମନ ମୋର, ତେବେ ଉଲ୍ଟା ଲଗାଇଲେ ମୁଁ ସବୁ ଭୁଲିଯାଏ । ମତେ କ୍ଷମା କରିବ ନାହିଁ ?

ରମାର ଆଖିରୁ ଲୁହ ଧାର ଗଡ଼ି ଆସିଲା । ସେ ସୁକାନ୍ତର ଜାମାର ବୋତାମ ଖୋଲିଲା । ବହଲ ସୁକାନ୍ତ ତାର ମୁଣ୍ଡ ଆଉଁସି କହିଲା, ପାଗଳୀ, ଦାମ୍ପତ୍ୟ ଜୀବନରେ ସେଇ ଅମୂଲ୍ୟ ଚିଜଟି ତୁମଠାରୁ ଆଜି ମୋର ପାଉଣା । ତୁମେ ନାହିଁ ନାହିଁ କଲେବି ମୁଁ ବଳ ପ୍ରୟୋଗ କରି ସେତକ ତମଠୁଁ ଛଡ଼ାଇ ନେବି ।

ସୁକାନ୍ତର ଛାତି ପାଖରେ ରମାର ଦୋହଲା ମୁହଁରୁ ଖିଲଖିଲ ହସର ଝରଣ ଛୁଟି ଆସିଲା । ମନ ଧାଇଁଗଲା ମନ୍ଦିର ଭିତରେ ଉଭା ଜଗନ୍ନାଥଙ୍କ ଚରଣ ତଳକୁ, ପ୍ରଣାମ କଲା ।

---

ଜମ୍ବୁପୁର, — କାହ୍ନୁଚରଣ

ଶନିବାର,

୧୪-୭-୧୯୬୨

× × × ×

—ନୂଆ ଯୁଗର ନୂଆ ପୁରୋହିତ । ବଜ୍ର-ଗମ୍ଭୀର ସ୍ୱରରେ ମନ୍ତ୍ର ଉଚ୍ଚାରୁଛି, ଶଙ୍ଖ ବଜାଉଛନ୍ତି, କାନରେ ବାଜି ଯାଉଛି, ଜର୍ମଂ ବା ସାଧୟେତ ଶରୀରମ୍ ବା ପାତୟେତ୍ ।

ଭାଷାଭେଦ, ଧର୍ମଭେଦ, ବର୍ଣ୍ଣଭେଦ ସ୍ୱାହା,
ସ୍ପୃଶ୍ୟାସ୍ପୃଶ୍ୟ ଭେଦ, ଜାତିଭେଦ. ଶ୍ରେଣୀଭେଦ ସ୍ୱାହା,
ଅଶିକ୍ଷା. କୁଶିକ୍ଷା, କୁସଂସ୍କାର ସ୍ୱାହା,
ଅମୋଦ, ଆଳସ୍ୟ, ଅଭିମାନ ସ୍ୱାହା,
ଭୟ, ସଙ୍କୋଚ, ସନ୍ଦେହ ସ୍ୱାହା,
ଦାରିଦ୍ର୍ୟ, ଅସମତା ସ୍ୱାହା,
ସ୍ନେହ, ମମତା. ଭ୍ରାତୃଭାବ ଅବାଗଚ୍ଛ,
ସ୍ୱର୍ମଭାବ, ସହନଶୀଳତା ଅବାଗଚ୍ଛ,
ଓଁ, ସର୍ବେ ସୁଖୀନୋ ଭବନ୍ତୁ — ।

## କାହ୍ନୁଚରଣଙ୍କ ବିରାଟ ଉପନ୍ୟାସ

# ବଜ୍ରବାହୁର

ପ୍ରତି ପୃଷ୍ଠାରୁ ଏହିପରି ଦେଖିବାକୁ ପାଇବେ ସମାଜର ବୈପ୍ଳବିକ ଜୀବନ୍ତ ଚିତ୍ର—

ଏହି ଲେଖକଙ୍କର ଆଉ କେତୋଟି ସୁବିଖ୍ୟାତ ଉପନ୍ୟାସ

## ହା-ଅନ୍ନ : ଝଞ୍ଜା
## ମାନସୀ : ଶାସ୍ତି : କା—

ଓ ନୂତନ ଉପନ୍ୟାସ

## ପ୍ରତୀକ୍ଷା

ପ୍ରକାଶ ଅପେକ୍ଷାରେ

---

ପ୍ରାପ୍ତିସ୍ଥାନ:—

## ମନମୋହନ ପୁସ୍ତକାଳୟ

କଟକ-୨ ଓ କଲକତା-୬

DHEU DHEUKA, KANHU CHARAN-RS 3. 25